**ପ୍ରକାଶକ:**
ଉତ୍କଳ ହିତୈଷିଣୀ ସମାଜ
ପାରଳାଖେମୁଣ୍ଡି, ଗଜପତି ଜିଲ୍ଲା

**ଦ୍ୱିତୀୟ ସଂସ୍କରଣ :**
ଏପ୍ରିଲ୍, ୨୦୧୨

ସଂଖ୍ୟା-୫୦୦


**ମୁଦ୍ରଣ :**
ନୀଳକଣ୍ଠ ଅଫ୍‌ସେଟ୍ , ରାଜଦାଣ୍ଡ
ପାରଳାଖେମୁଣ୍ଡି, ଗଜପତି
ଦୂରଭାଷ : (୦୬୮୧୫) ୨୨୩୮୧୮
ମୂଲ୍ୟ : ଟ ୧୭୫.୦୦

**Publisher:**
Utkala Hiteisini Samaj
Paralakhemundi, Gajapati

**2nd Edition:**
April, 2012

Copies-500


Printed At:
**Neelakantha Off-Set**
Paralakhemundi, Gajapati
Ph: (06815) 223818
**Price :** Rs.175.00

## ଏହି ସଂସ୍କରଣର ପ୍ରକାଶନ ସଂପର୍କରେ........

"ପାରଳା ପ୍ରତିଭା"ର ପ୍ରଥମ ସଂସ୍କରଣ ତା ୨୪.୩.୧୯୯୧ରେ ପ୍ରକାଶ ପାଇଥିଲା । ଏହାର ଲେଖକ ବିଷ୍ଣୁଚରଣ ମହାନ୍ତି । ସେ ପାରଳାଖେମୁଣ୍ଡି ପୌରପରିଷଦର ନିର୍ବାହୀ ଅଧିକାରୀ ଥିଲେ । ସେତେବେଳେ ସେ ଯେଉଁ ତଥ୍ୟ ସଂଗ୍ରହ କରିଥିଲେ ତା'ରି ଭିତ୍ତିରେ ପାରଳାଖେମୁଣ୍ଡିର ୧୪ଜଣ ପ୍ରତିଭାବାନ ବ୍ୟକ୍ତିଙ୍କ କୃତିତ୍ୱ ଓ ଜୀବନୀ ସଂପର୍କରେ ଏହି ଉପାଦେୟ ପୁସ୍ତକଟି ରଚନା କରିଥିଲେ । ସମସ୍ତ ପ୍ରତିଭାଧରଙ୍କ ମଧ୍ୟରୁ କେତେକ ବିସ୍ମୃତ ହେବାକୁ ଯାଉଥିବାବେଳେ ବିଷ୍ଣୁଚରଣଙ୍କର ପ୍ରୟାସ "ପାରଳା-ପ୍ରତିଭା" ମାଧ୍ୟମରେ ସେମାନଙ୍କୁ ପୁଣି ଜନମାନସରେ ଉଜ୍ଜୀବିତ କରାଇଲା । ଏଥିରେ ସନ୍ଦେହ ନାହିଁ । ସେହି ଅତ୍ୟୁପାଦେୟ ପୁସ୍ତକଟି ବର୍ତ୍ତମାନ ଦୁଷ୍ପ୍ରାପ୍ୟ ଥିବାବେଳେ ଲେଖକଙ୍କ ଅନୁମତି କ୍ରମେ ତା'ର ୨ୟ ସଂସ୍କରଣ ପ୍ରକାଶ କରିବାକୁ "ଉତ୍କଳ ହିତୈଷିଣୀ ସମାଜ"ର ଏହି ପ୍ରୟାସ । ଲେଖକଙ୍କ ଇଚ୍ଛାକୁ ସମ୍ମାନ ଦେଇ ଆମେ ୨ୟ ସଂସ୍କରଣରେ ଅନ୍ୟ ୬ ଗୋଟି ପ୍ରବନ୍ଧକୁ ସ୍ଥାନ ଦେଇଛୁ । କେବଳ "ଶତାବ୍ଦୀର ଗବେଷକ ସତ୍ୟନାରାୟଣ ରାଜଗୁରୁ" ବ୍ୟତୀତ ଅନ୍ୟ ସମସ୍ତ ଲେଖା ଲେଖକଙ୍କ ନିଜସ୍ୱ ଓ ସେଥିରୁ କେତେଗୋଟି ତାଙ୍କ ଲିଖିତ "ସ୍ମୃତିରେଖା"ରେ ପ୍ରକାଶ ପାଇସାରିଛି । "ଶତାବ୍ଦୀର ଗବେଷକ ସତ୍ୟନାରାୟଣ ରାଜଗୁରୁ" ଶିରୋନାମାରେ ଲିଖିତ ପ୍ରବନ୍ଧର ବିଷୟବସ୍ତୁ ତାଙ୍କ (ରାଜଗୁରୁଙ୍କ) ନାତି ରଘୁରାଜ ରାଜଗୁରୁଙ୍କ ଠାରୁ ସଂଗୃହୀତ ଓ ଆମ ଦ୍ୱାରା ସମ୍ପାଦିତ । ଇତି ମଧ୍ୟରେ ପୂର୍ଣ୍ଣଚନ୍ଦ୍ର ମହାପାତ୍ରକୃତ ପାରଳାଖେମୁଣ୍ଡି ଇତିହାସ ପ୍ରକାଶ ପାଇ ସାରିଛି । ଅନ୍ୟ କିଛି ଲେଖକ ମଧ୍ୟ ଏହି ସଂସ୍କରଣରେ ସ୍ଥାନିତ ପ୍ରତିଭାଧରମାନଙ୍କ ସଂପର୍କରେ କିଛି ଆଲୋଚନା କରିସାରିଛନ୍ତି । ତଥାପି 'ପାରଳା ପ୍ରତିଭା' ଆମ ବିଚାରରେ ସେ ସମସ୍ତ ଠାରୁ ନିଆରା ଓ ନିର୍ଭରଶୀଳ । ଯେଉଁ ମହାନ୍ ବିଦ୍ୱାନ୍‌ମାନଙ୍କ କଲମ ଚାଳନା ଓ ତ୍ୟାଗପୂତ କାର୍ଯ୍ୟ ଓଡ଼ିଆ ଜାତିର ମନରେ ନବଉନ୍ମାଦନା ଜନ୍ମାଇ ଛିନ୍ନ ବୀଣାରେ ତନ୍ତ୍ରୀ ସଂଯୋଗ କରିଥିଲା, ଯେଉଁମାନେ ଓଡ଼ିଆ ଓ ତା'ର ଭାଷାର ସ୍ୱତନ୍ତ୍ର ପରିଚୟ ଦେବାରେ ସଫଳ ପ୍ରୟାସ କରି ଏ ଜାତିକୁ ମହାନ ବିପର୍ଯ୍ୟୟରୁ ରକ୍ଷା କରିଥିଲେ ସେମାନେ ଆମର

ସଦା ସ୍ମରଣୀୟ । ସେମାନଙ୍କ କୃତି ଓ କୀର୍ତ୍ତିକୁ ନେଇ "ପାରଳା ପ୍ରତିଭା" ପୁଣି ନବରୂପରେ ଆତ୍ମ ପ୍ରକାଶ କରିବାରେ କିଛି ସହଯୋଗପାଇଁ ଆମକୁ ସୁଯୋଗ ଦେଇଥିବାରୁ ଆମେ ଲେଖକଙ୍କୁ କୃତଜ୍ଞତା ଜଣାଉଛୁ । ପାରଳାଖେମୁଣ୍ଡିର ପ୍ରଥମ ଅଫ୍‌ସେଟ୍ ପ୍ରେସ୍ "ନୀଳକଣ୍ଠ ଅଫ୍‌ସେଟ୍"ର ସ୍ୱତ୍ୱାଧିକାରିଣୀ ଜ୍ୟୋତିର୍ମୟୀ ମହାପାତ୍ର ଓ ତାଙ୍କ କର୍ମଚାରୀମାନଙ୍କୁ ସୁନ୍ଦର ଓ ସମୟୋଚିତ ମୁଦ୍ରଣପାଇଁ ଧନ୍ୟବାଦ ଦେଉଛୁ ।

ପରିଶେଷରେ ଉତ୍କଳ ହିତୈଷିଣୀ ସମାଜର ସଭାପତି ଭରତ ପାଇକ, କାର୍ଯ୍ୟକାରୀ ସଭାପତି ଗୌରଚନ୍ଦ୍ର ପଣ୍ଡା ଓ ସହସଂପାଦକ ବଟକୃଷ୍ଣ ପାତ୍ର ମତେ ସହଯୋଗ କରିଥିବାରୁ ସେମାନଙ୍କୁ କୃତଜ୍ଞତା ଜଣାଉଅଛି ।

ପୂର୍ଣ୍ଣଚନ୍ଦ୍ର ମହାପାତ୍ର
ସଂପାଦକ
ଉତ୍କଳ ହିତୈଷିଣୀ ସମାଜ
ପାରଳାଖେମୁଣ୍ଡି

ବିଷୁବ ସଂକ୍ରାନ୍ତି
ତା-୧୩.୪.୨୦୧୨

ବିଷ୍ଣୁ ଚରଣ ମହାନ୍ତି
୪୫୮ ସହିଦ ନଗର
ଭୁବନେଶ୍ୱର
ପିନ୍-୭୫୧୦୦୭

ଫୋନ୍-୭୨୦୫୩୫୨୧୭୧
ତା ୨୧ ଫେବୃଆରି ୨୦୧୨

ପ୍ରାପ୍ତେଷୁ-ସଂପାଦକ, ଉତ୍କଳ ହିତୈଷିଣୀ ସମାଜ
ପାରଳାଖେମୁଣ୍ଡି
ଜିଲ୍ଲା-ଗଜପତି

ମହାଶୟ,

ପାରଳା ପ୍ରତିଭା ୧୯୯୧ ମସିହାରେ ପ୍ରକାଶିତ । ମୋର କନ୍ୟା ପାରଳାଖେମୁଣ୍ଡିର ଶିକ୍ଷକ ୰ବାଙ୍କବିହାରୀ ବେବର୍ତ୍ତାଙ୍କ ବୋହୂ ଗୀତା ବେବର୍ତ୍ତା ଏହାର ପ୍ରକାଶିକା । ପରବର୍ତ୍ତୀ କାଳରେ ଏହାର ପରିବର୍ଦ୍ଧିତ ସଚିତ୍ର ୨ୟ ସଂସ୍କରଣ ପ୍ରକାଶନ ନିମିତ୍ତ ଇଚ୍ଛୁକ ଥିଲେ ମଧ୍ୟ ବୟସାଧିକ ହେତୁ ମୋ ପକ୍ଷରେ ଏହା ସମ୍ଭବପର ହୋଇନାହିଁ । ତେଣୁ ଆପଣଙ୍କ ହିତୈଷିଣୀ ସମାଜ ଏହା ପ୍ରକାଶନ ନିମିତ୍ତ ଆଗ୍ରହୀ ଥିବାରୁ ମୁଁ ଧନ୍ୟବାଦସହିତ ସମ୍ମତିପ୍ରଦାନ କରୁଅଛି ।

୧. ପ୍ରଥମ ସଂସ୍କରଣରେ ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ରଙ୍କ ବ୍ୟତୀତ ଆଉ ୧୩ଜଣଙ୍କ ଜୀବନୀ ଥିଲା । ଏମାନଙ୍କର ବ୍ୟତୀତ ବର୍ତ୍ତମାନ ସ୍ୱର୍ଗତଃ ଡକ୍ଟର ସତ୍ୟନାରାୟଣ ରାଜଗୁରୁ, ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ, ପଣ୍ଡିତ ନୀଳକଣ୍ଠ ମିଶ୍ରଙ୍କ ଜୀବନୀ ସହିତ ଅନ୍ୟ ତିନି ଗୋଟି ପ୍ରବନ୍ଧ ପାରଳାମହାରାଜା-କିଛି ଜଣା କିଛି ଅଜଣା କଥା ଓ ପ୍ରଦେଶ ଗଠନରେ ନେପଥ୍ୟନାୟକ (ଏହା ଗଜପତି ଉତ୍ସବ ସ୍ମରଣିକା ୨୦୦୪ ଓ ୨୦୦୫ ମସିହାରେ ପ୍ରକାଶିତ) ଓ ପାରଳାର ଅନାଲୋଚିତ ପ୍ରତିଭା (ଏହା ଗଜପତି ଉତ୍ସବ ୨୦୦୨ରେ ପ୍ରକାଶିତ) ୨ୟ ସଂସ୍କରଣରେ ପ୍ରକାଶ କରାଯିବ । ପଣ୍ଡିତ ସୂର୍ଯ୍ୟନାରାୟଣଙ୍କ ଜୀବନୀ ମଧ୍ୟ (ପାରଳାର)ଗଜପତି ଉତ୍ସବ ସ୍ମରଣିକା ୨୦୦୮ରେ ପ୍ରକାଶିତ । ମୋର "ସ୍ମୃତିରେଖା" ପୁସ୍ତକରେ ମଧ୍ୟ ଏହି ପ୍ରବନ୍ଧମାନ ପ୍ରକାଶ ପାଇଛି ।

୨. ପରିବର୍ଦ୍ଧିତ ୨ୟ ସଂସ୍କରଣରେ ସବୁ ପ୍ରତିଭାଧରଙ୍କର ଫଟୋ ଦେବା ଉଦ୍ୟମ କରୁଅଛି । ଯାହା ମିଳିବ ଆପଣଙ୍କୁ ପଠାଇବି । ପ୍ରଚ୍ଛଦପଟରେ ପାରଳା ରାଜଭବନର ଫଟୋ ପୂର୍ବପରି ଦିଆଯିବ ।

୩. ପୁସ୍ତକର Copy right-ସର୍ବସ୍ୱତ୍ୱ ମୁଁ ହିତୈଷିଣୀ ସମାଜକୁ ପ୍ରଦାନ କରୁଛି । ସେମାନେ ପ୍ରକାଶନର ବ୍ୟୟ ବହନ କରି ବିକ୍ରୟ ବ୍ୟବସ୍ଥା କରିବେ ଓ ସମସ୍ତ ବିକ୍ରୟ ଲବ୍ଧ ଅର୍ଥ ସେମାନଙ୍କର ସଂପତ୍ତି ହେବ । ସ୍ୱୀକୃତିର ନିଦର୍ଶନ ସ୍ୱରୂପ ମତେ ଶତକରା ୨ଖଣ୍ଡ ବହି ଦେଲେ ମୁଁ କୃତାର୍ଥ ହେବି ।

୪. ମୋର ବୟସ ନବେ । ମୋର ଜୀବନଦଶାରେ ଏହା ଦେଖିଲେ ସୁଖୀ ହେବି । ତେଣୁ ଏହାର ପ୍ରକାଶନ ଉଦ୍ୟମ ତ୍ୱରାନ୍ୱିତ କରି ମହାରାଜାଙ୍କ ତିରୋଧାନ ତିଥି ୨୫ ମେ ନଚେତ ଶ୍ୟାମସୁନ୍ଦର ରାଜଗୁରୁ ଜୁଲାଇ ୧୭ ବା ପଣ୍ଡିତ ଗୋପୀନାଥ ନନ୍ଦ ଅଗଷ୍ଟ ୨୧ ରେ ଲୋକାର୍ପଣ କଲେ ପାଠକ ଆନନ୍ଦିତ ହେବେ ।

୫. ଆବଶ୍ୟକ ହେଲେ ପରବର୍ତ୍ତୀ ସଂସ୍କରଣ ମଧ୍ୟ ହିତୈଷିଣୀ ସମାଜ ପ୍ରକାଶ କରିବାକୁ ମୁଁ ସମ୍ମତି ପ୍ରଦାନ କରୁଅଛି ।

**କୃତଜ୍ଞତା ଜଣାଇ ରହିଲି**

ଆପଣଙ୍କର ବିଶ୍ୱସ୍ତ
ବିଷ୍ଣୁଚରଣ ମହାନ୍ତି

# ପ୍ରାକ୍ କଥନ

ଉତ୍କଳ ପ୍ରଦେଶ ଗଠନ ସମୟରେ ୧୯୩୬ ମସିହାରେ ଓଡ଼ିଶା ଏକୀକରଣ ଆନ୍ଦୋଳନର ଅନ୍ୟତମ ପୁରୋଧା ଦେଓ୍ୱାନ ବାହାଦୁର ଶ୍ରୀକୃଷ୍ଣ ମହାପାତ୍ରଙ୍କ ପ୍ରତିଷ୍ଠିତ ଜଗତସିଂହପୁର ଉଚ୍ଚ ଇଂରାଜୀ ବିଦ୍ୟାଳୟର ଛାତ୍ର ଥାଇ ଆମ୍ଭେମାନେ ପାରଳାଖେମୁଣ୍ଡି ମହାରାଜାଙ୍କ ଦେଶପ୍ରେମ ଓ ତ୍ୟାଗର କାହାଣୀ ଶୁଣିଥିଲୁ । ଉତ୍କଳ ବିଶ୍ୱବିଦ୍ୟାଳୟର ୧୯୪୪ ମସିହାରେ ପ୍ରଥମ ସ୍ନାତକ ପରୀକ୍ଷା ସମୟରେ ପ୍ରାଧାନମନ୍ତ୍ରୀ ଭାବରେ ସମସ୍ତ ଗସ୍ତଖର୍ଚ୍ଚ ବିଶ୍ୱବିଦ୍ୟାଳୟ ପାଣ୍ଠିକୁ ଆସି ବହୁ ଅଭାବଗ୍ରସ୍ତ ଛାତ୍ରମାନଙ୍କର ପରୀକ୍ଷା ଫିସ୍ ଦେବାରେ ଉପଯୋଗୀ ହୋଇଥିଲା । ଅବସ୍ଥାଚକ୍ରରେ ପରବର୍ତ୍ତୀ କାଳରେ 'ଉତ୍କଳ ଶୋଭା ତିଳୋତ୍ତମା ଗଞ୍ଜାମ ମହୀ ମଞ୍ଜୁଦଳ'ର ଚାରୁ ଶସ୍ୟ ଶ୍ୟାମଳା କାବ୍ୟ କଳାପୂର୍ଣ୍ଣ ପାରଳା'ରେ ନଗରପାଳିକାର କାର୍ଯ୍ୟ ନିର୍ବାହୀ ଅଧିକାରୀ ଭାବରେ ୧୯୬୭ମସିହା ଜୁନ ମାସରେ ଯୋଗଦେବାର ସୌଭାଗ୍ୟ ମିଳିଥିଲା । ପାରଳାର ଶିକ୍ଷା, ସଂସ୍କୃତି, ସାହିତ୍ୟ, ସଂଗୀତ ଓ ଇତିହାସ ସହିତ ଘନିଷ୍ଠଭାବେ ପରିଚିତ ହେବାକୁ ଏହା ମୋତେ ସୁଯୋଗ ଦେଲା । ପାରଳାଖେମୁଣ୍ଡି ଜମିଦାରୀ ସେତେବେଳକୁ ଉଠି ଯାଇଥାଏ । ମହାରାଜା ଅଧିକାଂଶ ସମୟ ରାଜ୍ୟ ବାହାରେ ରହୁଥାନ୍ତି । ସେ କୌଣସି କ୍ଷମତା ବା ପଦବୀରେ ନଥାନ୍ତି । ତାଙ୍କଠାରୁ କୌଣସି ଲାଭର ପ୍ରତ୍ୟାଶା ମଧ୍ୟ ନଥାଏ । ପାରଳା ପ୍ରାସାଦ ମଧ୍ୟରେ ରହିଲେ ମଧ୍ୟ ସେ ସବୁପ୍ରକାର ସାମାଜିକ ଓ ରାଜନୈତିକ କ୍ରିୟାକଳାପରୁ ନିଜକୁ ପୃଥକ ରଖୁଥାନ୍ତି । ମାତ୍ର ଅଳ୍ପ କେତେଜଣ ସ୍ଥାନୀୟ ବ୍ୟକ୍ତିଙ୍କ ସହିତ ତାଙ୍କର ସମ୍ପର୍କ ଥାଏ । ଦରବାର କକ୍ଷରେ ସାକ୍ଷାତ ନିମିତ୍ତ ତାଙ୍କଠାରୁ ପୂର୍ବରୁ ଅନୁମତି ନେବାକୁ ପଡୁଥିଲା । ତଥାପି ଜାତି, ଧର୍ମ, ବର୍ଣ୍ଣ ଓ ଭାଷା ନିର୍ବିଶେଷରେ ଆପାମର ଜନସାଧାରଣଙ୍କର ତାଙ୍କ ପ୍ରତି ଭକ୍ତି ଲକ୍ଷ୍ୟ କରିବାର ଥିଲା । ଜନ୍ମତିଥି ବୈଶାଖ କୃଷ୍ଣ ଅମାବାସ୍ୟା ଅନୁସାରେ ତାଙ୍କର ୭୭ତମ ଜନ୍ମ ଦିବସ ୨୭ ଅପ୍ରେଲ ୧୯୬୮ ମସିହାରେ ପୌରସଭା ଆନୁକୂଲ୍ୟରେ ପାଳିତ ହେଲା ଓ ସେଥିପାଇଁ ସବୁ ଶ୍ରେଣୀର ନାଗରିକ ଅଯାଚିତ ଭାବରେ ସାହାଯ୍ୟ କଲେ । ପରବର୍ତ୍ତୀ ଜନ୍ମଦିବସ ତା୧୭.୦୪.୧୯୬୯ରେ ପାଳନ ସମୟରେ ଦୂର ଦୂରାନ୍ତରୁ ତାଙ୍କର ଗୁଣମୁଗ୍ଧ ବ୍ୟକ୍ତି

ସ୍ୱତଃ ପ୍ରବୃତ୍ତ ତାଙ୍କର ଯଶୋଗାନ କଲେ । ଏହି ଅବସରରେ ପ୍ରକାଶିତ ଏକ ଅଭିନନ୍ଦନ ଗ୍ରନ୍ଥ ସର୍ବତ୍ର ଆଦୃତ ହୋଇଥିଲା ।

ପାରଳାଖେମୁଣ୍ଡି ସହରରେ ମହାରାଜାଙ୍କ ବ୍ୟତୀତ ପଣ୍ଡିତ ଗୋପୀନାଥ ନନ୍ଦ, ଗୋପାଳକୃଷ୍ଣ, ଶ୍ୟାମସୁନ୍ଦର ରାଜଗୁରୁ, ସେକେଣ୍ଡ୍ ପ୍ରିନ୍ସ ପଦ୍ମନାଭ ଗଜପତି, ରଘୁନାଥ ପରିଚ୍ଛା, ଗୌରହରି ପରିଚ୍ଛା ପ୍ରଭୃତି ମନୀଷୀମାନଙ୍କର ଜନ୍ମ ଉତ୍ସବ ମଧ୍ୟ ପୌର ପରିଷଦ ଆନୁକୂଲ୍ୟରେ ପାଳିତ ହେଉଥିଲା । ସେମାନଙ୍କର ସ୍ମୃତିରକ୍ଷା ନିମିତ୍ତ ବିଭିନ୍ନ ଅନୁଷ୍ଠାନ ଗଠନ ଓ ନାମକରଣ କରାଯାଇଥିଲା । ସେତେବେଳେ ସେମାନଙ୍କର ସଂକ୍ଷିପ୍ତ ଜୀବନୀ ସଂଗ୍ରହ କରିବାର ସୁଯୋଗ ମିଳିଲା ଓ କେତେକ ସେଥିମଧ୍ୟରୁ ସମ୍ବାଦପତ୍ରମାନଙ୍କରେ ପ୍ରକାଶ ପାଇଥିଲା । ମହାରାଜାଙ୍କର ଜନ୍ମଦିବସ ଉପଲକ୍ଷେ ପ୍ରକାଶିତ ପ୍ରବନ୍ଧ ମଧ୍ୟ ତାଙ୍କର ଦୃଷ୍ଟି ଆକର୍ଷଣ କରିଥିଲା ଓ ସେ ଏହା ସାଦରେ ଗ୍ରହଣ କରି କେତେକ ତ୍ରୁଟି ସଂଶୋଧନ କରାଇଥିଲେ ମଧ୍ୟ ତାଙ୍କର ପୂର୍ଣ୍ଣାଙ୍ଗ ଜୀବନୀ ଲେଖନ ନିମିତ୍ତ ସମ୍ମତ ହୋଇ ନ ଥିଲେ ।

ପାରଳାହିତୈଷୀ, ଉତ୍କଳ ବାଚସ୍ପତି, ବାଗ୍ମୀପ୍ରବର ଅଧ୍ୟାପକ ଗୌରୀ କୁମାର ବ୍ରହ୍ମା ଏ ପ୍ରବନ୍ଧଗୁଡ଼ିକ ଦେଖି ତାହାକୁ ଏକତ୍ର କରି ପୁସ୍ତକାକାରରେ ପ୍ରକାଶ ନିମିତ୍ତ ପ୍ରଥମେ ସୂଚନା ଦେଲେ । ମୁଁ ସାହିତ୍ୟିକ ବା ସାହିତ୍ୟ ସମାଲୋଚକ ନ ଥାଇ ଏ ଦିଗରେ ମୋର ସୀମିତ ଯୋଗ୍ୟତାର ସଚେତନ ଥିଲି । ମାତ୍ର ଦୁଇ ଦଶନ୍ଧି ପରେ ପାରଳାଖେମୁଣ୍ଡି ଯାଇ ସେଠାରେ ବିଚ୍ଛିନ୍ନ ଅଞ୍ଚଳର ଏକୀକରଣ ନିମିତ୍ତ ଉଦ୍ୟମ କରିଥିବା ଓ କଳା, ସଂସ୍କୃତି, ସାହିତ୍ୟ ଓ ସଙ୍ଗୀତ କ୍ଷେତ୍ରରେ ପ୍ରତିଷ୍ଠା ଅର୍ଜନ କରିଥିବା ବହୁକୃତୀ ସନ୍ତାନ ବିସ୍ମୃତ ହୋଇଥିବା ଲକ୍ଷ୍ୟ କରି ମର୍ମାହତ ହେଲି ଓ "ପାରଳା-ପ୍ରତିଭା" ପ୍ରକାଶନର ଆବଶ୍ୟକତା ଅନୁଭବ କଲି । ଏଥିରେ ବର୍ଣ୍ଣିତ ଯୁଗପୁରୁଷମାନେ କାଳଜୟୀ ଓ ଉତ୍ତର ପୁରୁଷ ସେମାନଙ୍କଠାରେ ଉତ୍କଳୀୟ ସଂସ୍କୃତିର ଅଭିବୃଦ୍ଧି ନିମିତ୍ତ ଋଣୀ । ଅଧ୍ୟାପକ ବ୍ରହ୍ମା 'ପୁରୁଷ ଭାରତୀ' 'ରାମାୟଣ ପୁରୁଷ ' ନିଜ ପ୍ରେରଣାରେ ପ୍ରକାଶିତ ଏହି ପୁସ୍ତକ ଦେଖି ସେ ନିଜର ଉଦାର ମତାମତ ଉଲ୍ଲେଖ କରି ମୋତେ ଉତ୍ସାହିତ ଓ କୃତଜ୍ଞ କରିଅଛନ୍ତି । ସେଥିପାଇଁ ତାଙ୍କୁ ଧନ୍ୟବାଦ ଜଣାଉଛି ।

ପାରଳାଖେମୁଣ୍ଡିର ରାଜନୈତିକ ଇତିହାସ ତନ୍ନତନ୍ନ କରି ଅନୁଧ୍ୟାନ କରିଥିବା କୁଳବୃଦ୍ଧ ସାମ୍ବାଦିକ, ଉଭୟ ଭାଷା ପ୍ରବୀଣ ପଣ୍ଡିତ ଯୁଗଳ କିଶୋର ପାଣିଗ୍ରାହୀ, ବିଦ୍ୱାନ ବିଭିନ୍ନ ତଥ୍ୟ ପ୍ରଦାନ କରି ମତେ ଉତ୍ସାହିତ ଓ ପୁସ୍ତକ ପ୍ରକାଶନ ତ୍ୱରାନ୍ୱିତ କରିଅଛନ୍ତି । ସେ ପ୍ରବନ୍ଧମାନ ଏକତ୍ର କରି ସଜାଇବା ସମୟରେ ଓଡ଼ିଶା ଅଭିଲେଖାଗାରରେ କେତେକ

ଦୁଷ୍ପ୍ରାପ୍ୟ ପୁସ୍ତକ ଓ ନଥି ଦେଖିବାର ସୁଯୋଗ ଦେଇଥିବାରୁ ଅଭିଲେଖାଗାରର ଅଧୀକ୍ଷକ ଡକ୍ଟର ମହେଶ ପ୍ରସାଦ ଦାସ ମୋର ଧନ୍ୟବାଦାର୍ହ ।

ଅନୁପମ ବନ୍ଧୁ ଇଂଜିନିଅର ଶ୍ରୀ ନିମାଇଁ ଚରଣ ପାଣିଙ୍କର ବହୁ କର୍ମବ୍ୟସ୍ତ ଜୀବନ ଚର୍ଚ୍ଚା ମଧ୍ୟରେ ଅଯାଚିତ ପ୍ରେରଣା ଓ ପ୍ରତ୍ୟକ୍ଷ ସହଯୋଗ ଓ ତାଙ୍କର ପ୍ରେସ "ପ୍ରିୟଦର୍ଶୀ ପ୍ରକାଶନୀ"ର ସମସ୍ତ କର୍ମଚାରୀଙ୍କର ଘନିଷ୍ଠ ସହାୟତା ଫଳରେ ପୁସ୍ତକଟିର ପ୍ରକାଶନ ସମ୍ଭବପର ହେଲା । ସେମାନେ ପୁସ୍ତକଟିକୁ ରୁଚିସମ୍ପନ୍ନ ଭାବରେ ମୁଦ୍ରଣ କରାଇ ପାରିଥିବାରୁ ମୁଁ ସେମାନଙ୍କୁ ଆନ୍ତରିକ ଧନ୍ୟବାଦ ଓ ହାର୍ଦ୍ଦିକ କୃତଜ୍ଞତା ଜ୍ଞାପନ କରୁଅଛି ।

ସର୍ବୋପରି ଓଡ଼ିଶା ଲଳିତ କଳା ଏକାଡେମୀର ସଚିବ ଶ୍ରଦ୍ଧେୟ ଶ୍ରୀ ଜଗଦୀଶ କାନୁନଗୋ (ନିଲୁ) ଏହି ପୁସ୍ତକର ସୁଦୃଶ୍ୟ ପ୍ରଚ୍ଛଦପଟରେ ପରିକଳ୍ପନା ଓ ରଙ୍ଗତୂଳିରେ ରୂପ ଦେଇ ମୋର ଗଭୀର କୃତଜ୍ଞତା ଅର୍ଜନ କରିଅଛନ୍ତି ।

ଏହି ପୁସ୍ତକ ପାଠ କରି ବର୍ଣ୍ଣିତ ବିସ୍ମୃତିପ୍ରାୟ କବି, ଲେଖକ ଓ ଜନନାୟକମାନଙ୍କର କୃତୀ ଆଲୋଚନା, ଅପ୍ରକାଶିତ ରଚନା ସଂଗ୍ରହ ଓ ପ୍ରକାଶିତ ପୁସ୍ତକମାନଙ୍କର ସମାଲୋଚନା ଓ ଲୋକପ୍ରିୟତା ଦିଗରେ ସଂଘବଦ୍ଧ ଉଦ୍ୟମ ହେଲେ ମୋର ଶ୍ରମ ସାର୍ଥକ ହେବ ।

ଶ୍ରୀରାମ ନବମୀ
୧୯୯୧

ଲେଖକ



ଅଧ୍ୟାପକ ଗୌରୀ କୁମାର ବ୍ରହ୍ମା

ମାଉସି ମା ମନ୍ଦିର ନିକଟ
ଭୁବନେଶ୍ୱର-୨, ଓଡ଼ିଶା
ଫୋନ୍-୫୩୬୬୫

# ସ୍ୱାଗତମ୍

ତା ୨.୨.୯୧

ମୁଁ ଯାହା ନିଜେ ଲେଖିବି ବୋଲି ଭାବିଥିଲି, ତାହା ଆଜି ମନୋଜ୍ଞ ବେଶଭୂଷାରେ ସଜ୍ଜିତ ହୋଇ ପ୍ରକାଶ ପାଉଥିବାରୁ, ମୋ ଆନନ୍ଦ କହିଲେ ନ ସରେ । ଏଥିପାଇଁ ଏ ପୁସ୍ତକର ଲେଖକ ଶ୍ରୀଯୁକ୍ତ ମହାନ୍ତିଙ୍କୁ ଅନ୍ତରେ ଆବେଗଭରା ଅଭିନନ୍ଦନ ଜ୍ଞାପନ କରୁଅଛି ।

୧୯୩୬ରେ ମୁଁ ଆସିକା ହାଇସ୍କୁଲରୁ ମାଟ୍ରିକ୍ ପାସ୍ କରି ପାରଳାଖେମୁଣ୍ଡି କଲେଜରେ ଯୋଗ ଦେଲି । ଆଜିର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକଙ୍କର ପିତା ଶ୍ରୀ ଲକ୍ଷ୍ମୀନାରାୟଣ ପଟ୍ଟନାୟକ ସେତେବେଳେ ଥିଲେ ପାରଳାଖେମୁଣ୍ଡିର ଦେୱାନ । ତାଙ୍କର ସହାୟତାରେ ଆର୍ଥିକ ସାହାଯ୍ୟ ଲାଭ କରି ସେଠାରେ ଏଫ୍.ଏ. ଏବଂ ବି.ଏ ପଢ଼ିଲି । ଦୀର୍ଘ ଚାରିବର୍ଷ ରହଣି ଭିତରେ ପାରଳାଖେମୁଣ୍ଡି ମୋ ମନରେ ଦ୍ୱିତୀୟ ଜନ୍ମଭୂମିର ପ୍ରତ୍ୟୟ ସୃଷ୍ଟି କରିଥିଲା ।

୧୯୩୬ ବେଳକୁ ପାରଳାଖେମୁଣ୍ଡିର ସଂସ୍କୃତି ଉପରେ ଆନ୍ଧ୍ର ସଂସ୍କୃତିର ପ୍ରଭାବ ଅତ୍ୟଧିକ ଥିଲା । ସେହି କାରଣରୁ ସହରର ନାମ ଇଂରାଜୀରେ ଯେପରି ଲେଖାଯାଉଥିଲା , ତାହାର ଓଡ଼ିଆରେ ରୂପ ହେଉଛି "ପାରଳାଖେମିଡ଼ି" । ଆମେ କେତେଜଣ ଓଡ଼ିଆ ପିଲା "ପାରଳାଖେମୁଣ୍ଡି" କହିଲେ ଡ଼ାକପିଅନ ଆପତ୍ତି କରୁଥିଲା ମୁଁ ଦୁଇବର୍ଷ କାଳ ରହିଥିଲି ମୋର ପିଉସା ସ୍ୱନାମଧନ୍ୟ ପଣ୍ଡିତ ଗୋପୀନାଥ ନନ୍ଦଙ୍କ ଘରେ । ଡାକପିଅନ ଆସିଲେ ସେ ସାହିକୁ 'ରାଜଗୁରୁ ସାହି' ନ କହି 'ରାଜଗୁରୁ ୱିଦୀ' ବୋଲି କହିଥାଏ । ସେତେବେଳେ ଟଙ୍କା ପଇସାର ନାମରେ ମଧ ତେଲୁଗୁ ଶବ୍ଦ ବ୍ୟବହୃତ ହେଉଥିଲା । ଦଶପଇସା ବଦଳରେ ଆମେ "ବେଡି ପାର୍କ" ବୋଲି ମଧ କହୁଥିଲୁ ।

କିନ୍ତୁ ଏବେ ସମଗ୍ର ପାରଳାଖେମୁଣ୍ଡିଟା ଓଡ଼ିଆ ହୋଇଯାଇଥିବାର ଦେଖିଲେ ଦ୍ୱିତୀୟ ବିଶ୍ୱଯୁଦ୍ଧରେ ହିରୋସୀମା ଓ ନାଗାସାକି ଉପରେ ବୋମା ପଡ଼ିବା ଫଳରେ ପାହାଡ଼ସବୁ ଧୂଳି ରୂପେ ଉଡ଼ି ଯାଇଥିବା କଥା ମନେପଡୁଛି । ଆଜିର

ପାରଳାବାସୀମାନେ ସହରର ନାମଟିକୁ ଏବେ Paralakhemundi ବୋଲି ଲେଖିପାରୁଥିବାର ଦେଖିଲେ ମନରେ ଅପୂର୍ବ ଆନନ୍ଦ ଜାତ ହେଉଛି ।

ଏହି ପରିପ୍ରେକ୍ଷୀରେ ନୀରବ ସାଧକ ବିଷ୍ଣୁଚରଣ ବାବୁଙ୍କର ଏହି ତଥ୍ୟପୂର୍ଣ୍ଣ ପୁସ୍ତକ ମୋ ପରି ଜଣେ ଅନୁଭବୀ ତଥା ଉତ୍କଳୀୟ ସଂସ୍କୃତିର ପରିପ୍ରଚାରକ ପକ୍ଷରେ ଅତ୍ୟନ୍ତ ଆନନ୍ଦଦାୟକ । ମହାରାଜା କୃଷ୍ଣଚନ୍ଦ୍ରଙ୍କ ଠାରୁ ଗାୟକ ଶିରୋମଣି ଅନ୍ଧ ଆପନ୍ନାଙ୍କ ପର୍ଯ୍ୟନ୍ତ (ଯାହାଙ୍କ ଶବ ଶୋଭାଯାତ୍ରାରେ ମୁଁ ଯାଇଥିଲି) ସମସ୍ତଙ୍କର ପୁଣ୍ୟ ପ୍ରେରଣା ଏବଂ ବରେଣ୍ୟ ସାଧନା ମୋର ମନେ ପଡ଼ିଯାଉଛି । ଉତ୍କଳ ଭାରତୀଙ୍କର ଗନ୍ତାଘରକୁ ଦୀପିତ କରିବାପାଇଁ ଏହି ପୁସ୍ତକଟି ହେବ ଏକ ସମୁଜ୍ଜ୍ୱଳ ରତ୍ନଖଣ୍ଡ ।

ପ୍ରଫେସର ଗୌରୀ କୁମାର ବ୍ରହ୍ମା



# ସୂଚୀପତ୍ର

# ଦକ୍ଷିଣ ଓଡ଼ିଶାର ବିଦ୍ୟାନଗରୀ ପାରଳାଖେମୁଣ୍ଡି

ପ୍ରାତଃସ୍ମରଣୀୟ ରାଜର୍ଷି ଗୌରଚନ୍ଦ୍ରଙ୍କର ପୂତ ତପୋବନ, କର୍ମଯୋଗୀ ପୁଣ୍ୟଶ୍ଳୋକ ପଦ୍ମନାଭ ଗଜପତିଙ୍କର ସାଧନା ସ୍ୱର୍ଗ, ନବ ଉତ୍କଳ ନିର୍ମାଣ କୀର୍ତ୍ତି କିରୀଟ ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତିଙ୍କର ଲୀଳାଭୂମି, ଗୋପାଳକୃଷ୍ଣ, ରଘୁନାଥ, ପଦ୍ମନାଭ, ହରିକୃଷ୍ଣ, ଗୌରହରି, ହରିବନ୍ଧୁ ପ୍ରଭୃତି ଭାରତୀ ଭକ୍ତମାନଙ୍କର ସାରସ୍ୱତ ଉପାସନାର ସୁବର୍ଣ୍ଣ ଦେବାଳୟ, ଦକ୍ଷିଣ ସୀମାନ୍ତରେ ଉତ୍କଳୀୟ ଭାଷା ଓ ସଂସ୍କୃତି କ୍ଷେତ୍ରରେ ଜାଗ୍ରତ ପ୍ରହରୀ ଶ୍ୟାମସୁନ୍ଦର, ଗୋପୀନାଥ ଓ ଆପନ୍ନା ତ୍ରୟଙ୍କର ଚିରଚଞ୍ଚଳ କର୍ମଭୂମୀ, ହରି ସଂକୀରର୍ତ୍ତନରେ ଉତ୍କଳର ନଦିଆ ଆଖ୍ୟାର ଅପ୍ରତିଦ୍ୱନ୍ଦ୍ୱୀ ଅଧିକାରିଣୀ, ପୁଣ୍ୟଶୀଳା ଏହି ପାରଳାନଗରୀ । ଭାରତର ସ୍ୱାଧୀନତା ସଂଗ୍ରାମର ଇତିହାସରେ ୧୮୩୪ ଓ ୧୮୫୭ ମସିହା ବ୍ରିଟିସ୍ କେଶରୀର କେଶରକୁ ଆଲୁଳାୟିତ କରି ଏବଂ ଦୀର୍ଘ ସଂଗ୍ରାମରତ ଥାଇ ପ୍ରାଣଦଣ୍ଡ ଓ ଦ୍ୱୀପାନ୍ତର ଦଣ୍ଡ ଭୋଗ କରିଥିବା ବହୁ ଅମର ଶହୀଦଙ୍କର କ୍ରୀଡ଼ା ଭୂମି ବୀର-ଅବନୀ, କବି କଣ୍ଠରେ ଘୋଷିତ କାବ୍ୟ କଳାପୂର୍ଣ୍ଣ, କମଳା ଲୀଳାଭୂମି, ଚାରୁ-ଶସ୍ୟ-ଶ୍ୟାମଳା ସୁବର୍ଣ୍ଣପ୍ରସୂ ପବିତ୍ର ଗଜପତି-ବାଣୀ ଧରଣୀ ଏହି ପାରଳା । କବିବର ରାଧାନାଥ ଲେଖିଥିଲେ-

"ପୁଷ୍ପଫଳ ଶସ୍ୟ ଶାଳିନୀ ପାରଳା<br>
ଅଚପଳ ଯହିଁ ଚପଳା ଚପଳା<br>
ହୋଇଥିଲା ସର୍ବ ଉତ୍କଳେ ପ୍ରଚାର<br>
ଫଳିତ ଜ୍ୟୋତିଷେ ପ୍ରତିଷ୍ଠା ଯାହାର ।"

(ମହେନ୍ଦ୍ର ଗିରି)

କବି ଶେଖର ଚିନ୍ତାମଣି ଲେଖିଥିଲେ-

ଦଣ୍ଡବତ, ଦଣ୍ଡବତ, ପବିତ୍ର ପାରଳା,<br>
ପ୍ରାଚୀନ ଜ୍ୟୋତିର୍ବିଦ୍ୟାରେ ଥିଲୁ ତୁ କୁଶଳା ।

ପାରଳାର ଜ୍ୟୋତିଷ ଚର୍ଚ୍ଚା ଇତିହାସରେ ସୁପରିଚିତ । ଜଣେ ପାରଳାବାସୀ

କରଣ ଜ୍ୟୋତିର୍ବିଦ୍ୟାରେ ଅଦ୍ଭୁତ ପାରଙ୍ଗମତା ଦେଖାଇ ପୁରୀର ଭାରତ ବିଖ୍ୟାତ ମୁକ୍ତି-ମଣ୍ଡପ ପଣ୍ଡିତ ସଭାରେ ଆଦୃତ, ଗୃହୀତ ଓ ପୁରସ୍କୃତ ହୋଇଥିଲେ । ଚଳିତ ଶତାବ୍ଦୀରେ ମଧ୍ୟ ପାରଳା ତା'ର ଜ୍ୟୋତିଷ କୁଶଳତା କୀର୍ତ୍ତି ଅକ୍ଷତ ରଖିଅଛି । ଶ୍ରୀ ଗଜପତି ପ୍ରେସ୍ ଆନୁକୂଲ୍ୟରେ ସିଦ୍ଧାନ୍ତୀ ନୀଳମଣି ପାଣିଗ୍ରାହୀ ଓ ଆପନ୍ନା ପଣ୍ଡାଙ୍କର ଗଣନା ଅନୁସାରେ ଶ୍ରୀ ଗଜପତି ପଞ୍ଜିକା ଏଠାରୁ ପ୍ରକାଶ ପାଉଥିଲା । ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତିଙ୍କର ପ୍ରଥମ ସନ୍ତାନ ଶ୍ରୀ ପାଟଦେଓଙ୍କର ଜନ୍ମ ସମୟରେ କୋଷ୍ଠୀ ଗଣନା କରି ଅସମ୍ଭାବିତ ଓ ଅପ୍ରିୟ ଭବିଷ୍ୟତବାଣୀ ଫଳରେ ଏହାର ପ୍ରକାଶନ ନୂତନ ଉତ୍କଳ ପ୍ରଦେଶ ଗଠନ ପ୍ରାକ୍ କାଳରେ ବନ୍ଦ ହୋଇଯାଇଥିଲା । ଅବସରପ୍ରାପ୍ତ ଶିକ୍ଷ ନିର୍ଦ୍ଦେଶକ ଇଞ୍ଜିନିୟର ସଦାନନ୍ଦ ପାଢ଼ୀ ପାରଳା ମହାଭାରତରେ ଜ୍ୟୋତିଃଶାସ୍ତ୍ର ଲିଖିତ ବେଳଘଡ଼ିର ଉପଯୋଗିତା ଓ ପ୍ରକୃତ ନିର୍ଣ୍ଣୟର ଗବେଷଣା କରି ସ୍ୱଜ୍ଞାନ 'ଶ୍ରୀକୃଷ୍ଣଙ୍କ ଜାତକ' ଓ ଅନ୍ୟାନ୍ୟ ପ୍ରବନ୍ଧ ଆକାରରେ ପ୍ରକାଶ କରୁଥିବା ସମୟରେ ତା ୧୮.୪.୧୯୭୫ରେ ପରଲୋକ ଗମନ କରି ଅଛନ୍ତି ।

କବିବର ରାଧାନାଥ ଆହୁରି ମଧ୍ୟ ଲେଖିଥିଲେ,

"ସ୍ୱର୍ଗୁ ଖଣ୍ଡେ ପଡ଼ିଥିଲା ପ୍ରାୟ ଛିଡ଼ି
ଶୈଳେ, ସ୍ରୋତେ, ସରେ, ସୁରମ୍ୟ ଖିମଡ଼ି ।'
(ନନ୍ଦକେଶ୍ୱରୀ ଶ୍ରୀ.୧୮୮୭)

ପାରଳା ରାଜ୍ୟରେ ପ୍ରବାହିତ ଦୁଇ ନଦୀ ବଂଶଧାରା ଓ ମହେନ୍ଦ୍ର ତନୟା କାମଧେନୁ ସଦୃଶ୍ୟ ଓ ରାଜ୍ୟ-ଲକ୍ଷ୍ମୀଙ୍କର କ୍ଷମା ଓ କରୁଣାର ଅମୃତ ଧାରାର ପ୍ରତୀକ । ମହେନ୍ଦ୍ର ତନୟା ମହେନ୍ଦ୍ର ପର୍ବତରୁ ଓ ବଂଶଧାରା କଳାହାଣ୍ଡି ଜିଲ୍ଲାର ଲାଞ୍ଜିଗଡ ଅଞ୍ଚଳର ନିୟାମଗିରି ପର୍ବତରୁ ବାହାରି ଅଛି । ମହେନ୍ଦ୍ର ତନୟା ତୀରରେ ୧୬ ଗୋଟି ଉତ୍କଳୀୟ ବ୍ରାହ୍ମଣ ଶାସନ ଓ ବଂଶଧାରା କୂଳରେ ୧୬ ଗୋଟି ଆନ୍ଧ୍ର ବ୍ରାହ୍ମଣ ଶାସନ ପାରଳାର ପୂର୍ବତନ ନରପତିମାନଙ୍କର ଯଶୋଗାଥା ବହନ କରେ । ଚଳିତ ଶତାବ୍ଦୀର ୩ୟ ଦଶକରେ ମଧ୍ୟ ପାରଳାଖେମୁଣ୍ଡି ସହରରେ ଏକ ହଜାର ଲୋକ ରହି ପାରିବା ଭଳି ଏକ ବିରାଟ ଅଟ୍ଟାଳିକାରେ ଥିବା ଧର୍ମଶାଳାରେ ତିନି ଓଳି ପର୍ଯ୍ୟନ୍ତ ଭୋଜନ ଦେବାର ବ୍ୟବସ୍ଥା ରାଜା ଓ ରାଜ ପରିବାରର ଆତିଥେୟତାର ନିଦର୍ଶନ । ତେଲେଙ୍ଗା ବ୍ରାହ୍ମଣମାନେ ଭୋଜନ ସହିତ ଚାରି ଅଣା ଓ ଓଡ଼ିଆ ବ୍ରାହ୍ମଣମାନେ ଭୋଜନ ସହିତ ଏକ ଅଣା ଦକ୍ଷିଣା ପାଉଥିଲେ । ପରେ ସମୀକରଣ

କରାଯାଇ ସମସ୍ତଙ୍କପାଇଁ ଦୁଇ ଅଣା ଦକ୍ଷିଣାର ବ୍ୟବସ୍ଥା କରାଯାଇଥିଲା । ସାଧାରଣ ଭିକାରୀମାନଙ୍କୁ ନଅରରୁ ଅଣାକରୁ ଦୁଇଅଣା ପର୍ଯ୍ୟନ୍ତ ଦୈନିକ ଭିକ୍ଷା ଦିଆ ଯାଉଥିଲା । ସମଗ୍ର ରାଜ୍ୟରେ ପାଞ୍ଚଶତରୁ ଅଧିକ କ୍ଷୁଦ୍ର ଓ ମଧ୍ୟମ ଜଳାଶ୍ରୟ ଭରି ରହିଥିଲା ।

ବୀରତ୍ୱରେ ପାରଳାର ଗୌରବ ଊଣାନୁହେଁ । ପ୍ରବାଦ ଅଛି, ଗୋଟିଏ ଭୀଷଣ ଦନ୍ତାବଳ ହାତୀ ବଣରୁ ଆସି ଗ୍ରାମରେ ପଶି ନାନାବିଧ କ୍ଷତି ଘଟାଉଥିବାରୁ ପାରଳାର ଜଣେ ନିରସ୍ତ୍ର ରାଜା ତାହାର ମର୍ମସ୍ଥାନରେ ଏକ ଚପୋଟାଘାତ କରି ବିବ୍ରତ କରିଥିଲେ ଓ ଗଜବର ମହା ବ୍ୟଥାରେ ଆର୍ତ୍ତନାଦ କରି ବଣକୁ ପଳାଇ ଯାଇଥିଲା । ଯେଉଁ ସ୍ଥାନରେ ଏ ଘଟଣା ଘଟିଥିଲା, ତାହା ବର୍ତ୍ତମାନ ହାତୀବାଡି ନାମରେ ଅଭିହିତ । ନାନା କାର୍ଯ୍ୟରେ ପାରଗତା ଦେଖାଇ ଏହି ନଗରୀ 'ପାରଳା' ନାମ ସାର୍ଥକ କରୁଅଛି । ପାରଳା 'ପାରିଲା' ଶବ୍ଦର ଅପଭ୍ରଂଶ ବୋଲି ମନେହୁଏ । ପୁଣି କେତେକ କହନ୍ତି ପାରଳା 'ପ୍ରବାଳ' ଶବ୍ଦରୁ ଓ ପାରଳାଖେମୁଣ୍ଡି ପ୍ରବାଳାକ୍ଷୀମୁଣ୍ଡ ନାମକ ଜଣେ ଆଦିମ ଦଳାଧିପତିଙ୍କର ନାମରୁ ଅପଭ୍ରଂଶ । ପୂର୍ଣ୍ଣଚନ୍ଦ୍ର ଓଡିଆ ଭାଷାକୋଷରେ 'ପାରଳାଖେମୁଣ୍ଡି' ନାମଟି ପାରଳାଖେମିଡି, ପାରଳାଖିମଣ୍ଡି, ପାରଳାଖିମୁଡି, ପାରଳାଖିମୁଣ୍ଡି, ପାରଳାଖେମଡି, ପାରଳାଖେମୁଡି, ପାରଳାଖେମଣ୍ଡି ଭାବରେ ଲେଖା ଯାଇଅଛି ।

## ଗୌରବଦୀପ୍ତ ଅତୀତର ଇତିହାସ:

ପାରଳା ଗୋଟିଏ ପ୍ରାଚୀନ ବିଭବଶାଳୀ ରାଜ୍ୟ । ପଣ୍ଡିତ କୃପାସିନ୍ଧୁ ତାଙ୍କର ଉତ୍କଳ ଇତିହାସରେ ଲେଖିଛନ୍ତି;

"ବର୍ତ୍ତମାନର ପାରଳାଖେମୁଣ୍ଡି, ବଡ଼ଖେମୁଣ୍ଡି, ସାନଖେମୁଣ୍ଡି ଓ ମାଳ ପ୍ରଦେଶକୁ ନେଇ ଖେମୁଣ୍ଡି ରାଜ୍ୟ ପୂର୍ବେ ଗଠିତ ହୋଇଥିଲା । ଗଙ୍ଗବଂଶର ରାଜପୁରୁଷମାନେ ଏଠାରେ ରାଜପଣ କରୁଥିଲେ । ବର୍ତ୍ତମାନ ସୁଦ୍ଧା ଏ ସମସ୍ତ ରାଜ୍ୟର ରାଜାମାନେ ଗଜପତି ଆଖ୍ୟା ଧାରଣ କରନ୍ତି । ପାରଳାଖେମୁଣ୍ଡି ନାମକ ଜଣେ ଅନାର୍ଯ୍ୟ ପ୍ରଥମେ ପାରଳାଖେମୁଣ୍ଡିର ରାଜା ଥିଲେ । ଓଡ଼ିଶାର ଗଜପତି ରାଜା କପିଳେନ୍ଦ୍ରଦେବଙ୍କ ବିଦ୍ରୋହୀ ପୁତ୍ରମାନଙ୍କ ମଧ୍ୟରୁ ଜଣେ ଦକ୍ଷିଣକୁ ଆସି ଅନାର୍ଯ୍ୟମାନଙ୍କୁ ପରାସ୍ତ କରି ଖେମୁଣ୍ଡି ଅଧିକାର କଲେ । ଖ୍ରୀ.୧୬୦୭ରେ ପାରଳାଖେମୁଣ୍ଡି ରାଜାଙ୍କ ଏକ ପୁତ୍ରଙ୍କୁ ଅନଙ୍ଗଭୀମଦେବ ଖେମୁଣ୍ଡି ରାଜ୍ୟ ଦେଇଥିଲେ । ସେହି ରାଜ୍ୟ ପରେ ଦୁଇ ଭାଇଙ୍କର ମଧ୍ୟରେ ବିଭକ୍ତ ହୋଇ ବଡଖେମୁଣ୍ଡି ଓ ସାନଖେମୁଣ୍ଡି ରାଜ୍ୟ ହେଲା ।"

ଇତିହାସରୁ ଜଣାଯାଏ ଯେ, କେଶରୀ ବଂଶୀୟ ରାଜାମାନେ ରାଜପଣ କରୁଥିବା

ସମୟରେ ଉତ୍କଳର ଦକ୍ଷିଣ ସୀମା ଋଷିକୂଲ୍ୟା ନଦୀ ପର୍ଯ୍ୟନ୍ତ ଥିଲା । ସେମାନେ ନିଜକୁ ତ୍ରିକଳିଙ୍ଗାଧିପତି କହୁଥିଲେ ସୁଦ୍ଧା ପ୍ରକୃତ କଳିଙ୍ଗ ଅର୍ଥାତ୍ ଋଷିକୂଲ୍ୟା ନଦୀର ଦକ୍ଷିଣାଂଶ ସେମାନଙ୍କର ରାଜ୍ୟଭୁକ୍ତ ନ ଥିଲା । ଉତ୍କଳରେ କେଶରୀ ବଂଶର ରାଜପଣ ଆରମ୍ଭରେ କୋଳାହଳ ବା ରାଜେନ୍ଦ୍ର ଅନନ୍ତ ବର୍ମା ନାମକ ଜଣେ ରାଜା ଦକ୍ଷିଣାତ୍ୟର କର୍ଣ୍ଣାଟକରୁ ଆସି ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀରେ ଦକ୍ଷିଣ କଳିଙ୍ଗ ଅଧିକାର କରିଥିଲେ । ଅନନ୍ତ ବର୍ମା ପ୍ରଥମେ କଳିଙ୍ଗ ମଧ୍ୟରେ ଯେଉଁ ସ୍ଥାନ ଅଧିକାର କରି ରାଜତ୍ୱ କଲେ ତାହା ଗଙ୍ଗାବାଡ଼ି ନାମରେ ଖ୍ୟାତ ଥିଲା । ଏହା ବହୁ ଧନରତ୍ନପୂର୍ଣ୍ଣ ରାଜ୍ୟ ଥିଲା । ବର୍ତ୍ତମାନ ପାରଳାଖେମୁଣ୍ଡିର ଜମିଦାରିରେ ଥାଇ ଆନ୍ଧ୍ର ପ୍ରଦେଶରେ ରହି ଯାଇଥିବା ମୁଖଲିଙ୍ଗ ନଗରୀ ସେହି ଗଙ୍ଗାବାଡ଼ ନଗରର ନାମ । ମୁଖଲିଙ୍ଗ ପ୍ରାଚୀନ କଳିଙ୍ଗର ରାଜଧାନୀ ଥିଲା । ଏହାର ଅନ୍ୟତମ ନାମ କଳିଙ୍ଗ ନଗରମ୍ । ଦଶମ ଶତାବ୍ଦୀରୁ ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ ଏହା କଳିଙ୍ଗ ନଗରମ୍ ରୂପେ କଳିଙ୍ଗର ରାଜଧାନୀ ଭାବେ ଖ୍ୟାତ ଥିଲା । ଏହି ସମୟ ମଧ୍ୟରେ ନିର୍ମିତ ଦେବାଳୟ ବର୍ତ୍ତମାନ ମଧ ମୁଖଲିଙ୍ଗରେ ବିଦ୍ୟମାନ ଓ ଏହି ମନ୍ଦିର ଗାତ୍ରରେ ଓଡିଆ ଲିପିରେ ଖୋଦିତ ଶିଳା ଲିପି ମଧ ଦର୍ଶନୀୟ । ଦଶମରୁ ପଞ୍ଚଦଶ ଶତାବ୍ଦୀ ପର୍ଯ୍ୟନ୍ତ ପ୍ରାଚୀନ ଗଙ୍ଗା ନରପତିମାନଙ୍କର ଅମର କୀର୍ତ୍ତି ଏହି ଶିଳାଲିପିମାନଙ୍କରେ ବର୍ଣ୍ଣିତ ।

ପାରଳାଖେମୁଣ୍ଡିର ନରପତିମାନେ ଗଙ୍ଗ ବଂଶୀୟ ବା କପିଳେନ୍ଦ୍ରଦେବଙ୍କ ପୁତ୍ରଠାରୁ ଆରମ୍ଭ । ଏହା ଏକ ବିବଦମାନ ଓ ସ୍ପର୍ଶକାତର ପ୍ରଶ୍ନ । ତେଣୁ ଅତି ସଂକ୍ଷେପରେ ଲୋକଶ୍ରୁତି ଇତିହାସ ଆଦି ଉପରେ ପର୍ଯ୍ୟବସିତ ତଥ୍ୟ ଏଠାରେ ଦିଆଗଲା । ପାରଳାଖେମୁଣ୍ଡିରେ ମିଳିଥିବା ସମସ୍ତ ତାମ୍ରପଟା ମଧ୍ୟରୁ ସର୍ବାପେକ୍ଷା ପୁରାତନ ପଟା ଗଙ୍ଗବଂଶର ଇନ୍ଦ୍ରବର୍ମାଙ୍କର ଓ ସେ ପ୍ରାୟ ଖ୍ରୀ. ୪୩୬ରୁ ରାଜପଣ କରୁଥିବା ପ୍ରତୀୟମାନ ହୁଏ । ସେହି ସୂତ୍ରରେ ପାରଳାଖେମୁଣ୍ଡି ଜମିଦାରି ଓ ରାଜବଂଶ ଏକ ସହସ୍ର ବର୍ଷର ପୁରାତନ ବୋଲି ଦାବୀ କରାଯାଉଛି । ଇତିହାସର କଳିଙ୍ଗ ରାଜ୍ୟ, ଅଶୋକ ଓ ଖାରବେଳ (ଖ୍ରୀ.ପୂ. ୨୦୦)ଙ୍କର ପୂର୍ବ ଯୁଗର ହୋଇଥିବା ବେଳେ ପାରଳାଖେମୁଣ୍ଡିର ଗୌରବୋଜ୍ଜ୍ୱଳ ଅତୀତ ଏହି ବିରାଟ କଳିଙ୍ଗ ସାମ୍ରାଜ୍ୟର ଏକ ଅଂଶ ବୋଲି ନିର୍ଣ୍ଣୀତ ।

ମହେନ୍ଦ୍ରଗିରି ଉପରେ ଥିବା ଗୋକର୍ଣ୍ଣେଶ୍ୱର ଦେବ, ଅନନ୍ତବର୍ମା ଓ ତାଙ୍କ ବଂଶଧରମାନଙ୍କର ଇଷ୍ଟ ଦେବତା ଥିଲେ । ଗଙ୍ଗାବାଡ଼ିରେ ରାଜତ୍ୱ କରିବା ଦିନଠାରୁ ଅନନ୍ତବର୍ମା ଓ ତାଙ୍କ ବଂଶଧରମାନେ ରୂପଗଙ୍ଗ ନାମରେ ଖ୍ୟାତ ଥିଲେ । ସେମାନେ ଚନ୍ଦ୍ର ବଂଶୀୟ ରାଜା ବୋଲି ପରିଚ୍ୟ ଦେଲେ । ପୁରାଣ ପ୍ରସିଦ୍ଧ ନହୁଷ, ଯଯାତି,

ପୁରୁରବା ପ୍ରଭୃତି ନରପତିମାନଙ୍କର ସେମାନେ ବଂଶଧର ଥିବାର ତାମ୍ର ଶାସନରେ ଉଲ୍ଲେଖ ଅଛି । ଅନନ୍ତବର୍ମାଙ୍କ ପରେ ଗଙ୍ଗ ବଂଶର ପ୍ରଭାବ ବଢ଼ିଥିଲା । ସମଗ୍ର ଦକ୍ଷିଣ କଳିଙ୍ଗ ଅର୍ଥାତ୍ ବିଶାଖାପତ୍ତନର ନିକଟବର୍ତ୍ତୀ ସିଂହାଚଳ (ସୀମାଚ୍ଳମ୍) ଠାରୁ ଋଷିକୂଲ୍ୟା ନଦୀ ପର୍ଯ୍ୟନ୍ତ ସମଗ୍ର ଜୟପୁର ଅଞ୍ଚଳ ଗଙ୍ଗବାଡ଼ି ରାଜ୍ୟର ଅନ୍ତର୍ଭୁକ୍ତ ଥିଲା । ସୁତରାଂ କେଶରୀ ବଂଶ ଉତ୍କଳ ବା ଉତ୍ତର କଳିଙ୍ଗରେ ରାଜାଥିଲେ । ରାଜପଣ କରୁଥିବା ସମୟରେ ଉତ୍କଳର ଭବିଷ୍ୟତ ଗଙ୍ଗ ବଂଶର ରାଜାମାନଙ୍କର ପୂର୍ବପୁରୁଷମାନେ ଦକ୍ଷିଣ କଳିଙ୍ଗରେ ରାଜପଣ କରୁଥିବା ସମୟରେ ଉତ୍କଳର ଭବିଷ୍ୟତ ଗଙ୍ଗ ବଂଶର ରାଜାମାନଙ୍କର ପୂର୍ବପୁରୁଷମାନେ ଦକ୍ଷିଣ କଳିଙ୍ଗର ରାଜା ଥିଲେ । ଦକ୍ଷିଣର ଚୋଳ ଓ ଚାଲୁକ୍ୟ ରାଜାମାନଙ୍କ ସହିତ ଗଙ୍ଗ ବଂଶର ବାରମ୍ବାର ଯୁଦ୍ଧ ବିଗ୍ରହ ଘଟୁଥିଲା । ମାତ୍ର ଗଙ୍ଗମାନେ ନିଜର ବୀର ବିକ୍ରମରେ ସ୍ୱାଧୀନତା ରକ୍ଷା କରିବାକୁ ସମର୍ଥ ହୋଇଥିଲେ । ଶେଷକୁ ଚୋଳ ରାଜ୍ୟର ରାଜା ରାଜେନ୍ଦ୍ର ଚୋଳ ଖ୍ରୀଷ୍ଟୀୟ ଦଶମ ଶତାବ୍ଦୀରେ ବଙ୍ଗଦେଶ ପର୍ଯ୍ୟନ୍ତ ଜୟ କରିଥିଲେ । ମାତ୍ର ରାଜେନ୍ଦ୍ର ଚୋଳଙ୍କର ବିଜୟ ସ୍ୱଳ୍ପକାଳ ସ୍ଥାୟୀ ଥିଲା । ତାଙ୍କ ପରେ ଚୋଳ ରାଜ୍ୟ ସଂକୁଚିତ ହୋଇଗଲା । କଳିଙ୍ଗ ଗଙ୍ଗବଂଶ ପୁଣି ସ୍ୱାଧୀନ ହୋଇ ଉଠିଲେ । ଗଙ୍ଗବଂଶର ପଞ୍ଚମ ରାଜା କାମାର୍ଣ୍ଣବ ଦିଗ୍‌ବିଜୟୀ ଥିଲେ । ସେ ସମଗ୍ର କଳିଙ୍ଗ ଅଧିକାର କରି ଉଡ୍ରଦେଶ ବା ବସ୍ତର-କଳାହାଣ୍ଡି ରାଜ୍ୟ ଆକ୍ରମଣ କଲେ । ସେହି ବଂଶର ଷଷ୍ଠ ରାଜା ବଜ୍ରହସ୍ତ ଅନନ୍ତବର୍ମା ଦେବ ତ୍ରିକଳିଙ୍ଗ ଜୟ କରି ନିଜେ ତ୍ରିକଳିଙ୍ଗନାଥ ଉପାଧିଧାରଣ କଲେ । ଅନନ୍ତବର୍ମା ଦେବଙ୍କ ପରେ ତାଙ୍କର ପୁତ୍ର ରାଜରାଜଦେବ ଆଠବର୍ଷ ମାତ୍ର କଳିଙ୍ଗରେ ରାଜତ୍ୱ କରିଥିଲେ । ସେ ଅତ୍ୟନ୍ତ ବିକ୍ରମଶାଳୀ ଥିଲେ । ତାଙ୍କର ବନପତି ନାମରେ ଏକ ସେନାପତି ଚୋଳରାଜା ଓ ଉତ୍କଳର କେଶରୀ ରାଜାମାନଙ୍କୁ ପରାସ୍ତ କରିଥିଲେ । ବେଙ୍ଗୀରାଜ୍ୟ ( ଦକ୍ଷିଣ ବସ୍ତର )ପାରଳାଖେମୁଣ୍ଡି (ବଡ ଓ ସାନ ଖେମୁଣ୍ଡି ସହିତ ) କୋଶଳ ଓ ଉଡ୍ର ରାଜ୍ୟ (ବସ୍ତର ଜୟପୁର ) ପ୍ରଭୃତି ଏହି ସମୟରେ କଳିଙ୍ଗର ଅନ୍ତର୍ଭୁକ୍ତ ହୋଇଥିଲା । ସ୍ଥୁଳତଃ ଚିଲିକାର ଦକ୍ଷିଣରୁ ଗୋଦାବରୀ ନଦୀ ପର୍ଯ୍ୟନ୍ତ ଓ ସମୁଦ୍ର ଠାରୁ ପଶ୍ଚିମରେ ମହାରାଷ୍ଟ୍ର ଦେଶ ପର୍ଯ୍ୟନ୍ତ ସକଳ ରାଜ୍ୟଗଙ୍ଗ ରାଜ୍ୟର ଅନ୍ତର୍ଗତ ଥିଲା । ରାଜରାଜଙ୍କର ପୁତ୍ର ଅନନ୍ତବର୍ମା ଚୋଳ ଗଙ୍ଗଦେବ ଉତ୍କଳ ଅଧିକାର କରିବାରୁ ପ୍ରାଚୀନ ଉତ୍କଳ ଓ କଳିଙ୍ଗ ପୁନର୍ବାର ଏକ ରାଜ୍ୟ ଓ ଏକ ଶାସନାଧୀନ ହୋଇ ପଞ୍ଚ ଶତାଧିକ ବର୍ଷକାଳ ରହିଥିଲା । ଚୋଳଗଙ୍ଗ ଉତ୍କଳ ସିଂହାସନ ଆରୋହଣ କରିବା ସଙ୍ଗେ ସଙ୍ଗେ ପ୍ରାଚୀନ କଳିଙ୍ଗ କେବଳ ଉତ୍କଳ ନାମରେ ଅଭିହିତ ହେଲା ।

ଅନନ୍ତବର୍ମା ଚୋଳଗଙ୍ଗଙ୍କର ଅନ୍ୟ ନାମ ଥିଲା ଚୋଳଗଙ୍ଗ । ସେ ହୁଏତ କଳିଙ୍ଗାଧିପତି ଖ୍ରୀ. ୧ ୧ ୧ ୨ ର ଗୌରବାନ୍ୱିତ ରାଜା ଓ ତାଙ୍କ ସମୟରେ ଜଗନ୍ନାଥ ମନ୍ଦିର ପୁନଃ ନିର୍ମିତ ହୋଇଥିଲା । ସେ କଳିଙ୍ଗ ନଗରୀରୁ ରାଜଧାନୀ ଉଠାଇ ନେଇ ଓଡିଶାରେ ଏକ ନୂତନ ରାଜଧାନୀ ପ୍ରତିଷ୍ଠା କରିଥିଲେ । ଏହାଙ୍କ ଠାରୁ କପିଳେନ୍ଦ୍ର ଦେବଙ୍କ ପର୍ଯ୍ୟନ୍ତ ଗଙ୍ଗ ବଂଶର ଇତିହାସ । କପିଳେନ୍ଦ୍ର ଦେବଙ୍କର ଅଠର ପୁତ୍ର ମଧ୍ୟରୁ ଜ୍ୟେଷ୍ଠ ପୁତ୍ର କଳିଙ୍ଗ ରାଜ୍ୟରେ ନିଜ ସ୍ୱାତନ୍ତ୍ୟ ସ୍ଥାପନ କରିଥିଲେ । ଦକ୍ଷିଣରେ ବିଜୟ ନଗର, ପଶ୍ଚିମରେ ମହମ୍ମଦୀୟ ରାଜ୍ୟ ପ୍ରଭାବରୁ ତାଙ୍କର ଜଣେ ବଂଶଧର କଳହ ମିହିରଦେବ ଦୁର୍ଗମ ପାରଳାଖେମୁଣ୍ଡିକୁ ରାଜଧାନୀ ଉଠାଇ ନେଲେ ।

ପଞ୍ଚମ ଶତାବ୍ଦୀରୁ ଏକାଦଶ ଶତାବ୍ଦୀ ପର୍ଯ୍ୟନ୍ତ ରାଜପଣ କରୁଥିବା କେଶରୀ ବଂଶ ରାଜାମାନଙ୍କର ଶାସନ କାଳରେ ସେମାନେ ବର୍ତ୍ତମାନର ଗଞ୍ଜାମ ଜିଲ୍ଲା ଉପରେ ରାଜତ୍ୱ କରୁଥିଲେ । ପ୍ରଥମେ ଗଙ୍ଗମାନଙ୍କର ରାଜଧାନୀ ମୁଖଲିଙ୍ଗ ଥିଲା । ଶେଷ କେଶରୀ ରାଜାଙ୍କୁ ପରାସ୍ତ କରି ପୂର୍ବ ବର୍ଣ୍ଣିତ ଚୋଳ ଗଙ୍ଗଦେବ କଂଗୋଦ ଓ ଉତ୍କଳ ଏକ ଶାସନାଧୀନ କରିଥିଲେ । ହୁଏନସାଂଙ୍କ ବର୍ଣ୍ଣିତ ସମୟକୁ ଉଡ୍ର, କଂଗୋଦ ଓ କଳିଙ୍ଗ ଏହି ତିନି ଭାଗରେ ରାଜ୍ୟ ବିଭକ୍ତ ହୋଇ ସାରିଥାଏ । ଗଙ୍ଗବଂଶର ରାଜାମାନେ ସେମାନଙ୍କର କେନ୍ଦ୍ରୀୟ ଆଧିପାତ୍ୟ ସମଗ୍ର ରାଜ୍ୟରେ ବିସ୍ତାର କରିଥିଲେ । ସେମାନେ ଦେଶରେ ସୁଦୃଢ଼ ଶାସନ ବ୍ୟବସ୍ଥା ପ୍ରବର୍ତ୍ତନ କରିଥିଲେ ।

ଉତ୍ତରାଧିକାରୀ ସୂତ୍ରରେ ଚୋଡ଼ଗଙ୍ଗ ଦେବ କଳିଙ୍ଗ ରାଜ୍ୟ ତାଙ୍କର ପିତା ରାଜରାଜଙ୍କ ମୃତ୍ୟୁ ପରେ ପ୍ରାପ୍ତ ହୋଇଥିଲେ । ସେତେବେଳେ କଳିଙ୍ଗର ସୀମା ଉତ୍ତରରେ ଋଷିକୂଲ୍ୟା, ଦକ୍ଷିଣରେ ସୀମାଚଳ ପର୍ଯ୍ୟନ୍ତ, ପଶ୍ଚିମରେ ଖିମିଡ଼ି, କୋଶଳ, ଓ ପୂର୍ବରେ ସମୁଦ୍ର ପର୍ଯ୍ୟନ୍ତ ପ୍ରତିବନ୍ଧକ ଥିଲା । ଚୋଡ ଗଙ୍ଗଦେବଙ୍କ ଅଭିଷେକ କଳିଙ୍ଗନଗର ବା ପାରଳାଖେମୁଣ୍ଡି ତାଲୁକା ଅନ୍ତର୍ଗତ ମୁଖଲିଙ୍ଗମ ଠାରେ ହୋଇଥିଲା । ସେ ନିଜର ପରାକ୍ରମ ଓ ଦକ୍ଷତା ବଳରେ ନିଜର ରାଜ୍ୟର ସୀମାକୁ ଉତ୍ତରରେ ଗଙ୍ଗା ଓ ଦକ୍ଷିଣରେ ଗୋଦାବରୀ ନଦୀ ପର୍ଯ୍ୟନ୍ତ ବିସ୍ତୃତ କରି ଥିବାର ଐତିହାସିକ ପ୍ରମାଣ ତାମ୍ର ଶାସନ ଓ ଶିଳାଲେଖାମାନଙ୍କରୁ ଜଣାପଡ଼େ ।

(ମହତାବଙ୍କ ଓଡ଼ିଶା ଇତିହାସ; ୧ମ ଭାଗ-୩ୟ ସଂସ୍କରଣ, ପୃ ୧୭୮ ଜନଶ୍ରୁତି ଅନୁସାରେ ସୁବର୍ଣ୍ଣ କେଶରୀ ସୋମବଂଶର ଶେଷ ନରପତିଙ୍କୁ ଚୋଡ଼ଗଙ୍ଗ ପରାସ୍ତ କରିଥିଲେ । (ପୃ ୧୭୯)

ମାଦଳା ପାଞ୍ଜି ଅନୁସାରେ ବାସୁଦେବ ବାହିନୀପତି ନାମକ ଏକ ବ୍ୟକ୍ତି ଚୋଡ଼ଗଙ୍ଗ ଦେବଙ୍କୁ ଓଡ଼ିଶା ଆକ୍ରମଣାର୍ଥେ ଆମନ୍ତ୍ରଣ କରି ସୋମବଂଶର (ଶେଷ ନରପତି ସୁବର୍ଣ୍ଣ କେଶରୀ) ଧ୍ୱଂସ ସାଧନ କରିଥିଲେ । (ପୃ ୧୭୯)

ଗଙ୍ଗ ବଂଶର ଅନନ୍ତବର୍ମା ଚୋଡ଼ ଗଙ୍ଗଦେବ (୧୨ଶ ଶତାବ୍ଦୀ) କଳିଙ୍ଗ କଂଗୋଦ, ଉକ୍ରଳ ବା ଉଡ୍ର ଓ ତ୍ରିକଳିଙ୍ଗକୁ ଏକ ଶାସନାଧୀନ କଲେ । ସେହି ଗଙ୍ଗ ବଂଶ ରାଜତ୍ୱ ସମୟରେ ଓଡ଼ିଆଭାଷାର ସୃଷ୍ଟି । ପୁରୀର ଜଗନ୍ନାଥ ମନ୍ଦିର ଯୋଗେ ସେହି ସମୟରୁ ଓଡ଼ିଶାରେ ଏକ ସ୍ୱତନ୍ତ୍ର ସଂସ୍କାର ଗଠିତ ହେବା ଆରମ୍ଭ ହେଲା । ଗଙ୍ଗ ବଂଶର ରାଜଧାନୀ ଯେତେବେଳେ କଳିଙ୍ଗ ନଗରରୁ କଟକ ଉଠି ଆସିଲା ସେତେବେଳେ କଳିଙ୍ଗ ନାମ ପରିବର୍ତ୍ତେ ଉକ୍ରଳ ବା ଉଡ୍ର ଦେଶର ନାମ ପ୍ରଧାନ ହେଲା । ୯ମ ଓ ୧୦ମ ଶତାବ୍ଦୀର ତାମ୍ର ଶାସନ, ଶିଳାଲିପି ଓ ଅନ୍ୟ ଐତିହାସିକ ଉପାଦାନରେ ଓଡ୍ର ଦେଶ ବା ଉଡ୍ର ଦେଶ ନାମ ବ୍ୟବହୃତ ହୋଇଛି । ସେଥିରୁ କାଳକ୍ରମେ ଓଡ଼ିଶା ନାମର ଉତ୍ପତ୍ତି । (ପୃ୪)

ଚୋଡ଼ଗଙ୍ଗ ଦେବଙ୍କ ରାଜତ୍ୱ କାଳରେ ବହୁ ବିଶିଷ୍ଟ ଘଟଣାମାନଙ୍କର ଆଭାସ ମିଳେ । ମୁଖଲିଙ୍ଗମ୍, ଶ୍ରୀକାକୁଳମ୍ ଓ ସିଂହାଚଳମ୍‌ଠାରେ ବିଷ୍ଣୁ ମନ୍ଦିରମାନ ନିର୍ମାଣ, ବ୍ରାହ୍ମଣଶାସନମାନ ସ୍ଥାପନ, ଶିବ ଓ ବିଷ୍ଣୁ ମନ୍ଦିରମାନଙ୍କରେ ଅଖଣ୍ଡ ଦୀପ ପ୍ରଦାନ ଓ ଜମିଦାନ, କୂପ ଓ ତଡ଼ାଗ ଖନନ ପ୍ରଭୃତି ଲୋକହିତକର କାର୍ଯ୍ୟମାନ ବହୁଳ ଦୃଷ୍ଟିଗୋଚର ହୁଏ । (ପୃ ୧୮୯)

ଚୋଡ଼ଗଙ୍ଗ ଦେବଙ୍କ ରାଜତ୍ୱକାଳରେ ୧୮୮ ଗୋଟି ଅଭିଲେଖର ନିଦର୍ଶନ ମିଳେ । ଶିଳାଲେଖାମାନଙ୍କ ମଧ୍ୟରେ ମୁଖଲିଙ୍ଗମ୍, ଦ୍ରାକ୍ଷାରାମ, ନୀଳକଣ୍ଠେଶ୍ୱର, ସୀମାଚଳ ଓ ମହେନ୍ଦ୍ର ମନ୍ଦିରମାନଙ୍କର ଶିଳାଲେଖ ପ୍ରାଧାନ ଅଟେ । ଏତଦ୍‌ବ୍ୟତୀତ ତାମ୍ର ଶାସନମାନ ମଧ୍ୟ ଦେଖିବାକୁ ମିଳେ । (ପୃ ୧୯୦)

ଚୋଡ଼ଗଙ୍ଗ ଦେବଙ୍କ ସମୟର ରାଜାରାଣୀ, ସେମାନଙ୍କର ବନ୍ଧୁବାନ୍ଧବ ଓ ପାତ୍ର ମନ୍ତ୍ରୀଙ୍କର ନାମରୁ ଜଣାଯାଏ ଯେ ସେ ସମୟର ଚୋଳ ସଂସ୍କୃତିର ପ୍ରଭୂତ ପ୍ରଭାବ କଳିଙ୍ଗ ଉପରେ ପଡ଼ିଥିଲା । ପୂର୍ବ ଚାଲୁକ୍ୟମାନଙ୍କର ଭାଷା ପ୍ରଥମେ କାନାଡ଼ି ଥିଲା, ମାତ୍ର ପରେ ସେମାନେ ତେଲୁଗୁ ଭାଷା ଗ୍ରହଣ କରିନେଲେ । ଚୋଳମାନେ ବିଶୁଦ୍ଧ ତାମିଲ ଓ ସେମାନଙ୍କର ଭାଷା ମଧ୍ୟ ତାମିଲ ଥିଲା । କଳିଙ୍ଗ ଗଙ୍ଗବଂଶୀୟ ପ୍ରାଚୀନ ଅଭିଲେଖମାନଙ୍କର ସଂସ୍କୃତ ଭାଷା ଯେପରି ବ୍ୟବହୃତ, ତେଲୁଗୁ ଭାଷା ମଧ୍ୟ ସେହିପରି

ବ୍ୟବହୃତ । ସ୍ଥାନ ବିଶେଷରେ ତେଲୁଗୁ ନାମ ପୂର୍ବପରି ଅକ୍ଷୁଣ୍ଣ ରହିଗଲା । ଗଙ୍ଗବଂଶୀୟ ରାଜାମାନେ ଯଦି ଆଉ କେତେ ଶତାବ୍ଦୀ କଳିଙ୍ଗରେ ସୀମାବଦ୍ଧ ହୋଇ ରହିନଥାନ୍ତେ; କାରଣ ୧୧ଶ ଶତାବ୍ଦୀଠାରୁ ସଂସ୍କୃତ ଭାଷା ସମ୍ଭୂତ ପ୍ରାକୃତ ଭାଷା ଧୀରେ ଧୀରେ ନାନା ଅପଭ୍ରଂଶର ବାଟ ଦେଇ ନାନା ପ୍ରାଦେଶିକ ଭାଷାରେ ପରିଣତ ହେବାକୁ ଯାଉଥାଏ । ସେ ସମୟରେ ଗଙ୍ଗ ବଂଶ ଉତ୍ତ୍ରଦେଶ ବା ଉତ୍କଳ ଅଧିକାର କରି ଓଡ଼ିଶାକୁ ଚାଲି ଆସିବା ଫଳରେ ଉତ୍କଳର ସଂସ୍କୃତି ତେଲୁଗୁ ସଂସ୍କୃତି ଠାରୁ ବଳବତ୍ତର ପ୍ରମାଣିତ ହୋଇ ଗଙ୍ଗ ବଂଶୀୟ ରାଜାଙ୍କୁ ଓଡ଼ିଆ କରାଇ ଦେଲା । ଉଭୟ ସମ୍ମିଶ୍ରଣରେ ଏକ ନୂତନ ସଂସ୍କୃତିର ସୂତ୍ରପାତ ହେଲା । ଖାଲି ଭାଷା ହିସାବରେ ନୁହେଁ, କଳା ହିସାବରେ ମଧ୍ୟ ସେହିପରି । ଗଙ୍ଗ ବଂଶୀୟ ରାଜାମାନଙ୍କର ଉତ୍କଳ ବିଜୟ ପୂର୍ବରୁ କଳିଙ୍ଗରେ ଯେଉଁ ସବୁ ମନ୍ଦିର ନିର୍ମିତ ହୋଇଥିଲା, ତାହା ଚୋଳ କାରିଗରିରେ ଗଠିତ, ମାତ୍ର ଯେତେବେଳେ ଦ୍ରାବିଡ ସଭ୍ୟତାରୁ ନିଜକୁ ରକ୍ଷାକରି ନିଜକୁ ପୁଣି ବଳଶାଳୀ କରି ଉତ୍କଳୀୟ ସଭ୍ୟତା ସେ ସଭ୍ୟତା ଉପରେ ପ୍ରଭାବ ବିସ୍ତାର କଲା, ସେତେବେଳେ ଉଭୟଙ୍କ ସମ୍ମିଶ୍ରଣ ଓଡିଆ ବାଷାଲିପି ଯେପରି ସୃଷ୍ଟି ହେଲା, ସ୍ୱତନ୍ତ୍ର ଓଡ଼ିଆ ସ୍ଥାପତ୍ୟ ମଧ୍ୟ ସେହିପରି ବିକାଶ ଲାଭ କଲା । (ପୃ ୨୫୮)

ଜଗନ୍ନାଥ ବହୁ ପ୍ରାଚୀନ ହେଲେ ମଧ୍ୟ ଗଙ୍ଗବଂଶ ରାଜତ୍ୱ ସମୟରୁ ତାଙ୍କ ମାହାତ୍ମ୍ୟ ବେଶି ବିସ୍ତୃତ ଓ ପ୍ରତିଷ୍ଠିତ ହେଲା । ସମସ୍ତ ପ୍ରକାରର ଧର୍ମ ସମ୍ବନ୍ଧୀୟ ମତବାଦକୁ ସେ ପୋଷଣ କରି ନେଇ ନିଜେ ହିନ୍ଦୁ ଧର୍ମ ଜଗତରେ ଏକ ବିଶିଷ୍ଟ ଅଙ୍ଗ ହୋଇ ଛିଡା ହୋଇଛନ୍ତି, ଯାହାର ରହସ୍ୟ ଆଜି ସୁଦ୍ଧା ସମ୍ୟକ ରୂପେ ଭେଦ କରାଯାଇପାରୁନାହିଁ । ଗଙ୍ଗ ବଂଶୀୟ ରାଜାମାନେ ଯେ କୌଣସି ଧର୍ମଦୀକ୍ଷା ଗ୍ରହଣ କରନ୍ତୁ ନା କାହିଁକି ଜଗନ୍ନାଥଙ୍କ ଠାରେ ସେମାନେ ମୁଣ୍ଡ ନୁଆଁଇ ଆସି ଥିବାରୁ ଜଗନ୍ନାଥଙ୍କର ସ୍ଥିତି ଆଜି ସମ୍ଭବ ହୋଇଛି ଓ ଓଡ଼ିଶାର ଧର୍ମ ବିଶ୍ୱାସ ତାହାକୁ ହିଁ କେନ୍ଦ୍ର କରି ଗତି କରୁଛି । (ପୃ ୨୫୯)

ପ୍ରାୟ ଖ୍ରୀ.୧୬୬୭ରୁ ଖ୍ରୀ.୧୭୦୦ପର୍ଯ୍ୟନ୍ତ ସମଗ୍ର ଗଞ୍ଜାମ ଶ୍ରୀକାକୁଲମ୍ ମହମ୍ମଦୀୟ ରାଜ୍ୟର ଅଧୀନ ଥିଲା । କେବଳ ପାରଳା ରାଜ୍ୟ ମୁସଲମାନମାନଙ୍କ ପ୍ରତି ଅବମାନନା ପ୍ରଦର୍ଶନ କରି ସେମାନଙ୍କର ବଶ୍ୟତା ସ୍ୱୀକାର କରି ନଥିଲା । ସେହି ସମୟରେ ଜଗନ୍ନାଥ ନାରାୟଣ ଗଜପତି ଦେବ ନାମରେ ଜଣେ ପ୍ରବଳ ପ୍ରତାପାନ୍ୱିତ ନରପତି ପାରଳା ସିଂହାସନରେ ଅଧିରୂଢ଼ ଥିଲେ । ସେ ପୁରୀରେ କିଛି ଦିନ ରାଜା ହୋଇଥିବାର କଥିତ ଅଛି । ଇଂରେଜମାନେ ୧୮୦୩ ମସିହାରେ ଉତ୍ତର ଓଡ଼ିଶା ଅଧିକାର କରିଥିଲେ,

ମାତ୍ର ତାହାର ୩୮ ବର୍ଷ ଆଗରୁ ତା ୧୨.୮.୧୭୬୫ରିଖରେ ମୋଗଲ ସମ୍ରାଟ୍‌ଙ୍କର ଏକ ଫରମାନା ବଳରେ ଇଂରେଜମାନେ ଉତ୍ତର ସରକାର ସହିତ ଗଞ୍ଜାମ ଜିଲ୍ଲା ଇନାମସୂତ୍ରେ ପାଇ ଦଖଲ କରୁଥିଲେ ।

୧୭୬୭-୬୮ ମସିହାରେ ନାରାୟଣ ଦେବଙ୍କ ବିଦ୍ରୋହ ସମୟରୁ ଅଷ୍ଟାଦଶ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ ପାରଳାଖେମୁଣ୍ଡି ରାଜ୍ୟରେ ଇଂରେଜ ବିରୋଧୀ ଆନ୍ଦୋଳନ ପ୍ରାୟ ଲାଗିରହି ଥିଲା । ଗଜପତି ଦେବ ଶ୍ରୀକାକୁଳମର କଲେକ୍ଟର ସ୍କଟଙ୍କର ଆଦେଶ ଅବମାନନା କଲେ । ଇଂରେଜ ଶାସକ ରାଜାଙ୍କୁ ସେମାନଙ୍କର ରାଜସ୍ୱ ନ ଦେବା ସକାଶେ ପ୍ରଜାମାନଙ୍କୁ ପ୍ରବର୍ତ୍ତାଇ ଏକ ଆଦେଶନାମା ଜାରି କଲେ । କର୍ଣ୍ଣେଲ ମୁଆଟ ରାଜାଙ୍କୁ ଶ୍ରୀକାକୁଳମକୁ ନେଲେ । ତାଙ୍କଠାରୁ ପେସ୍କିସ ବୟାଅଶୀ ହଜାର ଦୁଇଶହ ତିନି ଟଙ୍କା ପାଇବାର ଥିଲା । ତାହା ଠିକ୍ ସମୟରେ ପଇଠ ନ ହେବାରୁ ମାସକୁ ଚଉଦ ହଜାର ତିନିଶତ ଛୟାନବେ ଟଙ୍କା ଛ'ଅଣା ତିନିପାହୁଲା ଦଣ୍ଡ ହିସାବରେ ଅସୁଲ ଦେବାକୁ ନିର୍ଦ୍ଦେଶ ଦିଆଗଲା । ରାଜାଙ୍କର ଭ୍ରାତୁଷ୍ପୁତ୍ର ଓ ପୁତ୍ର ପୁରୁଷୋତ୍ତମ ଦେବଙ୍କୁ ବନ୍ଦୀ କରି କଲେକ୍ଟର ନିଜେ ରାଜସ୍ୱ ଆଦାୟର ଦାୟିତ୍ୱ ବହନ କଲେ । ଏଥିରେ କିଛି ସୁଫଳ ହେଲା ନାହିଁ । ରାଜା-ପ୍ରଭୁଭକ୍ତ ପାଇକମାନେ ଇଂରେଜ ଅଧିକୃତ ଅଞ୍ଚଳରେ ପ୍ରବେଶ କଲେ । ଟାଉନ ପାଇକ କୁହା ଯାଉଥିବା ରାଜାଙ୍କର ସିପାହୀମାନେ ମଧ ସେମାନଙ୍କର ସହିତ ବିଦ୍ରୋହରେ ଯୋଗ ଦେଲେ । ରାଜାଙ୍କୁ ଏହି ବିଦ୍ରୋହର ମୂଳ ମନେ କରି ତାଙ୍କୁ ମସୁଲିପଟ୍ଟମକୁ ସ୍ଥାନାନ୍ତର କରାଗଲା, ତଥାପି ଏଥିରେ କିଛି ଫଳ ହେଲା ନାହିଁ । ବିଦ୍ରୋହୀ ସୈନ୍ୟମାନେ ରାଜାଙ୍କର ଅନୁଗତ ଉତ୍ତମ ସିଂହଙ୍କର ଅଧିନାୟକତ୍ୱରେ ବାରାଣସୀ(କାଶୀ ନଗର) ଓ ପାରଳାଖେମୁଣ୍ଡିରେ ଥିବା ଇଂରେଜ ସୈନ୍ୟମାନଙ୍କୁ ମଧ ଆକ୍ରମଣ କଲେ । ବିଦ୍ରୋହ ଟିକାଲି ପର୍ଯ୍ୟନ୍ତ ବ୍ୟାପିଗଲା । ସେଠାକାର ସୈନ୍ୟମାନେ ମଧ ଇଂରେଜମାନଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ । ଗଜପତି ଦେବଙ୍କର ଭାଇ ଜଗନ୍ନାଥ ଦେବ ୧୭୮୦ମସିହାରେ ତାଙ୍କର ନ୍ୟାୟୋଚିତ ଦାବୀରୁ ସେ ବଞ୍ଚିତ ହୋଇଛନ୍ତି ବୋଲି ଅଭିଯୋଗ କରି ଏହି ବିଦ୍ରୋହୀମାନଙ୍କର ନେତୃତ୍ୱ ନେଲେ । ଇଂରେଜମାନେ କର୍ଣ୍ଣେଲ ଫାଦରିଂହମ୍‌ଙ୍କୁ ଘୋଡ଼ାସୱାର ଓ ଗୋଳାବାରୁଦ ସହ ପଠାଇ ବିଦ୍ରୋହ ଦମନ ନିମିତ୍ତ ସୈନ୍ୟ ପ୍ରେରଣ କଲେ । କଲେକ୍ଟର ସ୍କଟ୍ ରାଜପୁତ୍ର ପୁରୁଷୋତ୍ତମ ଓ ରାଜଭ୍ରାତା ଜଗନ୍ନାଥଙ୍କ ମଧରେ ବିଭେଦ ସୃଷ୍ଟି କରି ବିଦ୍ରୋହ ଦମନ ନିମିତ୍ତ ଉଦ୍ୟମ କଲେ । ଜଗନ୍ନାଥଙ୍କର ସୈନ୍ୟମାନେ ଟିକାଲି ସୈନ୍ୟଛାଉଣି ଧ୍ୱସ୍ତବିଧ୍ୱସ୍ତ କଲେ । ହୀରମଣ୍ଡଳ

ଛାଉଣି ଆକ୍ରମଣ କରି ସେଠାରୁ ଲେଫ୍‌ଟନାଣ୍ଟ ୟଂସନ୍‌ଙ୍କୁ ବନ୍ଦୀ କରି ନେଲେ ଓ ତାଙ୍କୁ ସେରଙ୍ଗରେ ଅଟକ ରଖିଲେ । ଭାଇ ଦୁର୍ଗାରାଜ ଓ ପୁତୁରା ପୁରୁଷୋତ୍ତମ ଦେବଙ୍କୁ ମୁକ୍ତି ନ ଦେବା ପର୍ଯ୍ୟନ୍ତ ୟଂସନ ବନ୍ଦୀ ରହିବେ ବୋଲି ଜଗନ୍ନାଥ ଦେବ ଜଣାଇ ଦେବାରୁ ଶେଷରେ ସେମାନଙ୍କୁ ମୁକ୍ତି ଦିଆଗଲା । ମାତ୍ର କାରାମୁକ୍ତ ଦୁର୍ଗାରାଜଙ୍କୁ ବିଶୋଇମାନେ ଅଧିନାୟକ ସ୍ୱୀକାର କରି ପୁଣି ବିଦ୍ରୋହ କଲେ । କର୍ଣ୍ଣେଲ ଭିଗର୍‌ସ ଅଧିକ ସୈନ୍ୟ ଧରି ପହଞ୍ଚି ଲେଫ୍‌ଟନାଣ୍ଟ୍ ୟଂସନ୍‌ଙ୍କୁ ବନ୍ଦୀ କରିଥିବା ନେତା ଲକ୍ଷ୍ମୀନୃସିଂହ ପାତ୍ରକୁ ଧରିନେଲେ । ଜଗନ୍ନାଥ ଦେବ ୟଂସନ୍‌ଙ୍କ ଖଲାସ ନିମିତ୍ତ ମୁସଲିପଟ୍ଟନରେ ବନ୍ଦୀ ଥିବା ରାଜା ପରିବାରର ସମସ୍ତଙ୍କର ମୁକ୍ତି ଚାହିଁବାରୁ ସେମାନେ ସମସ୍ତେ ଖଲାସ ହେଲେ । ସେରଙ୍ଗରୁ ବନ୍ଦୀ ୟଂସନ ମଧ ଖଲାସ ହେଲେ । ସେରଙ୍ଗର ଜଳବାୟୁ ଓ ସଲପ ଗଛରୁ ପ୍ରସ୍ତୁତ ପାନୀୟ ୟଂସନଙ୍କୁ ଏପରି ମୁଗ୍ଧ କରିଥିଲା ଯେ, ସେ ବିଲାତକୁ ଚିଠିରେ ଏ ସ୍ଥାନର ପ୍ରଶଂସା ନ ଲେଖି ରହି ପାରିଲେ ନାହିଁ । ଫଳତଃ ମିସନାରୀମାନେ ଏ ଦେଶକୁ ଆସି ପ୍ରଥମେ ସେଇ ସେରଙ୍ଗରେ ଆସ୍ଥାନ ଜମାଇଲେ । ସ୍ୱଦେଶବତ୍ସଳ ଜଗନ୍ନାଥ ଦେବଙ୍କର ଦେଶ ପ୍ରୀତି ଫଳରେ ରାଜ୍ୟରେ ଶାନ୍ତି ପ୍ରତିଷ୍ଠିତ ହୋଇ ରହିଲା । 'ବ୍ରଜବିହାର' 'ସଂଗୀତ ନାରାୟଣ' 'ବୃନ୍ଦାବନ ବିହାର' ଗ୍ରନ୍ଥଲେଖକ ଏହି ଜଗନ୍ନାଥ ନାରାୟଣ ଦେବ ୨ୟ ଜଗନ୍ନାଥ ଦେବ ବୋଲି ପରିଚିତ । ଗୌରଚନ୍ଦ୍ର ତାଙ୍କର ଉତ୍ତରଧିକାରୀ ଥିଲେ ।

ଗୌରଚ୍ଚନ୍ଦ୍ର ୧ମ ୧୮୦୨ ମସିହା ଫେବୃଆରୀ ମାସରେ ପ୍ରାଣତ୍ୟାଗ କରିଥିଲେ । ତାଙ୍କ ପରେ ପୁରୁଷୋତ୍ତମ ଦେବ ରାଜ୍ୟ ପାଇଥିଲେ ଓ ଦୁର୍ଗାରାଜ ତାଙ୍କର ପ୍ରନିଧି ଭାବରେ ରାଜ୍ୟ ଶାସନ କରିଥିଲେ । ୧୮୦୩ ମସିହାରେ ଚିରସ୍ଥାୟୀ ବନ୍ଦୋବସ୍ତ କରାଗଲା । ଶାସନର ସୁପରିଚାଳନା ନିମିତ୍ତ ରାଜ୍ୟକୁ କୋର୍ଟ ଅଫ୍ ୱାର୍ଡସ୍ ଅଧୀନକୁ ନିଆଗଲା । ୧୮୦୫ ମସିହା ଅକ୍ଟୋବର ମାସରେ ପୁରୁଷୋତ୍ତମ ଦେବ ମୃତ୍ୟୁବରଣ କଲେ ଓ ନାବାଳକ ଜଗନ୍ନାଥ ଗଜପତି ନାରୟଣ ଦେବ ୩ୟ ରାଜା ହେଲେ । ଦୁର୍ଗାରାଜଙ୍କର ସୁଦକ୍ଷ ପରିଚାଳନାରେ ରାଜ୍ୟରେ ଅଖଣ୍ଡ ଶାନ୍ତି ବିରାଜମାନ ହେଲା । ୧୮୧୩ ମସିହାରେ ଦୁର୍ଗାରାଜ ପରିଚାଳନା ଦାୟିତ୍ୱରୁ ଅବ୍ୟାହିତ ନେଇ ତୀର୍ଥ ପର୍ଯ୍ୟଟନକୁ ଯିବା ସମୟରେ କୋର୍ଟ ଅଫ୍ ୱାର୍ଡସ ତରଫରୁ କଲେକ୍ଟରଙ୍କ ପାଖରେ ନଗଦ ଏକ ଲକ୍ଷ ଊଣେଇଶ ହଜାର ତିନି ସହ ବତିଶ ଟଙ୍କା ଜମା ରଖାଯାଇଥିଲା । ଶ୍ରୀକର ପଟ୍ଟନାୟକ ଓ ଗୋପୀନାଥ ପାତ୍ର ନାମକ ୨ ଜଣ କର୍ମଚାରୀ ଦୁର୍ଗାରାଜଙ୍କର ଶାସନ କାର୍ଯ୍ୟରେ ମୁଖ୍ୟ ସହାୟକ ଥିଲେ ।

୩ୟ ଜଗନ୍ନାଥ ନାରାୟଣ ଦେବ ୧୮୩୩ ମସିହା ପର୍ଯ୍ୟନ୍ତ ରାଜପଣ କରିଥିଲେ । ୧୮୧୪ ମସିହାରେ ପାରଳାରେ ବିଦ୍ରୋହ ଦେଖା ଦେଇଥିବାରୁ ବିଜୟନଗର ଓ ବ୍ରହ୍ମପୁରରୁ ସୈନ୍ୟ ଅଣାଯାଇ ଏହି ବିଦ୍ରୋହ ଦମନ କରା ଯାଇଥିଲା । ୧୮୩୦ ମସିହାରେ ଇଂରେଜ ସରକାର ପାରଳାଖେମୁଣ୍ଡି ରାଜ୍ୟ ପରିଚାଳନା ନିଜ ହାତକୁ ନେଇଗଲେ ଓ ଜନୈକ ମ୍ୟାନେଜରଙ୍କୁ ଶାସକଭାବରେ ନିଯୁକ୍ତ କରିଥିଲେ । ତାହାଙ୍କର କାର୍ଯ୍ୟ ସନ୍ତୋଷଜନକ ନ ହେବାରୁ ଗଞ୍ଜାମ କଲେକ୍ଟର ଖଲିକୋଟ ଆଠଗଡ଼ର କବିସୂର୍ଯ୍ୟ ବଳଦେବ ରଥଙ୍କୁ ରାଜ ଅଭିଭାବକ ପଦରେ ନିଯୁକ୍ତ କରିଥିଲେ । ୧୮୩୧ ମସିହାରୁ ୧୮୩୪ ମସିହା ପର୍ଯ୍ୟନ୍ତ କବିସୂର୍ଯ୍ୟ ବଳଦେବ ରଥ ପାରଳାରେ ଅବସ୍ଥାନ କରିଥିଲେ ଓ ଶେଷରେ ବିଦ୍ରୋହର କାରଣ ଅନୁସନ୍ଧାନ ନିମିତ୍ତ ନିଯୁକ୍ତ ସ୍ପେସାଲ କମିସନର ଜର୍ଜ ରସେଲଙ୍କ ରିପୋର୍ଟ ଅନୁସାରେ ସେ ଅଭିଭାବକ ପଦରୁ ବହିଷ୍କୃତ ହୋଇଥିବାର ଜଣାଯାଏ ।

ଜଗନ୍ନାଥ ନାରାୟଣ ଦେବଙ୍କ ଉତ୍ତାରେ ଋଷି-ପ୍ରତିମ ପ୍ରତାପରୁଦ୍ର ଗଜପତି ପାରଳା ସିଂହାସନରେ ଅଭିଷିକ୍ତ ହେଲେ । ତାଙ୍କର ଦୁଇପୁତ୍ର ଗୌରଚନ୍ଦ୍ର ଓ ପଦ୍ମନାଭଙ୍କ ମଧ୍ୟରୁ ଜ୍ୟେଷ୍ଠ ଗୌରଚନ୍ଦ୍ର ରାଜକାର୍ଯ୍ୟ ପରିଚାଳନା କଲେ, ମାତ୍ର ଦ୍ୱିତୀୟ ସେକେଣ୍ଡ୍ ପ୍ରିନସ୍ ନାମରେ ପରିଚିତ ଥାଇ ସମଗ୍ର ପ୍ରାକୃତିକ ଓଡ଼ିଶାରେ ନିଜର ଯଶ ପ୍ରତିଷ୍ଠା କରି ପାରିଥିଲେ । କଳା, ସାହିତ୍ୟ, ସଂଗୀତ, ରାଜନୀତି କ୍ଷେତ୍ରରେ ଏ ଦୁଇ ଭାଇଙ୍କର ଅବଦାନ ଅବିସ୍ମରଣୀୟ । ୧୫ ବର୍ଷ କାଳ ରାଜପଣ କରି ଗୌରଚନ୍ଦ୍ର ଇଂରେଜମାନଙ୍କଠାରୁ ସି.ଆଇ.ଇ ଉପାଧି ଲାଭ କରିଥିଲେ ଓ ୧୯୦୫ ମସିହାରେ ଅପରିଣତ ବୟସରେ ପ୍ରାଣତ୍ୟାଗ କଲେ ।

ଉତ୍କଳ ଇତିହାସର ବୀରତ୍ୱ ଅଧ୍ୟାୟରେ ପାରଳାର ନାମ ଅଗ୍ରଗଣ୍ୟ ପୂର୍ବକାଳରେ ବିଷୋୟୀ (ବିଶୋଇ) ପାତ୍ର, କରଣ, ପାଇକ(ଖଣ୍ଡାୟତ) ପାରଳା ସୈନିକ ଶ୍ରେଣୀଭୁକ୍ତ ଥିଲେ । ଦେଶରକ୍ଷା ପାଇଁ ବିଶୋଇମାନେ ରାଜାଙ୍କଠାରୁ ଯୁଦ୍ଧର ସ୍ୱତନ୍ତ୍ର ଅଧିକାର ପାଇଥିଲେ । ପ୍ରତିଦାନରେ ସେମାନେ ବିସ୍ତୀର୍ଣ୍ଣ ଜାଗିରି ଭୋଗ କରୁଥିଲେ । ସ୍ଥୂଳତଃ ବିଶୋଇମାନେ ପ୍ରତ୍ୟେକ ଜଣେ ସାମନ୍ତ ଜମିଦାର ଥିଲେ । ଯୁଦ୍ଧ ଓ ଶାନ୍ତି କାଳରେ ବ୍ୟବହୃତ ଦୁଇଟି ପାରଳାର ପତାକା ତ୍ରିକୋଣାକୃତି । ସେଥିରେ ଦୁଇଟି ଯବନ ମୁଣ୍ଡ ଅଙ୍କିତ ଥାଏ । କଥିତ ଅଛି । ପାରଳାର ଜଣେ ନରପତି ଯୁଦ୍ଧରେ ଦୁଇ ଜଣ ମୁସଲମାନଙ୍କୁ ନିହତ କରି ବିଜୟ ଚିହ୍ନ ସ୍ୱରୂପ ସେମାନଙ୍କର ମୁଣ୍ଡକୁ ପତାକାରେ ଚିହ୍ନିତ

କରିଥିଲେ । ପାରଳାର ରାଜଛତ୍ର ଲୋହିତ ବର୍ଣ୍ଣ ବିଶିଷ୍ଟ । ପ୍ରବାଦ ଅଛି, ଖ୍ରୀ. ୧୬୬୪ରୁ ୧୬୯୧ ମଧ୍ୟରେ ଖେମୁଣ୍ଡିରାଜା ନରହରି ନାରୟଣ ଦେବ ମୁସଲମାନ ବାହିନୀର ସେନାପତି ମଲ୍ଲିକାରଙ୍କୁ ପରାସ୍ତ କରିଥିଲେ । ଯୁଦ୍ଧରେ ବ୍ୟବହୃତ ଗଜପତିଙ୍କର ଏହି ଖଡ୍‌ଗ ମଲ୍ଲିକ ମର୍ଦ୍ଦନ ଖଡ୍‌ଗ ନାମରେ ପ୍ରସିଦ୍ଧ । ଏ ପାରଳାର ନରପତିମାନେ ଅଭିଷେକ ସମୟରେ ଏହି ଖଡ୍‌ଗ ବ୍ୟବହାର କରିଥାନ୍ତି । ଏହା ବାର୍ଷିକ ଆୟୁଧ ପୂଜାରେ ମଧ୍ୟ ବ୍ୟବହୃତ ହୋଇଥାଏ ।

ଉଚ୍ଚାଙ୍ଗ ସାହିତ୍ୟ ଚର୍ଚ୍ଚା ନିମିତ୍ତ ପାରଳା ଚିର ପ୍ରସିଦ୍ଧ । ପୂର୍ବେ ସଂସ୍କୃତ ସହିତ ବଙ୍ଗଳାର ମଧ୍ୟ ଚର୍ଚ୍ଚା ହେଉଥିଲା । ବୈଷ୍ଣବ କବି ଓ ଭକ୍ତ ଗୋପାଳକୃଷ୍ଣ ପଟ୍ଟନାୟକ, ରଘୁନାଥ ପରିଛା, ପଦ୍ମନାଭ ପରୀକ୍ଷା, ହରିବନ୍ଧୁ ବେବର୍ତ୍ତା ଆଦି ଅନେକ ସାହିତ୍ୟକାର ଏଠାରେ ବୈଷ୍ଣବ ସାହିତ୍ୟ ଓ ରାଧାକୃଷ୍ଣ ପ୍ରେମଲୀଳା ବିଷୟକ ସଂଗୀତ ଲୋକପ୍ରିୟ କରି ଏହାକୁ ନଦିଆ ଆଖ୍ୟାର ଅଧିକାରିଣୀ କରାଇ ଅଛନ୍ତି । ଶ୍ରୀ ଚୈତନ୍ୟ ଦେବଙ୍କର ଆଗମନର କୌଣସି ନିଦର୍ଶନ ଏଠାରେ ପରିଲକ୍ଷିତ ହୁଏ ନାହିଁ , ମାତ୍ର ଦକ୍ଷିଣ ଯାତ୍ରା ସମୟରେ ସେ ଶ୍ରୀକୂର୍ମ ଦେଇ ଯାଇଥିବାରୁ ପାରଳା ସୀମାରେ ତାଙ୍କର ଗତି ହୋଇଥିବା ଅନୁମେୟ । ସେତେବେଳେ ପାରଳାର ସୀମା ସମୁଦ୍ର ଉପକୂଳ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ପାରଳା ରାଜ୍ୟରେ ପ୍ରଚୁର ତାମ୍ର ଶାସନ ଓ ଶିଳାଲିପି ଅଛି । ବର୍ତ୍ତମାନ ମଧ୍ୟ ଓଡ଼ିଶାର ଏକ ମାତ୍ର ଶିଳାଲିପି ବିଶେଷଜ୍ଞ ଓ ଗବେଷକ ପଣ୍ଡିତ ସତ୍ୟନାରାୟଣ ରାଜଗୁରୁ ଡ଼ି.ଲିଟ. ପାରଳାଖେମୁଣ୍ଡି ସହରର ବାସିନ୍ଦା । ବର୍ତ୍ତମାନ ଆନ୍ଧ୍ରପ୍ରଦେଶ ଅନ୍ତର୍ଗତ ମୁଖଲିଙ୍ଗରେ ଅଧିକାଂଶ ତାମ୍ର ଶାସନ ଓ ଶିଳାଲିପିମାନ ଅଛି । ସେଠାରେ ମଧ୍ୟ ପାଲି ସଂସ୍କୃତି ଓ ଓଡ଼ିଆ ଭାଷାର ଶିଳାଲିପି ଓ ଖୋଦିତ ବୈଷ୍ଣବ ମୂର୍ତ୍ତିମାନ ଅଛି । ଶୈବ, ବୌଦ୍ଧ ଓ ବୈଷ୍ଣବ ଏହି ତିନି ଧର୍ମାବଲମ୍ବୀମାନେ ଏଠାରେ କାଳକ୍ରମେ ପ୍ରଭାବ ବିସ୍ତାର କରିଥିବାର ପ୍ରତୀୟମାନ ହୁଏ ।

କଳା ସାହିତ୍ୟ ଓ ସଂଗୀତ ଚର୍ଚ୍ଚାରେ ପାରଳାର ଖ୍ୟାତି ସହିତ ପୂର୍ବର ଭଜନ,. କୀର୍ତ୍ତନ ଓ ପୁରାତନ ଛାନ୍ଦର ଲୋକପ୍ରିୟତା କ୍ରମେ କ୍ରମେ ମାନ୍ଦ୍ରାଜ୍ ଶାସାନାଧୀନ ଥିବା ସମୟରେ କର୍ଣ୍ଣାଟକ ସଂଗୀତ ଦ୍ୱାରା କେତେକାଂଶରେ ବ୍ୟାହାତ ହୋଇଥିଲେ ମଧ୍ୟ ଭକ୍ତ କବି ଗୋପାଳକୃଷ୍ଣ ଓ ଅନ୍ୟମାନଙ୍କର ଲଳିତ ପଦାବଳୀ ଓ ଅନ୍ଧ ଗାୟକ ଆପନ୍ନା ପାଣିଗ୍ରାହୀଙ୍କର ମନୋହର ସୁଲଳିତ କଣ୍ଠ ଓ ଗାୟନଶୈଳୀ ଓଡ଼ିଶାର ସଂସ୍କୃତି ପ୍ରତି ଏହି ସହରର ଏକ ମହନୀୟ ଅବଦାନ ।

(ମୂଳ-ପଣ୍ଡିତ କୃପାସିନ୍ଧୁ ଇତିହାସ, ଚିନ୍ତାମଣି ମହାନ୍ତିଙ୍କ ପୁଣ୍ୟପୀଠ- ୧ ୯ ୨ ୦, ପାରଳା ସମସ୍ଥାନ ପ୍ରଦତ୍ତ ସ୍ମାରକପତ୍ର ଓ History of Freedom Movement in Orissa.)

**ପାରଳାର ରାଜବଂଶାବଳୀ** (ଆତ୍ରେୟ ଗୋତ୍ର)

ଜଗନ୍ନାଥ ନାରାୟଣ ୨ୟ

|

ଗୌରଚନ୍ଦ୍ର ପ୍ରଥମ

|

ପୁରୁଷୋତ୍ତମ

|

ଜଗନ୍ନାଥ ନାରାୟଣ ୩ୟ

|

ପ୍ରତାପରୁଦ୍ର

|

ଗୌରଚନ୍ଦ୍ର ୨ୟ

|

ଶ୍ରୀ କୃଷ୍ଣଚନ୍ଦ୍ର ନାରାୟଣ

|

ଗୋପୀନାଥ(ରାମଚନ୍ଦ୍ର ଦେବଙ୍କ ପୁତ୍ର)



## ପାରଳା ଇତିହାସରେ ସ୍ମରଣୀୟ ବର୍ଷ କେତୋଟି:

ପାରଳାଖେମୁଣ୍ଡି ସମସ୍ଥାନ ପକ୍ଷରୁ ଜମିଦାରୀ ବିଲୋପ ଆଇନ୍ ୧୯୫୧ ସଂକ୍ରାନ୍ତରେ ପ୍ରଦତ୍ତ ସ୍ମାରକ ଲିପିରୁ ସଂଗୃହୀତ ।

ଖ୍ରୀ. ୧୫୬୦-ଉତ୍ତର ଦିଗରୁ ମୁସଲମାନମାନଙ୍କର ଆକ୍ରମଣ ଓ ଚିଲିକାଠାରେ ଏହାର ପ୍ରତିହତ ।

୧୫୭୧-ବାହାମନି ସାମ୍ରାଜ୍ୟର ଇବ୍ରାହିମ ଦକ୍ଷିଣରୁ ଉତ୍ତର ଦିଗରେ ଶ୍ରୀକାକୁଳମ୍ ପର୍ଯ୍ୟନ୍ତ ଅଗ୍ରସର ।

୧୯୫୨-ଆକବରଙ୍କର ସେନାପତି ମାନସିଂହ ଓଡିଶା, କଳିଙ୍ଗ (ଶ୍ରୀକାକୁଳମ୍) ଓ ରାଜମହେନ୍ଦ୍ରୀ ଦଖଲ କରି ବିଦ୍ରୋହ ଦମନ କରିବା କୁହା ଯାଉଥିଲେ ମଧ୍ୟ ଚିଲିକାଠାରୁ ଦକ୍ଷିଣକୁ ସେ ଅଗ୍ରସର ହୋଇ ପାରି ନ ଥିଲେ ।

୧୬୬୪-୯୧-ନରହରି ନାରାୟଣ ଦେବ ମୁସଲମାନ ବାହିନୀର ଅଧକ୍ଷ ମଲ୍ଲିକାରଙ୍କୁ ପରାସ୍ତ କରି ମଲ୍ଲିକ ମର୍ଦ୍ଦନ ଖଡ୍ଗ ଧାରଣ କଲେ ।

୧୭୪୨-ଓଡ଼ିଶା ରାଜ ପରିବାରର ଜଣେ ସଦସ୍ୟ ଗଜପତି ଖେମୁଣ୍ଡିରେ ବାସ କଲେ । ଏହି ଖେମୁଣ୍ଡି ପାରଖେମୁଣ୍ଡି, ବଡଖେମୁଣ୍ଡି ଓ ସାନ ଖେମୁଣ୍ଡି ସେ ସମୟରେ ପ୍ରତାପଗିରି ଓ ବିଜୟନଗର ନାମରେ ବର୍ଣ୍ଣିତ ।

୧୭୫୧-ସମୁଦ୍ର ଉପକୂଳବର୍ତ୍ତୀ ଶ୍ରୀକାକୁଳମ୍ ସରକାରକୁ ପାଶ୍ଚାତ୍ୟ ବଣିକମାନଙ୍କର ଆଗମନ ।

୧୭୫୩-ପାରଳାଖେମୁଣ୍ଡି ରାଜା ନାରାୟଣ ଦେବ ଗଜପତି ଇଚ୍ଛାପୁର ସରକାରର ୧୮ ଗୋଟି କ୍ଷୁଦ୍ର ଜମିଦାରୀଙ୍କୁ ନିଜ ଆୟତ୍ତାଧୀନ କଲେ । ଫରାସୀମାନେ ଚାଲି ଯିବାରେ ନାମକୁ ମାତ୍ର ଫୌଜଦାର ନିଯୁକ୍ତି ରହିଲା ।

୧୭୫୭-ଫରାସୀ ଶାସକ ବୁସି ସୀତାରାମ ରାଜୁଙ୍କ ସହିତ ଉତ୍ତର ଦିଗରେ ସିରାଜଉଦ୍ଦୌଲାଙ୍କ ବଙ୍ଗ ଦେଶକୁ ଯାତ୍ରା କଲେ ।

୧୭୫୮-ବୁସି ଉତ୍ତର ଦିଗରୁ ଫେରି ବିଶାଖାପାଟଣାରେ ସୈନ୍ୟ ବାହିନୀ ରଖି ଗଞ୍ଜାମ ଓ ଘୁମୁସର ଯାତ୍ରା କରି ସେଠାରୁ ଆଉରଙ୍ଗାବାଦ ଫେରିଗଲେ । ଗଜପତିଙ୍କର ଅଧୀନସ୍ଥ କ୍ଷୁଦ୍ର ସାମନ୍ତ ନରପତିମାନେ ଫରାସୀମାନଙ୍କର ବଶ୍ୟତା ସ୍ୱୀକାର କରିନଥିଲେ ।

୧୭୬୦-ଜଗନ୍ନାଥ ନାରୟଣ ଦେବ ଖୋର୍ଦ୍ଧା ଆକ୍ରମଣ କଲେ ।

୧୭୬୧-ଅଷ୍ଟାଦଶ ଶତାବ୍ଦୀରେ କଳିଙ୍ଗ ନାମରେ ପରିଚିତ ଶ୍ରୀକାକୁଳମ୍ ସରକାରରେ ଜଣେ ପ୍ରତାପୀ ରାଜା ଥିଲେ ଓ ସେ ରାଜ୍ୟ ଅଗମ୍ୟ ଥିବାରୁ କାହାକୁ କର ଦେଉ ନ ଥିଲେ ।

୧୭୬୭-କଟ୍‌ସଫୋର୍ଡ ଗଞ୍ଜାମ ଶାସକ ହୋଇ ରାଜ୍ୟରେ ଅରାଜକତା ଲକ୍ଷ୍ୟ କଲେ । ପାରଳାଖେମୁଣ୍ଡିର ନାରାୟଣ ଦେଓ ସର୍ବ ପ୍ରଧାନ ଓ ଶ୍ରେଷ୍ଠ ଜମିଦାରଭାବେ ଦେଶ ଦଖଲ କରୁଥିଲେ ଓ ଇଂରେଜମାନଙ୍କର ବଶତା ସ୍ୱୀକାର କରୁନଥିଲେ ।

୧୭୬୮-କମ୍ପାନୀ ହାତକୁ ଉତ୍ତର ସରକାର ଆସିବା ବେଳକୁ ଜମିଦାରମାନେ କାହାକୁ କର ନ ଦେଇ ସ୍ୱାଧୀନ ରହୁଥିଲେ । ପ୍ରକାଶମ ରିପୋର୍ଟରୁ ଜଣାଯାଏ, ୧୭୬୮ ଖ୍ରୀଷ୍ଟାବ୍ଦରେ ବର୍ଣ୍ଣିତ ଶ୍ରୀକାକୁଳମ୍‌ର ଜମିଦାର ପାରଳାଖେମୁଣ୍ଡି ରାଜା ହୋଇଥିବେ । ଜମିଦାର ଶକ୍ତିଶାଳୀ ଥିବାରୁ ତାଙ୍କୁ ଆୟତ୍ତ ନିମିତ୍ତ ଇଷ୍ଟ୍ ଇଣ୍ଡିଆ କମ୍ପାନୀ ବିଜୟନଗର ରାଜାଙ୍କର ସାମରିକ ସାହାଯ୍ୟ ଲୋଡ଼ି ଥିଲେ ।

୧୭୮୮-ଖେମୁଣ୍ଡି ଆଂଶିକଭାବେ ଇଂରେଜମାନଙ୍କ ଦଖଲକୁ ଆସେ । ରାଜା ଜଗନ୍ନାଥ ଦେବ କୋର୍ଟ ଅଫ୍ ୱାର୍ଡସ୍ ଶାସନ ପ୍ରାର୍ଥନା କରିଥାନ୍ତି ।

୧୭୯୯-ଗଜପତି ଦେବଙ୍କର ତଥାକଥିତ ବିଦ୍ରୋହ । ସେ ପର୍ଯ୍ୟନ୍ତ କୌଣସି ବିଦେଶୀ ଶକ୍ତି ଖେମୁଣ୍ଡି ମଧ୍ୟରେ ପ୍ରବେଶ କରି ପାରିନଥିଲେ, ମାତ୍ର ଅନ୍ୟାନ୍ୟ ଜମିଦାର ତାଙ୍କ ବଶତା ସ୍ୱୀକାର କରୁଥିଲେ ।

୧୮୦୫-ଗଜପତି ଦେଓଙ୍କର ମୃତ୍ୟୁ । ୧୨ମାସ ବୟସ ପୁତ୍ର ଜଗନ୍ନାଥ ଗଜପତି ନାରାୟଣ ଦେବଙ୍କର ଶାସନ କୋର୍ଟ ଅଫ୍ ୱାର୍ଡସ୍ ଗ୍ରହଣ କଲେ ।

୧୮୩୪-ପାରଳାଖେମୁଣ୍ଡି ରାଜାମନେ ସ୍ୱାଧୀନଭାବେ ରାଜ୍ୟ ଶାସନ କରୁଥିଲେ ।

ଅଷ୍ଟାଦଶ ଶତାବ୍ଦୀର ଶେଷାଂଶ ଓ ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ପାରଳାଖେମୁଣ୍ଡି ରାଜ୍ୟରେ ଇଂରେଜ ବିରୋଧୀ ଆନ୍ଦୋଳନ ଗୌରବାନ୍ୱିତ ସ୍ୱାଧୀନତା ସଂଗ୍ରାମର ଏକ ବିଶିଷ୍ଟ ଅଧ୍ୟାୟ ରୂପେ ପରିଗଣିତ ହୋଇଥାଏ । ଏହାର ବୈଶିଷ୍ଟ୍ୟ କୌଣସି ପ୍ରକାରେ ନ୍ୟୂନ କରାଯାଇ ନ ପାରେ । ସାର୍ବଭୌମ ସ୍ୱାଧୀନତାର ଅଙ୍ଗ ସୈନ୍ୟ

ବାହିନୀ ବୋଲି ଧରାଯାଏ । ପାରଳାର ନରପତିମାନେ ଖ୍ରୀ.୧୮୩୪ ପର୍ଯ୍ୟନ୍ତ ନିଜର ସୈନ୍ୟ ବାହିନୀ ରଖିଥିଲେ ମଧ୍ୟ ଇଂରେଜ ସରକାର ସେମାନଙ୍କୁ ସିପାହି ପରିବର୍ତ୍ତେ ଟାଉନ ପିଅନ ଆଖ୍ୟା ଦେଇଥିଲେ, ମାତ୍ର ସେମାନଙ୍କର ସାମରିକ ବୃତ୍ତି ସ୍ୱୀକୃତ ହୋଇଥିଲା । ଖ୍ରୀ.୧୮୩୪ ଆନ୍ଦୋଳନରେ କେବଳ ୧୩ଜଣ ଫାଶୀ ପାଇଥିଲେ, ୨୫ଜଣଙ୍କୁ ଦ୍ୱୀପାନ୍ତର ଦଣ୍ଡ ଦିଆ ଯାଇଥିଲା ଓ ୧୦୩ ଜଣଙ୍କୁ ରାଜବନ୍ଦୀ ରୂପେ ଭେଲୋର ଜେଲକୁ ପଠା ଯାଇଥିଲା । ନିମ୍ନରେ କେତେକ ଅମର ଶହୀଦଙ୍କର ନାମ ଉଲ୍ଲେଖ କରାଗଲା ।

(ଓଡ଼ିଶା ସ୍ୱାଧୀନତା ଆନ୍ଦୋଳନର ଇତିହାସ,
ପ୍ରଥମ ଖଣ୍ଡ-ପଞ୍ଚମ ଅଧ୍ୟାୟରୁ ସଂଗୃହୀତ ।)

**ଖ୍ରୀ.୧୮୩୪ ସ୍ୱାଧୀନତା ଆନ୍ଦୋଳନର ଅମର ଶହୀଦ୍:**

**ଫାଶୀଦଣ୍ଡ**

| | | |
|---|---|---|
| ୧.କମନାଲ ରାୟଗଡା | ବିଶୋଇ | -୧୮୩୪,ଫେବୃଆରି ୨୨ ତାରିଖ |
| ୨.ଗୋପିନାଥ ପଟ୍ଟନାୟକ, | କରଣଗଣ୍ଡାହାତୀକୋଟା- | -୧୮୩୪, ଫେବୃଆରି ୨୨ ତାରିଖ |
| ୩.ଜଗତୁ ଦଣ୍ଡାସି | ଗାରାବନ୍ଧ | -୧୮୩୪, ଫେବୃଆରି ୨୨ ତାରିଖ |
| ୪.ରାମନାଥ ବିଶୋଇ | ଲାବଣ୍ୟକୋଟା | -୧୮୩୪, ଫେବୃଆରି ୨୪ ତାରିଖ |
| ୫.ଶଉରା ମଙ୍ଗଲୁ | ଭୀମାଭରମ | -୧୮୩୪, ଅପ୍ରେଲ ୧୫ ତାରିଖ |

**ଦ୍ୱୀପାନ୍ତର**

| | | |
|---|---|---|
| ୬.ସଉରା ଶୁକୁଡୁ | ଭୀମାଭରମ | -୧୮୩୪ ଅପ୍ରେଲ ୨୧ ତାରିଖ |
| ୭.ଭିକାରୀ କାରଜି | ଗଣ୍ଡାହାତି | -୧୮୩୪ ଅପ୍ରେଲ ୨୧ ତାରିଖ |
| ୮.ଯକ ଦାସ ପିଅନ | ଗଣ୍ଡାହାତି | -୧୮୩୪ ଅପ୍ରେଲ ୨୧ ତାରିଖ |
| ୯.ବହୁପାଣି | ଗଣ୍ଡାହାତି | -୧୮୩୪ ଅପ୍ରେଲ ୨୧ ତାରିଖ |
| ୧୦.ବୁଦ୍ଧି ଗଉଡ଼ | ଗଣ୍ଡାହାତି | -୧୮୩୪ ଅପ୍ରେଲ ୨୧ ତାରିଖ |
| ୧୧.ପାଞ୍ଜି ନାଇକ | ଗଣ୍ଡାହାତି | -୧୮୩୪ ଅପ୍ରେଲ ୨୧ ତାରିଖ |
| ୧୨.ଖମୁ | ଜେରିଙ୍ଗି | -୧୮୩୪ ଅପ୍ରେଲ ୨୧ ତାରିଖ |
| ୧୩.ହନୁ ପ୍ରଧାନୀ | ଜେରିଙ୍ଗି | -୧୮୩୪ ଅପ୍ରେଲ ୨୧ ତାରିଖ |
| ୧୪.ଭଗବାନ ବଡଦଲେଇ | ଜେରିଙ୍ଗି | -୧୮୩୪ ଅପ୍ରେଲ ୨୧ ତାରିଖ |

| | | |
|---|---|---|
| ୧୫.ଦୁର୍ବାବୁ ପିଅନ | ଜେରିଙ୍ଗି | -୧୮୩୪ ଅପ୍ରେଲ ୨୧ ତାରିଖ |
| ୧୬.ରାମକୃଷ୍ଣ ବଡ଼କମାରୁ | କୋଇପୁରମ | -୧୮୩୪ ଅପ୍ରେଲ ୨୫ ତାରିଖ |
| ୧୭.ରାମକୃଷ୍ଣ ବଡଦଲେଇ | କୋଇପୁରମ | -୧୮୩୪ ଅପ୍ରେଲ ୨୫ ତାରିଖ |
| ୧୮.ପୁରୁଷୋତ୍ତମ ପିଅନ | କୋଇପୁରମ | -୧୮୩୪ ଅପ୍ରେଲ ୨୫ ତାରିଖ |
| ୧୯.ରଘୁ ପିଅନ | କୋଇପୁରମ | -୧୮୩୪ ଅପ୍ରେଲ ୨୫ ତାରିଖ |
| ୨୦.ଶଉରା ଗୁରନଲ | ଗୁମ୍ମା | -୧୮୩୪ ଅପ୍ରେଲ ୨୫ ତାରିଖ |
| ୨୧.ଶଉରା ଜଗଡ଼ୁ | ଗୁମ୍ମା | -୧୮୩୪ ଅପ୍ରେଲ ୨୫ ତାରିଖ |
| ୨୨.ମାଦଲା ବୁରୁଜା | ଜେରିଙ୍ଗି-ମୃତ୍ୟୁ ଦଣ୍ଡରେ ଦ୍ୱୀପାନ୍ତରରେ ପରିଣତ- | -୧୮୩୪ ଅପ୍ରେଲ ୨୯ ତାରିଖ । |
| ୨୩.ସେବାରାମ ବିଶୋଇ | ବିଜୟଗଡ଼ | -୧୮୩୪ ଅପ୍ରେଲ ୨୯ ତାରିଖ । |
| ୨୪.ଦାଶରଥି ଜେନା | ପାରଳାଖେମୁଣ୍ଡି | -ଖ୍ରୀ୧୮୨୪ ମେଳି ଫଳରେ ଫାଶୀ । |
| ୨୫.ବୋବିଲି ନାଇଡୁ, ଟାଉନ ପିଅନ | ପାରଳାଖେମୁଣ୍ଡି- | -ଖ୍ରୀ୧୮୨୪ ମେଳି ଫଳରେ ଫାଶୀ । |
| ୨୬.ନୀଳକଣ୍ଠ ନାଇଡୁ, ଟାଉନ ପିଅନ | ପାରଳାଖେମୁଣ୍ଡି- | -ଖ୍ରୀ୧୮୨୪ ମେଳି ଫଳରେ ଫାଶୀ । |
| ୨୭.ଉତ୍ତମସିଂହ ରାମରାଜ ମୋକସାଦର | ପାରଳାଖେମୁଣ୍ଡି | -ଖ୍ରୀ୧୮୨୪ ମେଳି ଫଳରେ ଫାଶୀ । |

ଏତଦ୍‌ବ୍ୟତୀତ ଭାରତର ସ୍ୱାଧୀନତା ସଂଗ୍ରାମ (ସିପାହି ବିଦ୍ରୋହ)ର ପ୍ରାକ୍ କାଳରେ ୧୮୫୬-୫୭ ମସିହାରେ ପାରଳାଖେମୁଣ୍ଡିର ଶବରମାନେ ବିଦ୍ରୋହ କରିବା ଫଳରେ କ୍ୟାପଟେନ୍ ଉଇଲସନ୍ ଏହି ବିଦ୍ରୋହ ଦମନ ନିମିତ୍ତ ପ୍ରେରିତ ହୋଇ ବିଦ୍ରୋହୀ ନେତା ରାଧାକୃଷ୍ଣ ଦଣ୍ଡସେନାଙ୍କୁ ବନ୍ଦୀ କରିଥିଲେ ଓ ତାଙ୍କୁ ୧୮୫୭ ମସିହାରେ ଫାଶୀ ଦିଆ ଯାଇଥିଲା ।



# କୀର୍ତ୍ତିକିରୀଟ ପାରଳାଖେମୁଣ୍ଡି ମହାରାଜା

ବିଂଶ ଶତାବ୍ଦୀର ପ୍ରାରମ୍ଭ, ଓଡ଼ିଶାରେ ନୂଆ ଜୀବନ ଖେଳାଇ ଦେଇଥିଲା । ୧୯୦୩ ମସିହାରେ ମାନ୍ଦ୍ରାଜରେ ଲାଲମୋହନ ଘୋଷଙ୍କ ସଭାପତିତ୍ୱରେ କଂଗ୍ରେସର ଯେଉଁ ବାର୍ଷିକ ଅଧିବେଶନ ହେଲା, ସେଥିରେ ଗଞ୍ଜାମ ଜିଲ୍ଲା ଓ ବିଶାଖାପାଟଣାକୁ ମାନ୍ଦ୍ରାଜରୁ ଆଣି ଓଡ଼ିଶାରେ ମିଶଇବା କଳ୍ପନା ବିରୁଦ୍ଧରେ ଗୋଟିଏ ପ୍ରସ୍ତାବ ଗୃହୀତ ହୋଇଥିଲା । ଓଡ଼ିଶାର ବରପୁତ୍ର ମଧୁସୂଦନ ଦାସ କଂଗ୍ରେସ ସହିତ ଓଡିଶାର ସମ୍ପର୍କ ଛିଣ୍ଡାଇ ଦେଇ ଆସି ଓଡ଼ିଆ ଜାତିର ପୁରାତନ ଗୌରବ ଉଦ୍ଧାର ଲାଗି ଉତ୍କଳ ସମ୍ମିଳନୀ ଗଢ଼ିଲେ । ୧୯୩୬ ଖ୍ରୀଷ୍ଟାବ୍ଦ ଅପ୍ରେଲ ମାସରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଗଠିତ ହେବା ଫଳରେ ଶତାଧିକ ବର୍ଷ ପରେ ଓଡ଼ିଆ ଭାଷୀ ବହୁ ଅଞ୍ଚଳ ଏକ ଶାସନାଧୀନ ହେଲା । ଉତ୍କଳ ସମ୍ମିଳନୀର ସୃଷ୍ଟିଠାରୁ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ହେବା ପର୍ଯ୍ୟନ୍ତ ଓଡ଼ିଆ ଆନ୍ଦୋଳନର ଜଣେ ଅଗ୍ରଣୀ ନେତା ଥିଲେ ପାରଳାଖେମୁଣ୍ଡିର ମହାରାଜା କ୍ୟାପ୍ଟେନ୍ ଡକ୍ଟର ସାର୍ ଶ୍ରୀ ଶ୍ରୀ ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ । ପାରଳାଖେମୁଣ୍ଡି ରାଜବଂଶର ବିରୁଦାବଳୀରେ ସେ "ବୀରଶ୍ରୀ ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟ କଳବଗର୍ଗେଶ୍ୱର ବୀରାଧିବୀରବର ଶ୍ରୀ ଶ୍ରୀ ଶ୍ରୀ ଗଜପତି ଶ୍ରୀ ଶ୍ରୀ ଶ୍ରୀ କ୍ଷେତ୍ରପତି" ଓ "ମେହେରବାନ୍-ଇ-ଦୋସ୍ତାନ" (ନିଜାମଙ୍କର ପରମ ମିତ୍ର) ନାମରେ ବର୍ଣ୍ଣିତ ।

ତତ୍‌କାଳୀନ ଗଞ୍ଜାମ ଜିଲ୍ଲାର ଏହି ବୃହତ୍ତମ ଓ ସର୍ବଶ୍ରେଷ୍ଠ ଜମିଦାରିର ଆୟତନ ୬୩୯ ବର୍ଗ ମାଇଲ । ପ୍ରଦେଶ ଗଠନ ଫଳରେ ସମୁଦାୟ ଜମିଦାରି ଓଡିଶାକୁ ନଆସି ଦ୍ୱିଖଣ୍ଡିତ ହେଲା । ଓଡିଶାରେ ରହିଲା ୨୦୧ ବର୍ଗ ମାଇଲ ଅର୍ଥାତ୍ ପ୍ରାୟ ଏକ ତୃତୀୟାଂଶ । ଏଥିରେ ଥିଲା ୧୮୮ ଗୋଟି ରୟତି ଗ୍ରାମ ଓ ୬୦ ଗୋଟି ଇନାମ ଗ୍ରାମ । ଜମିଦାରିର ବାର୍ଷିକ ଆୟ ପ୍ରାୟ ୧୦ ଲକ୍ଷ ଟଙ୍କା ଓ ବାର୍ଷିକ ପେସ୍‌କିସର୍ ପରିମାଣ ଟ ୩୮,୩୭ ଆଠଅଣା ପାହି ଥିଲା । ପୁଣ୍ୟତୋୟା ମହେନ୍ଦ୍ରତନୟା ଓ ବଂଶଧାରା ନଦୀଦ୍ୱୟ ଏହି ଜମିଦାରି ମଧ୍ୟରେ ପ୍ରବାହିତ ହୋଇ ଜଳସେଚନର ଉତ୍କୃଷ୍ଟ ସୁଯୋଗ ଯୋଗାଉଥିଲା । ପାରଳାଖେମୁଣ୍ଡି ସହର ନିକଟସ୍ଥ ରାମ ସାଗର, ସୀତା ସାଗର, ଗଜପତି ସାଗର, ଗୋପିଲି ନିକଟସ୍ଥ କୃଷ୍ଣ ସାଗର, ରାଧା ସାଗର ଓ ଲକ୍ଷ୍ମଣ ସାଗର; ଉପଲଡ଼ା ନିକଟସ୍ଥ ବୃନ୍ଦାବନ ସାଗର ଓ ପାରଳାଖେମୁଣ୍ଡିର ଉତ୍ତର-ପଶ୍ଚିମକୁ ଅଧୁନା ଲୁପ୍ତପ୍ରାୟ ଚୈତନ୍ୟ ସାଗର, ମହାରାଜା

ସାହେବଙ୍କ ପିତୃ ପିତାମହଙ୍କ ଅମଳରେ ଖନନ କରାଯାଇଥିଲା । ମହାରାଜା ରାଜ୍ୟଭାର ଗ୍ରହଣ କଲା ପରେ ଅଧିକ ଦୁଇଗୋଟି ଅଧିକା ସାଗର, ଯଥା-କାଶୀନଗରସ୍ଥିତ ନଳିନୀ କୃଷ୍ଣ ସାଗର ଓ (ବର୍ତ୍ତମାନ ଆନ୍ଧ୍ରପ୍ରଦେଶର ଶ୍ରୀକାକୁଳମ୍ ଜିଲ୍ଲା ଅନ୍ତର୍ଗତ) ବାଗା ସାଗର ପ୍ରତ୍ୟେକ ଏକ ଲକ୍ଷ ଟଙ୍କା ବ୍ୟୟରେ ନିର୍ମାଣ କରିଥିଲେ । ଉକ୍ତ ଦୁଇଗୋଟି ସାଗର ପାରଳା ଜମିଦାରିର ତତ୍‌କାଳୀନ କୃତୀ ଇଞ୍ଜିନିୟର ଶ୍ରୀ ମୁଲାର ସାହେବଙ୍କ ତତ୍ତ୍ୱାବଧାନରେ ନିର୍ମିତ ହୋଇଥିଲା । ଉକ୍ତ ସାଗର ପ୍ରାୟ ୩ହଜାର ଏକର ଭୂମିକୁ ଜଳ ଯୋଗାଇ ପାରୁଥିଲା । ଏହାର ପଙ୍କୋଦ୍ଧାରପାଇଁ କୌଣସି ବ୍ୟବସ୍ଥା କରାନଯିବାରୁ କାଳକ୍ରମେ ଉକ୍ତ ସାଗର ପୋତି ହୋଇଗଲା ଓ ତାକୁ ଯୋଗାଉଥିବା ପର୍ବତ ଉପତ୍ୟକାରୁ ଜଳଧାରା ପଥ ମଧ୍ଯ ରୁଦ୍ଧ ହୋଇଥିଲା । ବର୍ତ୍ତମାନ କାଶୀନଗରସ୍ଥିତ ନଳିନୀ କୃଷ୍ଣ ସାଗର ଆଖପାଖ ଅଧିକାଂଶ ଭୂମିକୁ ଜଳ ଯୋଗାଇ ଦୋଫସଲି ଭୂମିରେ ପରିଣତ କରି ପାରିଛି । ଏହା ଛଡ଼ା ପାରଳାଖେମୁଣ୍ଡି ଜମିଦାରିରେ ବଡ଼ ସାନ ପ୍ରାୟ ବାରଶହ ଜଳସେଚନ ଯୋଜନା ପ୍ରଜାମାନଙ୍କର ଜଳସେଚନ ସୁବିଧା ନିମିତ୍ତ ରକ୍ଷଣାବେକ୍ଷଣ କରା ଯାଉଥିଲା । ଏସବୁ ଦେଖିଲେ ସ୍ୱାଧୀନତା ପରଠାରୁ ଆରମ୍ଭ ହୋଇଥିବା ଦେଶର କ୍ଷୁଦ୍ର ଓ ମଧ୍ୟମ ଜଳସେଚନ ଯୋଜନାମାନ ଏକ କ୍ରୂର ପରିହାସ ପରି ମନେ ହୁଏ । ବୋଧହୁଏ, ଏହିପରି ଏକ ଜଳ ଭଣ୍ଡାର ନିକଟରେ ଠିଆ ହୋଇ 'ବନ୍ଦୀ ଓଡିଆ'ର କବି ଗାଇଥିଲେ -

"ପଡ଼ିବ ଅଗ୍ରେ ଚାରୁ ଶସ୍ୟ ଶ୍ୟାମଳା
ଧରଣୀ କାବ୍ୟ କଳା ପୂର୍ଣ୍ଣ ପାରଳା
ଉତ୍କଳ ଶାନ୍ତି ଦେବୀ ବିହାର ସ୍ଥାନ
ପାରଳା ବନ କୁଞ୍ଜ କେଳି ଆରାମ
ମଞ୍ଜୁଳ ଗିରିଶିର ନୀଳିମାମୟ
ଦେଖିଲେ ଦୂରୁଁ ମୋଦେ ନାଚେ ହୃଦୟ ।"

ପାରଳାଖେମୁଣ୍ଡିର ସୌନ୍ଦର୍ଯ୍ୟ ଓ ଉର୍ବରତାକୁ ଲକ୍ଷ୍ୟ କରି କବି ଲେଖିଥିଲେ-

"କମଳା ଲୀଳାଭୂମି ଶସ୍ୟ ଶ୍ୟାମଳା
ସୁବର୍ଣ୍ଣପ୍ରସୂ ଶୋଭାଖଣି ପାରଳା
ଉତ୍କଳ କ୍ରୀଡ଼ାଭୂମି ବୀର ଅବନୀ
ପବିତ୍ର ଗଜପତି ବାଣୀ-ଧରଣୀ ।"

ଉତ୍କଳ ପ୍ରକୃତିର ଲୀଳାଭୂମି ଏହି ପାରଳାଖେମୁଣ୍ଡି ସହରରେ ୧୮୯୨ ଖ୍ରୀଷ୍ଟାବ୍ଦ ବୈଶାଖ କୃଷ୍ଣ ଅମାବାସ୍ୟା ତିଥିରେ ଜନ୍ମ ଗ୍ରହଣ କରିଥିଲେ ନବ ଉତ୍କଳ ନିର୍ମାତା ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ । ମହାରାଜା ଉପାଧି ତାଙ୍କର ବଂଶ ପରମ୍ପରା ନୁହେଁ, ଏହା ସ୍ୱ-ଅର୍ଜିତ । ଇଂରେଜ ସରକାର ସ୍ୱତନ୍ତ୍ର ପ୍ରଦେଶ ଗଠନର ପ୍ରାକ୍‌କାଳରେ ତାଙ୍କୁ ଏହି ଉପାଧିରେ ଭୂଷିତ କରିଥିଲେ । ଏହି ଉପାଧି ଅନୁସାରେ ସେ ପାରଳାଖେମୁଣ୍ଡିର ମହାରାଜାଭାବରେ ସୁପରିଚିତ ।

ଉତ୍କଳର ଏହି କୃତୀ ସନ୍ତାନଙ୍କର ଜୀବନୀ ପର୍ଯ୍ୟାଲୋଚନା କଲେ, ତାଙ୍କର ବହୁମୁଖୀ ପ୍ରତିଭା, ଧୈର୍ଯ୍ୟ ଓ ଅଧ୍ୟବସାୟର ପ୍ରମାଣ ମିଳିଥାଏ । ବଲ୍ୟକାଳରେ ପିତା ଶ୍ରୀ ଶ୍ରୀ ଶ୍ରୀ ଗୌରଚ଼ନ୍ଦ୍ର ଗଜପତି ନାରାୟଣ ଦେବ C.I.E ଓ ପିତୃବ୍ୟ ଶ୍ରୀ ଶ୍ରୀ ଶ୍ରୀ ପଦ୍ମନାଭ ନାରାୟଣ ଦେବଙ୍କ ତତ୍ତ୍ୱାବଧାନରେ ସେ ବାଲ୍ୟଶିକ୍ଷା ଲାଭ କରିଥିଲେ । ମାତ୍ର ୧୩ ବର୍ଷ ବୟଃକ୍ରମରେ ସେ ପିତାଙ୍କୁ ହରାଇଲେ । ତାଙ୍କର ଗଞ୍ଜାମର ପ୍ରଥମ ଓଡ଼ିଆ ଗ୍ରାଜୁଏଟ୍ ପ୍ରାବନ୍ଧିକ ଶ୍ରୀ ଶ୍ୟାମ ସୁନ୍ଦର ରାଜଗୁରୁ ଓ ମିଃ.ଏଡମଣ୍ଡ୍ କ୍ୟାଣ୍ଡ୍‌ଲରଙ୍କ ପରି ବିଖ୍ୟାତ ଓଡିଆ ଓ ଇଂରେଜୀ ଗୃହ ଶିକ୍ଷକ ଥିଲେ ମଧ ତାଙ୍କୁ ଶ୍ରେଷ୍ଠ ଶିକ୍ଷାଦାନ ନିମିତ୍ତ କୋର୍ଟ ଅଫ୍ ୱାର୍ଡସ୍ ମାନ୍ଦ୍ରାଜ ପଠାଇବାକୁ ନିଷ୍ପତ୍ତି କଲେ । ନିଉଇଣ୍ଟନ୍ ଠାରେ ଅବସ୍ଥିତ ମାନ୍ଦ୍ରାଜ କୋର୍ଟ ଅଫ୍ ୱାର୍ଡସ୍ ଇନ୍‌ଷ୍ଟିଚ୍ୟୁଟ୍‌ରେ ତାଙ୍କର ଶିକ୍ଷା ସମାପ୍ତି ପରେ ସେ ସ୍ୱଦେଶ ପ୍ରତ୍ୟାବର୍ତ୍ତନ କରି ୧୯୧୩ ଖ୍ରୀଷ୍ଟାବ୍ଦ ଅପ୍ରେଲ ତା ୨୬ରିଖରେ କୋର୍ଟ ଅଫ୍ ୱାର୍ଡସ୍ ଠାରୁ ରାଜ୍ୟ ପରିଚାଳନା ଭାର ଗ୍ରହଣ କଲେ ।

ରାଜ୍ୟାଭିଷେକ ପରେ ମହାରାଜା ରାଜଗାଦିରେ ବସିବା ପୂର୍ବରୁ ପାଞ୍ଚୋଟି ଶପଥ କରିଥିଲେ ।

୧. ପିତାଙ୍କ ସଂରକ୍ଷିତ ୨୫ଲକ୍ଷ ଟଙ୍କା ରାଜକୋଷକୁ ବ୍ୟକ୍ତିଗତ ସୁଖ ସ୍ୱାଚ୍ଛନ୍ଦ୍ୟ ନିମିତ୍ତ ସେ ସ୍ପର୍ଶ କରିବେ ନାହିଁ ଅର୍ଥାତ୍ ସେଥିରୁ ପଇସାଟିଏ ନିଜ ସୁବିଧା ନିମିତ୍ତ ବିନିଯୋଗ ହେବ ନାହିଁ ।

୨. ପୂର୍ବପୁରୁଷଙ୍କ କୀର୍ତ୍ତିମାଳା ସଂବୃଦ୍ଧି ଦିଗରେ ସେ ଯତ୍ନବାନ ହେବେ ।

୩. ଲୋକ ହିତକର ଅନୁଷ୍ଠାନମାନ ଗଢ଼ି ସେ ପ୍ରଜା ମଙ୍ଗଳପାଇଁ ସତତ ନିଯୁକ୍ତି ରହିବେ ।

୪. ସେ ପଦବ୍ରଜରେ ଯାଇ ବ୍ରହ୍ମକପାଳିରେ ପିତା ଓ ପ୍ରପିତାମହଙ୍କୁ ପିଣ୍ଡ ଦେବେ ।

୫. ସ୍କଟଲାଣ୍ଡ୍‌ର ବନାନୀ ମଧ୍ୟରେ ଜନ୍ତୁ ଶିକାର କରିବେ । ସ୍କଟ୍‌ଲାଣ୍ଡ୍‌ରେ

ଶିକାର କରିବା ଆୟାସସାଧ୍ୟ ବୋଲି ରାଜକୁମାର କଲେଜରେ ପଢ଼ିବା ସମୟରେ ସେ ଜାଣିଥିବାରୁ ସେଠାରେ ଜନ୍ତୁ ଶିକାର କରିବାକୁ ତାଙ୍କର ଏକ ପୂର୍ବ ଅଭିଳାଷ ଥିଲା ।

ପରବର୍ତ୍ତୀ ଜୀବନରେ ମହାରାଜା ପବିତ୍ର ଭାବରେ ସର୍ବସାନ୍ତଃକରଣରେ ଏହି ପ୍ରତିଜ୍ଞାଗୁଡ଼ିକ ପାଳନ କରିଥିବା ଯୋଗୁଁ ପରମ ଶାନ୍ତି ଓ ଆଶ୍ୱସ୍ତି ଲାଭ କରି ପାରିଥିଲେ । ପ୍ରସିଦ୍ଧ ଭୂଗୋଳ ଲେଖକ ଅଧ୍ୟକ୍ଷ ମରିସନ୍ ସାହେବ ଓ ଇଂରେଜୀ ଅଧ୍ୟାପକ ମିଃ.ଡ଼ି.ଲା.ହେ ନିଉଇଣ୍ଟନ୍ କଲେଜରେ ତାଙ୍କର ଶିକ୍ଷକ ଥିଲେ । ସେମାନଙ୍କଠାରୁ ସେ ଗଭୀର ବିଦ୍ୟାନୁରାଗ ଶିକ୍ଷା କରିଥିଲେ । ପାରଳାଖେମୁଣ୍ଡିର ତତ୍‌କାଳୀନ 'ମହାରାଜା କଲେଜ'କୁ ପରିବର୍ତ୍ତନ କରି ଏକ ଲକ୍ଷ ଟଙ୍କା ବ୍ୟୟରେ ସେ ଯେଉଁ ସୁଦୃଢ଼ ଅଟ୍ଟାଳିକା ନିର୍ମାଣ କଲେ ତାହାକୁ ନିଜର ଅଧ୍ୟକ୍ଷଙ୍କ ନାମରେ ମରିସନ୍ ଏକ୍‌ସଟେନ୍‌ସନ୍ (Morrison Extension) ବୋଲି ନାମିତ କଲେ । ସେ ଯୁଗରେ ଏତାଦୃଶ କୌଣସି ଅଟ୍ଟାଳିକାର ନାମ ରାଜା ମହାରାଜା ବା ଲାଟ ବଡ଼ଲାଟମାନଙ୍କ ନାମାନୁସାରେ ରଖାଯାଉଥିଲା । ଏ ପ୍ରକାର ଗୁରୁଭକ୍ତି ଏକାନ୍ତ ଦୁର୍ଲଭ ପରିଲକ୍ଷିତ ହୁଏ । ମାନ୍ଦ୍ରାଜର ଗଭର୍ଣ୍ଣର ଲର୍ଡ ପେଣ୍ଟଲାଣ୍ଡ ୧୯୧୩ ସାଲ ଡିସେମ୍ବର ମାସ ୧୩ ତାରିଖରେ ଏହି ଅଟ୍ଟାଳିକାର ଶିଳାନ୍ୟାସ କରିଥିଲେ । ୧୯୧୭ ଓ ୧୯୩୨ ସାଲରେ ଦୁଇଥର ବିଶ୍ୱବିଦ୍ୟାଳୟ କମିଶନ କଲେଜ ପରିଦର୍ଶନ କରି ଏହି ଅଟ୍ଟାଳିକା ଦେଖି ମୁଗ୍ଧ ହୋଇ ଯାଇଥିଲେ ଏବଂ କଲେଜର ପ୍ରଧାନ ଅଂଶ ଏହି ପରିବର୍ଦ୍ଧିତ ଭାଗରେ ରଖା ଯିବାକୁ ସୁପାରିଶ କରିଥିଲେ । ୧୯୧୩ ସାଲରେ ଲର୍ଡ ପେଣ୍ଟ୍‌ଲ୍ୟାଣ୍ଡ୍‌ଙ୍କର ପାରଳାଖେମୁଣ୍ଡି ଆଗମନ ଉପଲକ୍ଷେ ସେ ଏକ ଶିକ୍ଷା ସମ୍ମିଳନୀ ଆହ୍ୱାନ କରିଥିଲେ । କଲେଜ ପ୍ରତିଷ୍ଠିତ ହେବାର ୩୦ ବର୍ଷ ଅତିବାହିତ ହୋଇଥିଲେ ମଧ୍ୟ ଏହା ସରକାରରୁ କୌଣସି ଆର୍ଥିକ ସାହାଯ୍ୟ ପାଉ ନଥିଲା । ଲର୍ଡ ପେଣ୍ଟ ଲ୍ୟାଣ୍ଡ୍‌ଙ୍କ ପରାମର୍ଶ କ୍ରମେ ମହାରାଜା କଲେଜ ଲାଗି ବାର୍ଷିକ ଗ୍ରାଣ୍ଟ୍ ନେବାକୁ ସ୍ୱୀକୃତି ଦେଲେ । ବିଶ୍ୱବିଦ୍ୟାଳୟ କମିଶନଙ୍କ ନିର୍ଦ୍ଦେଶ ଅନୁଯାୟୀ ସ୍ୱନାମଧନ୍ୟ ଅଧ୍ୟାପକମାନଙ୍କୁ ଆକର୍ଷଣୀୟଭାବେ ବେତନହାର ବଢ଼ାଇ ଦିଆଗଲା । ଫଳରେ ସେକ୍ସପିୟର ନାଟକମାନଙ୍କର ଟୀକା-ଲେଖକ ପ୍ରସିଦ୍ଧ ଅଧ୍ୟାପକ ଓ ପଣ୍ଡିତ ମିଃ ଇ.ଉଇଙ୍କଲର କଲେଜର ଅଧ୍ୟକ୍ଷ ରୂପେ ସେହି ବର୍ଷ ଯୋଗ ଦେଇଥିଲେ । କଲେଜର ପୁସ୍ତକାଗାରର ବର୍ଦ୍ଧନ କରାଯାଇ ଆଦର୍ଶସ୍ଥାନୀୟ କରାଗଲା । ସର୍ବବିଧ ପାଶ୍ଚାତ୍ୟ କ୍ରୀଡ଼ାର ଉପକରଣ ଓ ସୁପ୍ରଶସ୍ତ କ୍ରୀଡ଼ାକ୍ଷେତ୍ର ଯୋଗାଇ ଦିଆଗଲା । ଛାତ୍ରମାନଙ୍କୁ କ୍ରିକେଟ୍ ଖେଳ ଉଦ୍ଦେଶ୍ୟରେ

ମହାରାଜା ନିଜେ ମାନ୍ଦ୍ରାଜ୍‌ରୁ ଜଣେ ଉଚ୍ଚ ଧରଣର ଶିକ୍ଷକ (Coach) ପାରଳାଖେମୁଣ୍ଡିକୁ ଆଣିଥିଲେ । ଫଳରେ ଓଡ଼ିଶାରେ କ୍ରିକେଟ୍ ଖେଳକୁ ପାରଳାଖେମୁଣ୍ଡିର ଦାନ ଅତୁଳନୀୟ । ରାଜ୍ୟଭାର ଗ୍ରହଣ କଲାପରେ ମହାରାଜା ସାହେବ ଛାତ୍ର-ଛାତ୍ରୀମାନଙ୍କ ସୁବିଧା ଲାଗି ଓ ରାଜ୍ୟରେ ଶିକ୍ଷା ପ୍ରସାରର ସଂପ୍ରସାରଣ ନିମିତ୍ତ ଦୁଇ ଲକ୍ଷ୍ୟ ଟଙ୍କାରୁ ଉର୍ଦ୍ଧ୍ୱ ବ୍ୟୟରେ ପାରଳାଖେମୁଣ୍ଡି ସ୍ଥିତ ସମସ୍ତ ଶିକ୍ଷାନୁଷ୍ଠାନର ସଂପ୍ରସାରଣ ଓ ଅଭିବୃଦ୍ଧି କରିଥିଲେ ।

୧୯୧୩ ସାଲରେ ସେ ଖରସୁଆଁ ରାଜକେମାଙ୍କର ପାଣିଗ୍ରହଣ କରିଥିଲେ ବିବାହ ପରେ ତାଙ୍କର ଦୁଇ ପୁତ୍ର ଜନ୍ମଗ୍ରହଣ କଲେ । ମାତ୍ର ତାଙ୍କର ବୈବାହିକ ଜୀବନ ଦୀର୍ଘସ୍ଥାୟୀ ହୋଇ ନ ଥିଲା । ରାଜକାର୍ଯ୍ୟରେ ସେ ଅସାଧାରଣ ସ୍ମରଣ ଶକ୍ତିର ପରିଚୟ ଦେଇଥିଲେ । ମାତ୍ର ୩ ବର୍ଷ ମଧ୍ୟରେ ସେ ରାଜ୍ୟର ସମସ୍ତ ଗ୍ରାମର ଅବସ୍ଥିତି, ଗ୍ରାମର ମୁଖ୍ୟ (ନାଇଡୁ) ଓ ପ୍ରଧାନ ପଟ୍ଟାଦାର ରୟତମାନଙ୍କର ନାମ କହି ପାରୁଥିଲେ । ସମସ୍ତ ଜଳାଧାରମାନଙ୍କର ଉତ୍ପତ୍ତି, ବିସ୍ତୃତି ଓ ସେଚ୍ ପରିମିତି ତାଙ୍କୁ ସଂପୂର୍ଣ୍ଣ ବିଦିତ ଥିଲା । ଏଠାରେ ଉଲ୍ଲେଖଯୋଗ୍ୟ ଯେ ରାଜ୍ୟର କ୍ଷେତ୍ରଫଳ ୬୩୯ ବର୍ଗ ମାଇଲ ଥାଇ ଏଥିରେ ୫୧୫ଟି ଜଳାଧାରରୁ ୨୭୪୩୮ ଏକର ଜମିରେ ଜଳସେଚନ କରା ଯାଉଥିଲା । ୨୦୦ ଏକରରୁ ଅଧିକ ଜମିକୁ ଜଳ ଯୋଗାଇବା ଜଳାଧାରକୁ ବଡ଼ ଓ ଅନ୍ୟମାନଙ୍କୁ ସାନ ଜଳାଧାର କୁହାଯାଉଥିଲା । ରାଜ୍ୟରେ ୩୬ ଗୋଟି ବଡ଼ ଜଳାଧାର ଥିଲା । ରାଜ୍ୟରେ ଗସ୍ତ କରିବା ସମୟରେ ଦୁଇଟି ଜଳସ୍ରୋତର ଗତି ଦେଖି ସେହି ଅନୁସାରେ ସର୍ଭେ କରାଇ ମହାରାଜା ନିଜେ ନଳିନୀ କୃଷ୍ଣସାଗର ଓ ବାଗାସାଗର ଜଳସେଚନ ଯୋଜନାମାନ ୨ଲକ୍ଷ ଟଙ୍କା ବ୍ୟୟରେ ନିର୍ମାଣ କରାଇଥିଲେ ।

୧୯୧୪ ସାଲ ଡିସେମ୍ବର ୨୬ ଓ ୨୭ ତାରିଖରେ ଉତ୍କଳ ସମ୍ମିଳନୀର ୧୦ମ ଅଧିବେଶନ ପାରାଳାଖେମୁଣ୍ଡିଠାରେ ଅନୁଷ୍ଠିତ ହୋଇଥିଲା । ମହାରାଜାଙ୍କର ପିତୃବ୍ୟ ଶ୍ରୀ ପଦ୍ମନାଭ ନାରାୟଣ ଦେବଙ୍କ ଉତ୍ସାହ, ଉଦ୍ୟମ ଓ ସାହାଯ୍ୟରେ ଗଞ୍ଜାମ ଓଡ଼ିଆ ସମ୍ମିଳନୀ ୧୯୦୨ ସାଲରେ ଅନୁଷ୍ଠିତ ହୋଇ ତତ୍ ପରବର୍ତ୍ତୀ ବର୍ଷ ତାହା ସମଗ୍ର ଉତ୍କଳଭାଷୀ ଅଞ୍ଚଳର ଏକ ପ୍ରକାଣ୍ଡ ଉତ୍କଳ ସମ୍ମିଳନୀ ଆକାର ଧାରଣ କରି ପାରିଥିଲା । ଶ୍ରୀମାନ୍ ମହାରାଜା ଅଳ୍ପ ବୟସ୍କ ଥିବା ଯୋଗୁଁ ଓ ସମ୍ମିଳନୀ ପରି ଦାୟିତ୍ୱସମ୍ପନ୍ନ ଅନୁଷ୍ଠାରେ ପୂର୍ବରୁ ଯୋଗ ଦେଇ ନଥିବା ହେତୁ ନିଜର ସ୍ୱଭାବସୁଲଭ ଉଦାରତା ଦେଖାଇ ଅଭ୍ୟର୍ଥନାସଭାର ସଭାପତି ପଦ ଗ୍ରହଣ କରି ନଥିଲେ । ମାତ୍ର

ସମ୍ମିଳନୀର ସବୁ ପ୍ରକାର ଦାୟିତ୍ୱ ଗ୍ରହଣ କରିବାକୁ ଓ ସାହାଯ୍ୟ ପ୍ରଦାନ କରିବାକୁ ପ୍ରତିଶ୍ରୁତି ଦେଇଥିଲେ । ଅଭ୍ୟର୍ଥନା ସମିତି ଗଠନ ବୈଠକପ୍ରଦତ୍ତ ଭାଷଣରେ ତାଙ୍କ ଉଦାର ମନୋବୃତ୍ତିର ପରିଚୟ ମିଳିଥିଲା । ସେ କହିଥିଲେ "ଏପରି ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟରେ ହସ୍ତକ୍ଷେପ କରିବା ପୂର୍ବେ ଜାତୀୟ ଓ ବ୍ୟକ୍ତିଗତ ଜୀବନର ପ୍ରଭେଦ ସ୍ପଷ୍ଟ ରୂପେ ବୁଝିବାକୁ ହେବ । ଜାତୀୟ କାର୍ଯ୍ୟ କରିବା ସମୟରେ ବ୍ୟକ୍ତିଗତ ମନୋମାଳିନ୍ୟକୁ ମନରେ ସ୍ଥାନ ଦେଲେ ଜାତୀୟ କାର୍ଯ୍ୟରେ ବ୍ୟାଘାତ ଘଟିପାରେ । ଜାତୀୟ କାର୍ଯ୍ୟ ସାଧନ କରିବା ସମୟରେ ବ୍ୟକ୍ତିଗତ ମନୋମାଳିନ୍ୟ ପରିତ୍ୟାଗ କରିବା ପ୍ରତ୍ୟେକ ଦେଶ ହିତୈଷୀଙ୍କର କର୍ତ୍ତବ୍ୟ । ଇତିହାସରୁ ଜଣାଯାଏ ଯେ, ଯେଉଁ ଦେଶରେ ବ୍ୟକ୍ତିଗତ ଭାବର ଆଧିକ୍ୟ ଥାଏ, ସେହି ଦେଶର ପତନ ଓ ଯେଉଁ ଦେଶରେ ଜାତୀୟଭାବର ଆଦର ଥାଏ, ସେହି ଦେଶ ଉନ୍ନତି ପଥରେ ଅଗ୍ରସର ହୁଏ । ଅତଏବ୍ ଏହା ମନେରଖି ସମସ୍ତେ ମିଳିମିଶି କାର୍ଯ୍ୟ କରିବା ନିତାନ୍ତ ଆବଶ୍ୟକ ।"

ଏହି ସମୟରେ ପ୍ରଥମ ମହାଯୁଦ୍ଧ ପାଣ୍ଠିକୁ ସେ ତିନି ଲକ୍ଷ ଦଶ ହଜାର ଟଙ୍କା ସାହାଯ୍ୟ ଦେଲେ । ସୈନିକ ଓ ଶ୍ରମିକ ପ୍ରେରଣ କରି ସ୍ୱୟଂ ସୈନିକ ବିଭାଗର ଅବୈତନିକ କମିଶନ୍ ପଦ ଗ୍ରହଣ କଲେ । ଯୁଦ୍ଧଜୟୀ ଇଂରେଜ ଜାତି ତାଙ୍କୁ କୃତଜ୍ଞତା ଜ୍ଞାପନ କଲା । ଏହା ପରେ ଶ୍ରେଷ୍ଠ ସମ୍ମାନମାନ ଗୋଟିକ ପରେ ଗୋଟିଏ ତାଙ୍କର ଯୋଗ୍ୟ ପ୍ରାପ୍ୟ ବୋଲି ବିବେଚିତ ହେଲା । ସେ ମେଡ଼ିକାଲ ଗବେଷଣା ସମିତିର ସଭ୍ୟ ହେଲେ । ନୂଆଦିଲ୍ଲୀସ୍ଥିତ ଭାରତୀୟ ଗବେଷଣା ଫଣ୍ଡ ଆସୋସିଏସନ୍‌ର ପରିଚାଳନା ସଭା ଓ ବିଜ୍ଞାନ ପରାମର୍ଶଦାତା ବୋର୍ଡ଼ର ସେ ସଭ୍ୟ ହୋଇଥିଲେ । ଲଣ୍ଡନସ୍ଥ ରଏଲ୍ ଏସିଆଟିକ୍ ସୋସାଇଟିର ମଧ୍ୟ ସଭ୍ୟ ହେଲେ । ୧୯୨୬ରୁ ୧୯୨୮ ସାଲ ପର୍ଯ୍ୟନ୍ତ ସେ ମାନ୍ଦ୍ରାଜ୍ ବ୍ୟବସ୍ଥାପକ ପରିଷଦର ସଦସ୍ୟ ଓ କୋଇମ୍ବାଟୁର କୃଷି କଲେଜର ପରାମର୍ଶଦାତା ଓ ପରିଦର୍ଶକ ମଧ୍ୟ ଥିଲେ । ସେ ଲଣ୍ଡନ୍‌ରେ ୧୯୩୦ ସାଲରେ ପ୍ରଥମ ଗୋଲଟେବୁଲ୍ ବୈଠକରେ ଉତ୍କଳର ପ୍ରତିନିଧିରୂପେ ସମଗ୍ର ଉତ୍କଳଭାଷୀ ଅଞ୍ଚଳର ଏକୀକରଣ ଉଦ୍ୟମ କରିଥିଲା । ଓଡ଼ିଶା ସୀମା ନିର୍ଦ୍ଧେଶକ କମିଟି ( ଓଡ଼ନେଲ କମିଟି) ଅଙ୍ଗୀଭୂତ ସଦସ୍ୟ (Co-opted member)ଭାବରେ ସେ ଛିନ୍ନ ବିଚ୍ଛିନ୍ନ ଅଙ୍ଗମାନଙ୍କର ସଂଯୋଜକ ପୂର୍ବକ ବିଶାଳ ଉତ୍କଳ ପ୍ରଦେଶ ଗଠନ ନିମିତ୍ତ ବ୍ରତୀ ଥିଲେ । ଏଥିପାଇଁ ସେ ତିନିଥର ଲଣ୍ଡନ୍ ଯାତ୍ରା କରିଥିଲେ । ସେତେବେଳେର ବିଦେଶ ଯାତ୍ରା ଅର୍ଥ ଓ ସମୟ-ସାପେକ୍ଷ ଥିଲା । ସେ ପ୍ରତିଜ୍ଞା କରିଥିଲେ "ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ନ ହେଲେ

ଓଡ଼ିଶାକୁ ଫେରିବି ନାହିଁ ।" ଏ ଭୀଷ୍ମ ପ୍ରତିଜ୍ଞା ସେ ପାଳନ କରିପାରିଥିଲେ । ମୃତ୍ୟୁ ଶଯ୍ୟାରେ କୁଳବୃଦ୍ଧ ମଧୁସୂଦନ ପାରଳାଖେମୁଣ୍ଡି ଓଡ଼ିଶାରେ ମିଶୁଛି ବୋଲି ଜାଣି ସନ୍ତୋଷ ପ୍ରକାଶ କରି ଶାନ୍ତିରେ ଆଖି ବୁଜିଲେ । ଏହା ବ୍ୟତୀତ ୧ ୯୩୩ ସାଲରେ ନିଖିଳ ଭାରତୀୟ ଭୂସ୍ୱାମୀ ମଣ୍ଡଳର ପ୍ରତିନିଧିରୂପେ ସେ ଲଣ୍ଡନ୍‌ରେ ଜଏଣ୍ଟ୍ ସିଲେକ୍ଟ କମିଟି ଆଗରେ ସାକ୍ଷ୍ୟ ପ୍ରଦାନ କରିଥିଲେ । ୧ ୯୩୬ ଖ୍ରୀଷ୍ଟାବ୍ଦରେ ସେ ଗଞ୍ଜାମ ଜିଲ୍ଲା ବୋର୍ଡର ସଭାପତି ଥିଲେ । ୧ ୯୩୭ ଖ୍ରୀଷ୍ଟାବ୍ଦରେ ନୂତନ ଉତ୍କଳ ପ୍ରଦେଶ ଗଠନ ହେବା ପରେ ସେ ଏମ୍.ଏଲ୍.ଏ ହେଲେ । କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଠନ କରିବାକୁ ଅନିଚ୍ଛୁକ ହେବାରୁ ସେ ୧.୦୪.୧୯୩୭ ତାରିଖରୁ ୧୮.୭.୩୭ତାରିଖ ପର୍ଯ୍ୟନ୍ତ ଓଡ଼ିଶାର ପ୍ରଧାନମନ୍ତ୍ରୀ ଭାବରେ କାର୍ଯ୍ୟ କରିଥିଲେ । ମୁଖ୍ୟମନ୍ତ୍ରୀମାନଙ୍କୁ ସେ ସମୟରେ ପ୍ରଧାନ ମନ୍ତ୍ରୀ ବୋଲି କୁହାଯାଉଥିଲା । ରାଜ୍ୟରେ ପ୍ରଥମ କଂଗ୍ରେସ ମନ୍ତ୍ରୀମଣ୍ଡଳ ସମୟରେ ଡେଲାଙ୍ଗଠାରେ ଗାନ୍ଧିସେବା ସଂଘର ସର୍ବ-ଭାରତୀୟ ବୈଠକ ବସିଥିଲା । ଡ଼େଲାଙ୍ଗ ସେ ସମୟରେ ପାରଳା ମହାରାଜାଙ୍କର ଜମିଦାରି ଥିଲା । ବେରବୋଇଠାରେ ଗୁରୁବାର ତା ୩୧.୦୩.୧୯୩୮ରେ ମହାରାଜା ଦିନ ଏଗାରଟା ବେଳେ ମହାତ୍ମାଗାନ୍ଧୀଙ୍କୁ ଦେଖା କରିଥିଲେ ଓ ତାଙ୍କୁ ଏଗାରଶହ ଷୋଳ ଟଙ୍କାର ଏକ ଥଳି ଭେଟି ଦେଇଥିଲେ । ସେଦିନ ମହାତ୍ମାଗାନ୍ଧିଙ୍କର ମୌନ ଦିବସ । ତଥାପି ସେ ମହାରାଜାଙ୍କୁ ସାକ୍ଷାତ ଦେଇଥିଲେ ଓ ମହାରାଜା ତାଙ୍କ ସହିତ ଘଣ୍ଟାଏ କାଳ ରହିଥିଲେ । ଜମିଦାରୀ ପ୍ରଥା ସମ୍ବନ୍ଧରେ ପଚାରିବାରୁ ଗାନ୍ଧିଜୀ ଏଥିର ଜବାବରେ କୁଆଡ଼େ ଜଣାଇଲେ ଯେ ସେ ପୁରାତନ ଜମିଦାରୀ ପ୍ରଥା ଉଠିଯିବା ସପକ୍ଷରେ ନୁହନ୍ତି । ତେବେ ଏ ଜମିଦାରୀ ପ୍ରଥା ବିରୁଦ୍ଧରେ ଯେ ଆନ୍ଦୋଳନ ଚାଲିଛି, ଏଥିର ପ୍ରତିକାର ସେହି ଜମିଦାରମାନଙ୍କ ହାତରେ ଏକା ରହିଛି । ମହାରାଜା କୁଆଡ଼େ ପ୍ରଶ୍ନ କଲେ "ଆପଣ ତ ସ୍ୱଚକ୍ଷୁରେ ମୋ ରାଜ୍ୟ ଦେଖିଲେ । ଲୋକଙ୍କର ଉପକାର ପାଇଁ ମୋତେ ଆଉ କଣ କରିବାକୁ ହେବ ।" ବାପୁଜୀ କାଗଜ ଖଣ୍ଡିକ ଉପରେ ପେନସିଲ୍‌ରେ ଲେଖିଦେଲେ 'ତୁମର ଶାସନ ରାମରାଜ୍ୟ ।' ମହାରାଜା ପାଖରେ ଥିବା ନିଜର ବ୍ୟକ୍ତିଗତ ସହକାରୀ ଶ୍ୟାମସୁନ୍ଦର ଗନ୍ତାଏତକୁ ସେହି କାଗଜଟି ବଢ଼ାଇଦେଲେ ଓ ସେ ନିଜ କୋଟ ପକେଟ୍‌ରେ ତାହା ରଖିଲେ । ମାତ୍ର ପରେ କାଗଜଟି କୁଆଡେ ହଜି ଯିବାର ଜଣା ପଡ଼ିଲା । ସେଠାରେ ଉପସ୍ଥିତ କେତେକ ବ୍ୟକ୍ତି ମଧ୍ୟ ଏହାର ସତ୍ୟାସତ୍ୟର ସାକ୍ଷୀ । ୧ ୯ ୪ ୦ ସାଲରେ ଭାରତ-ଲଣ୍ଡନ ମଧ୍ୟରେ ବାଣିଜ୍ୟ କାରବାର କଥାବାର୍ତ୍ତାରେ ସେ ମୁଖ୍ୟଭାଗ ନେଇଥିଲେ ୧ ୯ ୪ ୧ ଡିସେମ୍ବର ମାସଠାରୁ

୧୯୪୪ ଜୁନମାସ ପର୍ଯ୍ୟନ୍ତ ସେ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ସହିତ ମିଶି ପ୍ରଥମ ଓଡ଼ିଶା ମିଳିତ ମନ୍ତ୍ରୀ ମଣ୍ଡଳର ପ୍ରଧାନମନ୍ତ୍ରୀ ଥିଲେ । ୧୯୪୩ରେ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା, ୧୯୪୪ସାଲରେ କଟକ, ପୁରୀ, ବାଲେଶ୍ୱର, ସମ୍ବଲପୁରରେ ନୂଆ ନୂଆ କଲେଜ ପ୍ରତିଷ୍ଠା ଓ କଟକରେ ନୂତନ ମେଡ଼ିକାଲ କଲେଜ ସ୍ଥାପନ ଏହି ମନ୍ତ୍ରୀମଣ୍ଡଳର ଉଲ୍ଲେଖଯୋଗ୍ୟ କାର୍ଯ୍ୟ । ତାଙ୍କ ମନ୍ତ୍ରୀତ୍ୱ ସମୟରେ ଅର୍ଜିତ ସମସ୍ତ ବେତନ ଓ ଗସ୍ତଖର୍ଚ୍ଚ ବାବଦ ଧନ ଆନନ୍ଦରେ ଉତ୍କଳ ବିଶ୍ୱବିଦ୍ୟାଳୟର ପାଣ୍ଠିକୁ ଦାନ କରିଥିଲେ । ଦ୍ୱିତୀୟ ମହାଯୁଦ୍ଧ ସମୟରେ ସେ ପ୍ରାଦେଶିକ ଯୁଦ୍ଧ ସାମ୍ମୁଖ୍ୟରେ ନେତା ଓ ସଭାପତି ଥାଇ ଯୁଦ୍ଧ ଉଦ୍ୟମରେ ବିଶେଷ ସାହାଯ୍ୟ କରିଥିଲେ । ମାନ୍ଦ୍ରାଜର ପ୍ରାଦେଶିକ ଓ ଜିଲ୍ଲା ଯୁଦ୍ଧ ସାମ୍ମୁଖ୍ୟରେ ମଧ୍ୟ ଏହି ସମୟରେ ସେ ସଭ୍ୟ ଥିଲେ । ସର୍ବ ଭାରତୀୟ ସ୍ତରରେ ପ୍ରତିରକ୍ଷା ସମିତିର ସେ ସଭ୍ୟ ଥିଲେ । ଯୁଦ୍ଧ ସାହାଯ୍ୟ ପାଣ୍ଠିକୁ ସେ ବ୍ୟକ୍ତିଗତଭାବରେ ଏକ ଲକ୍ଷ ଟଙ୍କା ଦାନ କରିଥିଲେ । ଏହା ବ୍ୟତୀତ ସାମରିକ ଓ ବେସାମରିକ ଶ୍ରମିକ ଯୋଗାଇଦେବାରେ ସେ ମୁଖ୍ୟ ଅଂଶ ଗ୍ରହଣ କରିଥିଲେ । ସର୍ବୋପରି ବ୍ରିଟିଶ କେଶରୀଙ୍କର ଏହି ଦୁର୍ଦ୍ଦିନରେ ବ୍ରିଟେନ୍‌ର ପ୍ରତିରକ୍ଷାପାଇଁ ଏକ ଲଢୁଆ ବିମାନ କିଣିବା ଲାଗି ସେ ପାଞ୍ଚହଜାର ପାଉଣ୍ଡ୍ ଦାନ ପୂର୍ବକ ଇଂରେଜ ଜାତିର କୃତଜ୍ଞତା ଅର୍ଜନ କରିଥିଲେ । ମହାରାଜାଙ୍କର ଦରବାର ହଲରେ ଗଚ୍ଛିତ ନାନା ପ୍ରଶଂସା-ପତ୍ର ମଧ୍ୟରେ ଇଂରେଜ ଜାତିର କୃତଜ୍ଞତାସୂଚକ ଏହି ପତ୍ରଟି ହୃଦୟସ୍ପର୍ଶୀ ଅଟେ । ୧୯୪୬ ସାଲରେ ସେ **K.C.I.E** ଉପାଧି ପାଇଥିଲେ । ୧୯୪୭ ସାଲରେ ସେ ଭାରତର ଶାସନ ବିଧାୟକ ସଭାର ସଭ୍ୟ ଥିଲେ । ପ୍ରଥମେ ଉତ୍କଳ ବିଶ୍ୱବିଦ୍ୟାଳୟ ଓ ପରେ ୧୯୬୮ ନୂତନ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ତାଙ୍କୁ ସମ୍ମାନସୂଚକ **LLD.** ଉପାଧିରେ ଭୂଷିତ କରି ଅଛନ୍ତି ।

ଦେଶର ସ୍ୱାଧୀନତାପରେ ସେ ପ୍ରତ୍ୟକ୍ଷ ବିବଦମାନ ରାଜନୀତିରୁ ଅପସରି ଯାଇ କୃଷି ଓ ଶିଳ୍ପର ଉନ୍ନତିରେ ନିଜକୁ ନିୟୋଜିତ କରିଥିଲେ । ତଥାପି ୧୯୫୪ ସାଲରେ ସେ ହିନ୍ଦୁସ୍ଥାନ ଷ୍ଟିଲ ଲିମିଟେଡ଼ର ଡ଼ିରେକ୍ଟରରୂପେ କେନ୍ଦ୍ର ସରକାରଙ୍କ ଦ୍ୱାରା ମନୋନୀତ ହୋଇଥିଲେ । ପରେ ସେ ପ୍ରସିଦ୍ଧ ମେକ୍ଟୁ ଇଣ୍ଡଷ୍ଟ୍ରିଜ୍‌ର ଡ଼ିରେକ୍ଟର ହେଲେ । ପାରଳାଖେମୁଣ୍ଡିଠାରୁ ପ୍ରାୟ ୨୨ ମାଇଲ ଦୂରରେ ପୁଣ୍ଡିଟାରେ (ଶ୍ରୀକାକୁଲମ୍ ଜିଲ୍ଲା) ପ୍ରତିଷ୍ଠିତ ତାଙ୍କର ବିରାଟ ଲବଣ ଶିଳ୍ପ କାରଖାନା ଏକ ଉତ୍କୃଷ୍ଟ ଶିଳ୍ପାନୁଷ୍ଠାନ ଅଟେ । ତାଙ୍କର ନିଜ ପ୍ରତିଷ୍ଠିତ ଗଜପତି ଷ୍ଟିଲ୍ ଇଣ୍ଡଷ୍ଟ୍ରି ବର୍ତ୍ତମାନ ଓଡ଼ିଶା ସରକାରଙ୍କ ପ୍ରତ୍ୟକ୍ଷ ପରିଚାଳନାଧୀନ । ପରଶୁରାମପୁର, ଅନ୍ନକୋଣ୍ଡାଠାରେ ସ୍ଥାପିତ ସୁବିସ୍ତୀର୍ଣ୍ଣ ଫଳ ଉଦ୍ୟାନ

ତାଙ୍କ କୃଷିପ୍ରୀତିର ନିଦର୍ଶନ ଅଟେ । ପାରଳାଖେମୁଣ୍ଡି ସହରଠାରୁ ଚାରି ମାଇଲ ଦୂରରେ ଅବସ୍ଥିତ Home Farm ମହାରାଜାଙ୍କର ଏକ ଅତ୍ୟନ୍ତ ପ୍ରିୟ ସ୍ଥାନ । ସେ ପ୍ରତ୍ୟହ ଦୁଇଥର (ଥରେ ସୂର୍ଯ୍ୟୋଦୟ ପୂର୍ବରୁ ) ନିଜ ମଟର ଚଳାଇ ସେଠାକୁ ଯିବା ପାରଳାଖେମୁଣ୍ଡି ଅଧିବାସୀଙ୍କପାଇଁ ଏକ ମହନୀୟ ଦୃଶ୍ୟ ଥିଲା । ବିଭିନ୍ନ ପ୍ରଚାର ମାଧ୍ୟମରେ କୃଷି ପ୍ରତି ଯେଉଁ ଆଗ୍ରହ ଜନ୍ମି ନଥାଏ, ନିଜେ ମହାରାଜା କୃଷିକ୍ଷେତ୍ରକୁ ଯାଉଥିବା ଦୃଶ୍ୟ ତାହାଠାରୁ ଶତଗୁଣ ଫଳଦାୟକ ହେଉଥିଲା ।

ରାଜନୀତି, ଶିଳ୍ପ ଓ କୃଷି ବ୍ୟତୀତ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ତାଙ୍କର ଦାନ ବି ସ୍ମରଣୀୟ । ମାତୃଭାଷା ଓ ସାହିତ୍ୟର ଲୁପ୍ତ ଗ୍ରନ୍ଥଚୟ ଆହରଣ ଓ ପ୍ରକଟନରେ ତାଙ୍କର ପ୍ରଗାଢ଼ ଯତ୍ନ ଓ ଅଯାଚିତ ଦାନ ପ୍ରକାଶ ପାଇଅଛି । ପଣ୍ଡିତ ଗୋପୀନାଥଙ୍କର ସଙ୍କଳିତ 'ଓଡ଼ିଆ ଶବ୍ଦତତ୍ତ୍ୱବୋଧ ଅଭିଧାନ'ର ମୁଦ୍ରଣ ବ୍ୟୟ ସକାଶେ ନିଅଣ୍ଟ ହେଉଥିବା ତିନି ହଜାର ଟଙ୍କା ସେ ଦାନ କରିଥିଲେ । ଗ୍ରନ୍ଥର ବିଶୁଦ୍ଧ ଲିପି ଲେଖନାର୍ଥେ ପଣ୍ଡିତଙ୍କୁ କଲେଜ କାମରୁ ସେ ଛଅ ମାସ ସବୈତନିକ ଅବସର ପ୍ରଦାନ କରିଥିଲେ । ଫଳରେ ସେ ଉକ୍ତ ଅଭିଧାନର ପରିପୋଷକ ଓ ଜୀବନଦାତା ହେଲେ । ଗୋପାଳକୃଷ୍ଣ ପଦ୍ୟାବଳୀର ସେ ପ୍ରକାଶକ ଓ ଲୁପ୍ତପ୍ରାୟ ପ୍ରାଚୀନ ସଙ୍ଗୀତର ନବ-ଜୀବନ ଦାନ ତାଙ୍କରିଦ୍ୱାରା ସମ୍ଭବ ହୋଇଥିଲା । ଜଗବନ୍ଧୁ ସିଂହଙ୍କ "ପ୍ରାଚୀନ ଉତ୍କଳ"ର ପ୍ରକାଶନ ନିମିତ୍ତ ସେ ଆର୍ଥିକ ସାହାଯ୍ୟ ପ୍ରଦାନ କରିଥିଲେ । ସିଂହଭୂମିରେ ଓଡ଼ିଆ ଭାଷା ଓ ଶିକ୍ଷାର ପ୍ରସାର ନିମିତ୍ତ ସେ ପାଞ୍ଚ ହଜାର ଟଙ୍କା ଦାନ କରିଥିଲେ । ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ ପଞ୍ଚମ ଖଣ୍ଡର ମୁଦ୍ରଣ ନିମିତ୍ତ ମଧ୍ୟ ସେ ପାଞ୍ଚ ହଜାର ଟଙ୍କା ଦାନ କରିଥିଲେ । ଏହା ବ୍ୟତୀତ ଗୋପାଳକୃଷ୍ଣ ପଦ୍ୟାବଳୀ (କ୍ଷୁଦ୍ର ଓ ବୃହତ୍ତ), ନକ୍ଷତ୍ର ନିର୍ଣ୍ଣୟ, ଶ୍ରୀବୃନ୍ଦାବନଚନ୍ଦ୍ର ବିହାର, ଗୌରହରି ଗ୍ରନ୍ଥାବଳୀ, କବିତା କଳିକା, ବନ୍ଦୀ ଓଡ଼ିଆ ଆଦି ଗ୍ରନ୍ଥମାନ ତାଙ୍କରି ଆର୍ଥିକ ସାହାଯ୍ୟ ଫଳରେ ମୁଦ୍ରିତ ହୋଇ ପାରିଥିଲା ।

ସାହିତ୍ୟ ବ୍ୟତୀତ ଅନ୍ୟ କ୍ଷେତ୍ରରେ ମଧ୍ୟ ଏହି ଦାନବୀର ମହାରାଜାଙ୍କର କୃତି ଅତୁଳନୀୟ । କୁନୁର ଗବେଷଣା ମନ୍ଦିର ଓ କୃଷିତତ୍ତ୍ୱ ସମ୍ବନ୍ଧୀୟ ଗୁରୁତର ଅନୁଶୀଳନ ଉଦ୍ଦେଶ୍ୟରେ ସେ ଯଥାକ୍ରମେ ଏକ ଲକ୍ଷ ଓ କୋଡ଼ିଏ ହଜାର ଟଙ୍କା ଦାନ କରିଥିଲେ । କଟକର ରାମକୃଷ୍ଣ କୁଟୀର ଛାତ୍ରବାସର ନିର୍ମାଣାର୍ଥେ ସେ ଦଶ ହଜାର ଟଙ୍କା ସାହାଯ୍ୟ ପ୍ରଦାନ କରିଥିଲେ । ଓଡିଶାରେ ସେ ସମୟରେ ଏକ କୃଷି କଲେଜ କଳ୍ପନାତୀତ ଥିଲା । ରାଜକୀୟ କୃଷି କମିଶନ୍‌ର ସଭ୍ୟଭାବେ ପାଇଥିବା ଭତ୍ତାକୁ ଦଶ

ଗୁଣ କରି ସେ ଦାନ କଲେ କୃଷି ଗବେଷଣାକୁ । ସ୍ୱର୍ଗତ ମିଷ୍ଟର ଉଇଲିୟମ୍ ଟେଲର (ଖ୍ରୀଷ୍ଟାବ୍ଦ ୧୮୪୨ ରୁ ୧୯୦୨) ମହାରାଜାଙ୍କ ପିତା ଓ ପିତୃବ୍ୟଙ୍କର ଗୃହ ଶିକ୍ଷକ ଓ ପରେ ରାଜ୍ୟର ଏଜେଣ୍ଟ୍ ଓ ଦେୱାନ୍ ରୂପେ କାର୍ଯ୍ୟ କରିଥିଲେ । ପାରଳାଖେମୁଣ୍ଡିରେ ଶିକ୍ଷାର ଅଗ୍ରଗତି ଦିଗରେ ତାଙ୍କର ଦାନ ସର୍ବାଗ୍ରଗଣ୍ୟ । ତାଙ୍କର ମୃତ୍ୟୁ ସମୟରେ ସେ ତାଙ୍କର ଅର୍ଜିତ ସମସ୍ତ ସ୍ଥାବର ଓ ଅସ୍ଥାବର ସମ୍ପତ୍ତି ମହାରାଜାଙ୍କୁ ଉଇଲ୍ କରି ଦେଇଥିଲେ । ମହାରାଜା ଏହାକୁ ଗ୍ରହଣ କରି ଲୋକମଙ୍ଗଳ କାର୍ଯ୍ୟରେ ବ୍ୟୟିତ କଲେ । ଟେଲରଙ୍କ ବାସଗୃହ ବର୍ତ୍ତମାନ ସର୍କିଟ୍ ହାଉସ୍ ଓ ତାଙ୍କ ନାମାନୁସାରେ ପ୍ରତିଷ୍ଠିତ ଟେଲର୍ ଦାନ ପାଣ୍ଠିରୁ ଋଣ ଗ୍ରହଣ କରି ବହୁ ଦରିଦ୍ର ମେଧାବୀ ଛାତ୍ର ଜୀବନରେ ଉପକୃତ ହୋଇ ଅଛନ୍ତି । ଟ୨୦,୦୦୦ଙ୍କା ମୂଳଧନର ଏହି ପାଣ୍ଠିରୁ ପ୍ରଥମେ ଛାତ୍ର ବୃତ୍ତି ଦିଆ ଯାଉଥିଲା ଓ ପରେ ଏହାକୁ ୧୯୩୨ ସାଲରେ ଏକ ଋଣପାଣ୍ଠିରେ ପରିଣତ କରା ଯାଇଥିଲା । ଉତ୍କଳ ପ୍ରଦେଶ ଗଠନ ଦିଗରେ ରାଜକୋଷରୁ ସେ ଦୁଇ ଲକ୍ଷ ଟଙ୍କା ବ୍ୟୟ କରିଥିବାର ହିସାବ ରହିଛି । କଟକ ମେଡ଼ିକାଲ କଲେଜ ହସ୍‌ପିଟାଲ ପ୍ରସୂତି ଭବନ ନିମିତ୍ତ ସେ ୩୦ହଜାର ଟଙ୍କା ଦାନ କରିଥିଲେ । ଖାଦ୍ୟ ଓ ବାଣିଜ୍ୟ ସମ୍ବନ୍ଧୀୟ ଫସଲ ଉପରେ ଉପାଧ୍ୟୁତ୍ତର ଗବେଷଣା ନିମିତ୍ତ କୋଡ଼ିଏ ହଜାର ଟଙ୍କା, ଗଞ୍ଜାମ ସାହାଯ୍ୟ ପାଣ୍ଠିକୁ ପାଞ୍ଚ ହଜାର ଟଙ୍କା, ଉଟ୍‌କାମଣ୍ଡସ୍ଥିତ ଡାକ୍ତର ଗ୍ରାଣ୍ଟ୍‌ଙ୍କର ସେବାସଦନକୁ ପାଞ୍ଚ ହଜାର ଟଙ୍କା, ଓଡ଼ିଶା ବନ୍ୟା ସାହାଯ୍ୟ ପାଣ୍ଠିକୁ ଚାରି ହଜାର ଟଙ୍କା ଓ ଲେଡ଼ି ହବାକୁ ମାତୃ-ମଙ୍ଗଳ ଓ ଶିଶୁ-ମଙ୍ଗଳ ପାଣ୍ଠିକୁ ଦୁଇ ହଜାର ଟଙ୍କା ଦାନ ଏହି ଦାନବୀର ମହାରାଜାଙ୍କର ଅନ୍ୟାନ୍ୟ ଦାନର ଦୃଷ୍ଟାନ୍ତ ଅଟେ । ଏ ପ୍ରକାରଦାନ ଅତୁଳନୀୟ । ଏହି ଦାନର ପରିମାଣ ଆଲୋଚ଼ନା କରିବା ସମୟରେ ଆମ୍ଭମାନଙ୍କୁ ସ୍ମରଣ ରଖିବାକୁ ହେବ ଯେ ଏହା ଯୁଦ୍ଧ ପୂର୍ବରୁ ଅର୍ଥ, ଯେତେବେଳେ କି ଟଙ୍କାର ମୂଲ୍ୟ ଯଥେଷ୍ଟ ବେଶି ଥିଲା ।

୧୯୧୩ ସାଲରେ ମହାରାଜା ରାଜ୍ୟଭାର ଗ୍ରହଣ କଲାବେଳେ ରାଜ୍ୟ ଖଜଣା ଖାନାରେ ପଚିଶ ଲକ୍ଷ ଟଙ୍କା ଥିଲା । ମହାରାଜା ତାକୁ ସମଗ୍ର ଦେଶ ଓ ଓଡ଼ିଆ ଜାତି ଲାଗି ଉତ୍ସର୍ଗ କଲେ । 'ମହାରାଜା'ଉପାଧି ପାଇବା ଉପଲକ୍ଷେ ସେ ସ୍ଥାନୀୟ ୨ୟ ଶ୍ରେଣୀ କଲେଜକୁ ପ୍ରଥମ ଗ୍ରେଡ଼ କଲେଜରୂପେ ପ୍ରତିଷ୍ଠା କରିଥିଲେ । ୧୯୩୬ ସାଲ ମାର୍ଚ୍ଚ ମାସରେ ତତ୍‌କାଳୀନ ଓଡ଼ିଶାର ଗଭର୍ଣ୍ଣର ସାର୍ ଜନ୍ ଅଷ୍ଟିନ୍ ହବାକ୍ ଏହି କଲେଜ ଉଦ୍‌ଘାଟନ କରିଥିଲେ । ଏଠାରେ ପ୍ରଥମେ କଳା ଓ ପରେ ବିଜ୍ଞାନ ଶିକ୍ଷା ପ୍ରଦାନ ତାଙ୍କର

ଲକ୍ଷ୍ୟ ଥିଲା । ସେଠାରେ ଆଇ.ଏ.ଶ୍ରେଣୀରେ କୃଷି ଏକ ଶିକ୍ଷଣୀୟ ବିଷୟ ଥିଲା । କୃଷି ପ୍ରତି ତାଙ୍କର ଗଭୀର ଅନୁରାଗ ଏଥିରୁ ପ୍ରମାଣିତ ହୁଏ । ସେ ସମୟରେ ଓଡ଼ିଶା ବା ମାନ୍ଦ୍ରାଜ ପ୍ରଦେଶର ଉତ୍ତରାଂଶରେ କୌଣସି କଲେଜରେ କୃଷି ଶିକ୍ଷାର ବ୍ୟବସ୍ଥା ନ ଥିଲା । ସଂସ୍କୃତ କଲେଜ ପ୍ରତିଷ୍ଠା, ଅଠର ଲକ୍ଷ ଟଙ୍କା ବ୍ୟୟରେ ନିର୍ମିତ ପାରଳାଖେମୁଣ୍ଡି ଠାରୁ ଗୁଣୁପୁର ପର୍ଯ୍ୟନ୍ତ ୩୨ମାଇଲ ବ୍ୟାପୀ ନଉପଡା-ପାରଳାଖେମୁଣ୍ଡି ରେଳରାସ୍ତା ସଂପ୍ରସାରିତ କରି ନୂତନ ରେଳପଥ ନିର୍ମାଣ, ଓଡ଼ିଆ-ତେଲୁଗୁ ଉଚ୍ଚ ବାଳିକା ବିଦ୍ୟାଳୟ, ଧାନ କଳ, ପ୍ରକାଣ୍ଡ ବଳିକା ବିଦ୍ୟାଳୟ, ଆଦର୍ଶ କୃଷିକ୍ଷେତ୍ର ପ୍ରତିଷ୍ଠା ଆଦି ପ୍ରତ୍ୟେକ ଅନୁଷ୍ଠାନ ତାଙ୍କର ଏକ ଏକ ବିରାଟ କୀର୍ତ୍ତି । ସେତେବେଳେ କଲେଜମାନଙ୍କରେ ଛାତ୍ରାବାସର ବ୍ୟବସ୍ଥା ଥିଲା । ଓଡିଆ ଛାତ୍ର ପ୍ରତ୍ୟେକ ଅଧା ବେତନ ଦେଉଥିଲେ । ମେଧାବୀ ଛାତ୍ରମାନେ ପୂରା ବେତନ ଛାଡ଼ ପାଉଥିଲେ । ଛାତ୍ରାବାସରେ ବିନା ଶୁଳ୍କରେ ଗ୍ରାସାଚ୍ଛାଦର ସୁବିଧା ମଧ ମିଳୁଥିଲା । ବିଶ୍ୱବିଦ୍ୟାଳୟ କମିସନ (୧୯୩୨)ତାଙ୍କର ରିପୋର୍ଟରେ ଉଲ୍ଲେଖ କରିଥିଲେ "ବୋଡ଼ିଂ ଖର୍ଚ୍ଚ ମାସକୁ ଛଅ ଟଙ୍କା, ମାତ୍ର କୌଣସି ଛାତ୍ର ଦରମାର ଆଂଶିକ ଦେୟ ମଧ ବହନ  କରୁ ନାହାନ୍ତି । ବିନା ଶୁଳ୍କରେ ଅଧ୍ୟୟନ ନିମିତ୍ତ ବିଜୟନଗର, ବୋବିଲି, ଆସ୍କା, ବ୍ରହ୍ମପୁର ଓ ପାଲକୋଣ୍ଡାରୁ ଛାତ୍ରମାନେ ଏଠାକୁ ଆସୁ ଅଛନ୍ତି ।" କଲେଜରେ ଶତକଡ଼ା ୨୨ଛାତ୍ର ବିନା ବେତନ ଓ ଶତକଡ଼ା ୩୨ ଛାତ୍ର ମେଧାବୀ ବୃତ୍ତି ପାଉଥିବାର ମଧ ଏଥିରେ ଉଲ୍ଲେଖ ଅଛି । କଲେଜ ପରିଚାଳନା ବ୍ୟୟର ମାତ୍ର ଏକ ପଞ୍ଚମାଂସ ଛାତ୍ର ଦତ୍ତ ବେତନରୁ ମିଳୁଥିଲା । ଆଜି ଓଡ଼ିଶାରେ ସୁପ୍ରତିଷ୍ଠିତ ବହୁ ବ୍ୟକ୍ତି ଅତୀତରେ ଏହି ପ୍ରକାରେ ସୁବିଧା ସୁଯୋଗ ପୂର୍ଣ୍ଣ ଉପଭୋଗ କରିଥିଲେ । ମହାରାଜାଙ୍କର ବହୁମୁଖୀ ପ୍ରତିଭା ମଧ୍ୟରେ ସେ ଜଣେ ଶ୍ରେଷ୍ଠ ମୃଗାୟୁ ଓ ଗଲଫ୍ ଖେଳାଳି । ସେ ଥିଲେ ଜନୈକ ଉଚ୍ଚ କୋଟୀର ଆଦର୍ଶ ଖେଳାଳି ଓ କ୍ରୀଡ଼ାପ୍ରେମୀ । ଏହା ତାଙ୍କର ଚ଼ରିତ୍ର ଓ ବ୍ୟକ୍ତିତ୍ୱର ବିକାଶରେ ଯଥେଷ୍ଟ ସାହାଯ୍ୟ କରୁଥିଲା । ସେ ଜଣେ ଉତ୍କୃଷ୍ଟ ଧରଣର ଟେନିସ୍ ଓ କ୍ରୀକେଟ୍ ଖେଳାଳି ଥିଲେ । ଅବସର ସମୟ ଓ ଛୁଟି ଦିନମାନଙ୍କରେ ସମଗ୍ର ଯୁବ ସଂପ୍ରଦାୟ ଯେପରି କ୍ରୀଡା କ୍ଷେତ୍ରରେ ଉପସ୍ଥିତ ରହି କ୍ରୀଡ଼ା ଶିକ୍ଷା କରି ପାରିବେ ସେଥିପାଇଁ ସେ ନିଜର ତତ୍ତ୍ୱାବଧାନରେ ସମସ୍ତ ଯୋଜନା ନିଜେ ପରିଚାଳନା କରୁଥିଲେ । ରାଜ ପରିବାରର ଯେ କୌଣସି ଶୁଭ ଉତ୍ସବରେ କ୍ରୀକେଟ୍ ମ୍ୟାଚ୍ ଏକ ଆକର୍ଶଣୀୟ ଅଙ୍ଗ ଥିଲା । ଏଥିରେ ସୁଦୂର ମାନ୍ଦ୍ରାଜ୍ ସହରରୁ ବଛା ବଛା ଖେଳାଳିମାନେ ଆସି ନିଜର କ୍ରୀଡ଼ା

ନୈପୁଣ୍ୟ ପ୍ରଦର୍ଶନ କରୁଥିଲେ । ମହାରଜାଙ୍କର ଏତାଦୃଶ୍ୟ ତତ୍ତ୍ୱାବଧାନ ଫଳରେ ପାରଳାଖେମୁଣ୍ଡି ଯୁବ ସଂପ୍ରଦାୟର ଉତ୍କର୍ଷ ସମଗ୍ର ଦେଶରେ ପ୍ରାମାଣିତ ହୋଇ ପାରିଥିଲା । କେବଳ ଉତ୍ସବର ଉଦ୍‌ଘାଟକ ବା ଦର୍ଶକ ନ ହୋଇ ମହାରାଜା ଯୁବଗୋଷ୍ଠୀଙ୍କୁ ଯଥେଷ୍ଟ ଉତ୍ସାହ ଓ ପ୍ରେରଣା ପ୍ରଦାନ କରୁଥିଲେ । କ୍ରୀକେଟ୍ ଓ ଘୋଡ଼ା ଚଢ଼ା ତାଙ୍କର ଶ୍ରେଷ୍ଠ ଅବସର ବିନୋଦନ କ୍ରୀଡ଼ା ଥିଲା । ନିଖିଳ ଭାରତ କ୍ରୀକେଟ୍ କ୍ଲବ୍ ଓ ବିଲାତର M.C.C କ୍ରୀକେଟ୍ କ୍ଲବ୍‌ର ସେ ଆଜୀବନ ସଭ୍ୟ । ମାନ୍ଦ୍ରାଜର କସ୍‌ମୋପଲିଟାନ ଜିମ୍‌ଖାନା କ୍ଲବ୍, କଲିକତା କ୍ରୀକେଟ କ୍ଲବ୍, ଗଲଫ ହାଉସ ଓ ବାଙ୍ଗାଲୋର ସେଞ୍ଚୁରୀ କ୍ଲବର ସେ ପୁରାତନ ସଭ୍ୟ । ମହାରାଜାଙ୍କର ବ୍ୟକ୍ତିଗତ ଜୀବନ ପ୍ରାଚୀନ ଭାରତର ନରପତିମାନଙ୍କ ଆଦର୍ଶରେ ଅନୁପ୍ରାଣିତ । ସମସ୍ତ ପ୍ରକାର ମାଦକ ଦ୍ରବ୍ୟ, ଏପରିକି, ପାନ, ଚା, କଫିର ମଧ ସେ ବିରାଟ ବିରୋଧୀ । ଯୁବରାଜଙ୍କ ବିବାହ ସମୟରେ ବାଙ୍ଗାଲୋର୍‌ରେ ବିରାଟ ଆଡ଼ମ୍ବର ସହିତ ବିଲାତ ଓ ଦେଶୀ ଢ଼ଙ୍ଗରେ ଭୋଜିସଭା ହୋଇଥିଲେ ମଧ କୌଣସି ପ୍ରକାର ମାଦକ ଦ୍ରବ୍ୟରେ ଏକ ପଇସା ସୁଦ୍ଧା ଅତିଥି ଆପ୍ୟାୟନରେ ଖର୍ଚ୍ଚ ନ କରିବାକୁ ସେ ଦେୱାନ୍ ଓ ଜେନେରାଲ ମ୍ୟାନେଜରଙ୍କୁ କଠୋର ନିର୍ଦ୍ଦେଶ ଦେଇଥିଲେ ।

ଭାଷାକୋଷର ପ୍ରଥମ ଖଣ୍ଡ ଉତ୍ସର୍ଗ କଲାବେଳେ ସ୍ୱର୍ଗୀୟ ଗୋପାଳ ଚନ୍ଦ୍ର ପ୍ରହରାଜ ମହାରାଜାଙ୍କୁ "ଦାନବୀର, ଯୁଦ୍ଧବୀର ଓ କର୍ମବୀର" ଭାବେ ଅଭିହିତ କରି ସେ "ବିଶାଳ ଉତ୍କଳ-ରାଜନ୍ୟ-ମୌଳିମଣ୍ଡନ, ଗଜପତି-ବଂଶାବତଂସ, ଶୌର୍ଯ୍ୟ, ବୀର୍ଯ୍ୟ, ଔଦାର୍ଯ୍ୟ, ଗାମ୍ଭୀର୍ଯ୍ୟାଦି ସକଳ-ଗୁଣ-ନିଧାନ, ମାତୃଭୂମି-ହିତୈକବ୍ରତ, ଉତ୍କଳ-ସାହିତ୍ୟାବର୍ଣ୍ଣ-କର୍ଣ୍ଣଧାର, ଦାନ-ଧ୍ୟାନ-ସର୍ବସ୍ୱ, ପ୍ରଜାରଞ୍ଜନ-ତତ୍ପର ଓ ଦେଢ଼ କୋଟି ଓଡ଼ିଆଙ୍କର ଆଦରର ପ୍ରତିମା"ବୋଲି ବର୍ଣ୍ଣନା କରିଥିଲେ । ସର୍ବଗ୍ରାସୀ କାଳ ଯଥାର୍ଥରେ ତାଙ୍କ ଉକ୍ତିର ସତ୍ୟତା ପ୍ରତିପାଦନ କରିଅଛି ।



# ନବ-ଉତ୍କଳ ଗଠନରେ ପାରଳା ମହାରାଜାଙ୍କ ଅବଦାନ

୧୫୬୮ ଖ୍ରୀଷ୍ଟାବ୍ଦରେ ବଙ୍ଗଳାର ଆଫଗାନ ଶାସକ ସୁଲେମାନ ଓଡ଼ିଶାର ଶେଷ ସ୍ୱାଧୀନ ହିନ୍ଦୁରାଜା ମୁକୁନ୍ଦଦେବଙ୍କୁ ପରାସ୍ତ କରି ଓଡ଼ିଶା ଦଖଲ କଲେ । ଏହା ପରେ ପ୍ରାୟ ଦୀର୍ଘ ଚାରି ଶତାବ୍ଦୀ କାଳ ଓଡ଼ିଶା ଛିନ୍ନ ବିଚ୍ଛିନ୍ନ ହୋଇ ବିଭିନ୍ନ ଶାସକମାନଙ୍କ ହାତରେ ୧୭୫୧ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ମୁସଲମାନମାନଙ୍କ ହାତରୁ ଯାଇ ମରହଟ୍ଟାମାନଙ୍କ ହାତରେ ପଡ଼ିଲା । ମୁସଲମାନ ଓ ମରହଟ୍ଟା ରାଜତ୍ୱ ଓଡ଼ିଶା ପକ୍ଷେ ନିରବଚ୍ଛିନ୍ନ ଦୁର୍ଦ୍ଦିନ ଥିଲା ବୋଲି କହିଲେ ଚଳେ । ଓଡ଼ିଆମାନେ କ୍ରମେ ନିଜର ଜାତୀୟତା ଭୁଲି ଯିବାକୁ ବସିଲେ । ତଥାପି ଏକ ଭାଷା, ଏକ ସାହିତ୍ୟ ସେମାନଙ୍କୁ ଏକ ଦୃଢ଼ ବନ୍ଧନରେ ଗ୍ରଥିତ କରି ରଖିଥିଲା । ଇଂରେଜମାନେ ୧୮୦୩ ଖ୍ରୀଷ୍ଟାବ୍ଦରେ ଇଷ୍ଟ ଇଣ୍ଡିଆ କମ୍ପାନୀ ଜରିଆରେ ମରହଟ୍ଟାମାନଙ୍କଠାରୁ ଓଡ଼ିଶା ଅଧିକାର କଲା ବେଳକୁ ଓଡ଼ିଆ ଭାଷା-ଭାଷୀ ଅଞ୍ଚଳ ମାନ୍ଦ୍ରାଜ, ମଧ୍ୟପ୍ରଦେଶ, ଛୋଟନାଗପୁର ଓ ବଙ୍ଗଳା ଏହିପରି ଚାରିଗୋଟି ପ୍ରଦେଶରେ ବାଣ୍ଟି ହୋଇ ରହିଥିଲା । ଯେଉଁ ଓଡ଼ିଶାକୁ ଇଂରେଜମାନେ ୧୮୦୩ ଖ୍ରୀଷ୍ଟାବ୍ଦରେ ଅଧିକାର କଲେ, ତାହା କେବଳ କଟକ, ପୁରୀ, ବାଲେଶ୍ୱର, ଏହି ଉପକୂଳବର୍ତ୍ତୀ ଅଞ୍ଚଳକୁ ବୁଝାଉଥିଲା । ଏହି ଇଂରେଜ ଅଧିକୃତ ଓଡ଼ିଶାକୁ ପୁଣି ବଙ୍ଗ ପ୍ରେସିଡ଼େନ୍‌ସି ସହିତ ମିଶାଯିବାରୁ ଅନ୍ୟ ବିଚ୍ଛିନ୍ନ ଅଞ୍ଚଳ ପରି ସେଠାରେ ଥିବା ଓଡ଼ିଆମାନଙ୍କର ମଧ୍ୟ ନାନା ପ୍ରକାର ଅସୁବିଧା ଘଟୁଥିଲା । ଇଂରେଜ ଶିକ୍ଷାର ପ୍ରସାର ସଙ୍ଗେ ଜାତୀୟତାର ପ୍ରଭାବ ବଢ଼ିଲା । ୧୮୬୬ଖ୍ରୀଷ୍ଟାବ୍ଦର ନ'ଅଙ୍କ ଦୁର୍ଭିକ୍ଷ ପରେ ସୁଶାସନ ପ୍ରବର୍ତ୍ତନ ନିମିତ୍ତ ତତ୍‌କାଳୀନ ଭାରତ ମନ୍ତ୍ରୀ ସାର୍ ଷ୍ଟିଫୋର୍ଡ଼ ନର୍ଥକୋଟ୍ ବଙ୍ଗଳାରୁ ଓଡ଼ିଶାକୁ ପୃଥକ୍ କରିବାର ପରିକଳ୍ପନା ପ୍ରଥମେ ପ୍ରକାଶ କରିଥିଲେ । ଦୁର୍ଭିକ୍ଷର ଭୟାବହତା ନିମିତ୍ତ ସେ ପ୍ରଚଳିତ ଶାସନ ବ୍ୟବସ୍ଥାର ଅଯୋଗ୍ୟତାକୁ ଦାୟୀ କରିଥିଲେ । ଏହା ପ୍ରତ୍ୟାଖ୍ୟାନ କରା ଯାଇଥିଲେ ମଧ୍ୟ ପରବର୍ତ୍ତୀ କାଳରେ ଏହି ଚିନ୍ତାଧାରାର ଅନ୍ତର୍ନିହିତ ସ୍ୱଦେଶବତ୍ସଳତା ଓଡ଼ିଶାର ଜାତୀୟ ଭାବଧାରାର ସ୍ରୋତକୁ ପ୍ରଭାବିତ କରିଥିଲା ।

୧୮୬୭ ଖ୍ରୀଷ୍ଟାବ୍ଦରେ ବାଲେଶ୍ୱରର ରାଜା ବୈକୁଣ୍ଠନାଥ ଦେବ ଓ କମିଶନରଙ୍କ ଅଫିସ୍‌ର ସୁପରିଂଟେଣ୍ଡେଣ୍ଟ ବିଚିତ୍ରାନନ୍ଦ ପଟ୍ଟନାୟକ ସମଗ୍ର ଉତ୍କଳଭାଷୀ

ଅଞ୍ଚଳର ଏକୀକରଣ ନିମିତ୍ତ କେନ୍ଦ୍ର ସରକାରଙ୍କୁ ନିବେଦନ କରିଥିଲେ । ୧୮୭୩ଖ୍ରୀଷ୍ଟାବ୍ଦଠାରୁ ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟ କ୍ରମବର୍ଦ୍ଧମାନ ଜନମତର ଚାପ ଫଳରେ ଓଡ଼ିଆ ଭାଷାକୁ ଗ୍ରହଣ କରିଥିଲେ ଓ ୧୮୯୦ଖ୍ରୀଷ୍ଟାବ୍ଦରେ ସରକାରୀ ଅଫିସ୍ ଓ ଅଦାଲତମାନଙ୍କରେ ଓଡ଼ିଆ ଭାଷା ପ୍ରଚଳନ ନିମିତ୍ତ ଆଦେଶ ଦିଆଯାଇଥିଲା । ମାତ୍ର ଏହା କାର୍ଯ୍ୟକାରୀ କରିବାରେ ବାଧା ଜାତ ହେଉଥିଲା ।

ଓଡ଼ିଶା ଅଧିକାରର ଠିକ୍ ଏକ ଶତାବ୍ଦୀପରେ ୧୯୦୩ ଖ୍ରୀଷ୍ଟାବ୍ଦରେ ପ୍ରଥମେ ଭାରତର କେନ୍ଦ୍ର ସରକାର ବିକ୍ଷିପ୍ତ ଓଡ଼ିଆଭାଷୀ ଅଞ୍ଚଳଗୁଡ଼ିକର ଏକୀକରଣ ଦିଗରେ ଅନୁମୋଦନ ପ୍ରଦାନ କଲେ । ସମଗ୍ର ଓଡ଼ିଆଭାଷୀ ଅଞ୍ଚଳଗୁଡ଼ିକ ଏକ ଶାସନାଧୀନରେ ଆଣିବାର ପରିକଳ୍ପନା ପ୍ରଥମେ ଏହିଠାରୁ ଲୋକପ୍ରିୟ ହେବାକୁ ଲାଗିଲା । ୧୯୦୨ ଖ୍ରୀଷ୍ଟାବ୍ଦରେ ଗଞ୍ଜାମ ଓଡ଼ିଆମାନଙ୍କର ପ୍ରଥମ ଜାତୀୟ ସମ୍ମିଳନୀ ଗଞ୍ଜାମର ପ୍ରଥମ ଓଡ଼ିଆ ଗ୍ରାଜୁଏଟ୍ ପାରଳାର ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହୋଇ ପରବର୍ଷ ତାହା ସମଗ୍ର ଉତ୍କଳଭାଷୀ ଅଞ୍ଚଳର ପ୍ରକାଣ୍ଡ ସମ୍ମିଳନୀ ଆକାର ଧାରଣ କରିଥିଲା । ପୁଣି ୧୯୦୩ ମସିହାରେ ମାନ୍ଦ୍ରାଜଠାରେ ଲାଲମୋହନ ଘୋଷଙ୍କ ସଭାପତିତ୍ୱରେ କଂଗ୍ରେସର ଯେଉଁ ବାର୍ଷିକ ଅଧିବେଶନ ହେଲା, ସେଥିରେ ଗଞ୍ଜାମ ଜିଲ୍ଲା ଓ ବିଶାଖପାଟଣାକୁ ମାନ୍ଦ୍ରାଜରୁ ଆଣି ଓଡ଼ିଶାରେ ମିଶାଇବା କଳ୍ପନା ବିରୁଦ୍ଧରେ ଗୋଟିଏ ପ୍ରସ୍ତାବ ଗୃହୀତ ହୋଇଗଲା । ଏହାଦେଖି ଓଡ଼ିଶାର ବରପୁତ୍ର ଉତ୍କଳ-ଗୌରବ ମଧୁସୂଦନ କଂଗ୍ରେସ ସହିତ ଓଡିଶାର ସମ୍ପର୍କ ଛିଣ୍ଡାଇ ଦେଇ ଓଡ଼ିଶା ଜାତିର ପୁରାତନ ଗୌରବର ଉଦ୍ଧାର ଲାଗି ଉତ୍କଳ ସମ୍ମିଳନୀ ଗଢ଼ିଲେ । ଓଡ଼ିଆଭାଷୀ ଅଞ୍ଚଳଗୁଡ଼ିକ ଏକୀକରଣ ନିମିତ୍ତ ଏହାର ଉଦ୍ୟମ ଅବିସ୍ମରଣୀୟ ।

ଏ ଦିଗରେ ପ୍ରଥମେ ସଫଳତାର ଲକ୍ଷଣ ୧୯୧୨ ଖ୍ରୀଷ୍ଟାବ୍ଦରେ ଦେଖିବାକୁ ମିଳିଲା । ସେତେବେଳେ ବଙ୍ଗଠାରୁ ବିଚ୍ଛିନ୍ନ ହୋଇ ଓଡ଼ିଶା ବିହାର ସହିତ ମିଶି ବିହାର-ଓଡ଼ିଶା ନାମକ ପ୍ରଦେଶ ଅଧୀନରେ ରହିଲା । ବଙ୍ଗଳାରେ ଥିଲାବେଳେ ଓଡ଼ିଆଙ୍କର ଉପରେ ନିର୍ଯ୍ୟାତନା ହେଉଥିଲା, ତାହା ଏହା ଫଳରେ ଯଥେଷ୍ଟ ହ୍ରାସ ପାଇଲେ ମଧ୍ୟ ନୂତନ ପ୍ରଦେଶ ଗଠନ ଦିଗରେ ଉତ୍ସାହ ପୂର୍ବପରି ରହିଲା । ଲର୍ଡ଼ ମଣ୍ଟେଗୁ ଓ ଚେମସ୍‌ଫୋର୍ଡ଼ ଓଡ଼ିଆଙ୍କ ଦାବୀର ଯଥାର୍ଥତା ଉପଲବ୍ଧି କରିଥିଲେ । ଭାଷା ଭିତ୍ତିରେ ପ୍ରଦେଶ ଗଠନ ଦିଗରେ ସେମାନେ ପ୍ରତିଷ୍ଠିତ ପ୍ରଦେଶଗୁଡ଼ିକର ସୀମାର ପରିବର୍ତ୍ତନ ନିମିତ୍ତ ଇଚ୍ଛା ପ୍ରକାଶ କରିଥିଲେ । ମାତ୍ର, ଏ ଦିଗରେ ସ୍ୱତଃ କାର୍ଯ୍ୟାନୁଷ୍ଠାନ ନକରି ସେମାନେ ସଂପୃକ୍ତ ପ୍ରାଦେଶିକ

ସରକାରମାନଙ୍କୁ ସୁଯୋଗ ଛାଡ଼ି ଦେଲେ । ନୂତନ ମଣ୍ଟଫୋର୍ଡ ଶାସନ ବ୍ୟବସ୍ଥା ୧ ୯ ୨ ୦ ଖ୍ରୀଷ୍ଟାବ୍ଦରେ ପ୍ରବର୍ତ୍ତିତ ହେବାକୁ ଯାଉଥିଲା । ସେମାନଙ୍କର ବିଶ୍ୱାସ ଥିଲା ଯେ ନୂତନ ବ୍ୟବସ୍ଥା ଫଳରେ ଗଠିତ ପ୍ରାଦେଶିକ ସରକାରମାନେ ଏ ଦିଗରେ ଜନମତକୁ ସମ୍ମାନ ଦେଖାଇ ସୁଚିନ୍ତିତ ସମାଧାନର ପନ୍ଥା ନିରୂପଣ କରିବେ । ମଧୁବାବୁ ମନ୍ତ୍ରୀ ଥିଲାବେଳେ ୧ ୯ ୨ ୨ ଖ୍ରୀଷ୍ଟାବ୍ଦରେ ବିହାର-ଓଡ଼ିଶା ବ୍ୟବସ୍ଥାପକ ସଭାରେ ବାରମ୍ବାର ଆଲୋଚନା ସତ୍ତ୍ୱେ କୌଣସି ନିଷ୍ପତ୍ତି ଗ୍ରହଣ କରାଯାଇପାରିଲା ନାହିଁ । ସେମାନଙ୍କ ରାଜ୍ୟର କୌଣସି ଓଡ଼ିଆଭାଷୀ ଅଞ୍ଚଳ ପରିତ୍ୟାଗ ନ କରିବାକୁ ମାନ୍ଦ୍ରାଜ ସରକାର ଦୃଢ଼ ପରିକର ଥିଲେ । ପକ୍ଷାନ୍ତରରେ, ମଧ୍ୟପ୍ରଦେଶ ସରକାର ଆଲୋଚନା ଫଳରେ ଏହି ବିଷୟରେ ସମାଧାନ ପନ୍ଥା ଗ୍ରହଣ କରିବାକୁ ପ୍ରସ୍ତୁତ ଥିଲେ । ଭାରତ ସରକାର ଏହି ସମୟରେ ୧ ୯ ୨ ୪ ଖ୍ରୀଷ୍ଟାବ୍ଦରେ ମାନ୍ଦ୍ରାଜ ପ୍ରଦେଶର ଉତ୍ତରାଞ୍ଚଳର ଓଡ଼ିଆଭାଷୀ ଲୋକମାନଙ୍କର ମନୋଭାବ ଜାଣିବାକୁ ଓ ସ୍ଥାନୀୟ ଜନମତ ପରୀକ୍ଷା କରିବାକୁ ଫିଲିପ-ଡ଼ଫ କମିଟି ନିଯୁକ୍ତି କରିଥିଲେ । ସେମାନେ ପାରଳାଖେମୁଣ୍ଡି ପରିଦର୍ଶନ କରିଥିଲେ । ସେମାନେ ମତ ଦେଲେ ଯେ ଶିକ୍ଷିତ ଓଡ଼ିଆମାନେ ଦୀର୍ଘଦିନ ଧରି ଦାବୀ କରି ଆସୁଛନ୍ତି ଯେ ଓଡ଼ିଆଭାଷୀ ଅଞ୍ଚଳମାନ ଏକ ଶାସନାଧୀନରେ ରହୁ । ସେମାନେ ମାନ୍ଦ୍ରାଜ ପ୍ରଦେଶର ବିଶାଖାପାଟଣା ଓ ଗଞ୍ଜାମ ଜିଲ୍ଲା ଓଡ଼ିଆଭାଷୀ ପାର୍ବତ୍ୟ ଅଞ୍ଚଳ ଓଡ଼ିଶା ସହିତ ମିଶାଇ ଦେବାର ପ୍ରସ୍ତାବ ଦେଇଥିଲେ । ଉପକୂଳବର୍ତ୍ତୀ ଅଞ୍ଚଳରେ ତେଲୁଗୁ ଶିକ୍ଷାର ପ୍ରଭାବ ପଡୁଥିବାରୁ ବହୁତ ଓଡ଼ିଆଭାଷୀ ଅଞ୍ଚଳ ଏଥିରେ ସ୍ଥାନ ପାଇ ନ ଥିଲା ।

ଏହାର ପରବର୍ତ୍ତୀ ପଦକ୍ଷେପ ୧ ୯ ୨ ୭ ଖ୍ରୀଷ୍ଟାବ୍ଦରେ ସାଇମନ କମିଶନ୍ ନିଯୁକ୍ତ ସମୟରେ ପରିଲିକ୍ଷିତ ହୋଇଥିଲା । ଏହି କମିଶନର ଏକ ସବ୍ କମିଟି ମେଜର ଅଟ୍‌ଲିଙ୍କ (ପରେ ଇଂଲଣ୍ଡର ସ୍ୱନାମଧନ୍ୟ ପ୍ରଧାନମନ୍ତ୍ରୀ) ଅଧିନାୟକତ୍ୱରେ ନିଯୁକ୍ତି ହୋଇଥିଲା । ଏହି ସବ କମିଟି ଓଡ଼ିଶାର ଜାତୀୟ ଆକାଙ୍‌କ୍ଷା ସହିତ ଏକମତ ହୋଇ ସମଗ୍ର ଓଡ଼ିଆଭାଷୀ ଅଞ୍ଚଳଗୁଡ଼ିକୁ ଏକ ଶାସନାଧୀନରେ ଏକ ପ୍ରଦେଶରୂପେ ଗଢ଼ା ଯିବାକୁ ମତ ଦେଇଥିଲେ । ସାଇମନ କମିଶନର ନିର୍ଦ୍ଧାରିତ ସୂତ୍ର ଅନୁସାରେ ଏହି ପ୍ରଦେଶ ଗଠିତ ହୋଇ ନ ପାରିଲେ ଓଡ଼ିଆମାନେ ମାନ୍ଦ୍ରାଜ, ବଙ୍ଗଳା, ବିହାର ଓଡ଼ିଶା ଓ ମଧ୍ୟପ୍ରଦେଶରେ ବିଚ୍ଛିନ୍ନ ହୋଇ ପଡ଼ି ରହିଥାନ୍ତେ ଓ କୌଣସିଠାରେ ଶାସନରେ ସେମାନଙ୍କର ଦୃଢ଼ କର୍ତ୍ତୃତ୍ୱ ରହି ନ ଥାନ୍ତା-କମିଶନ ଏହା ସ୍ପଷ୍ଟ ଭାବରେ ଓ ଦୂରଦୃଷ୍ଟିର ସହିତ ଦେଖି ପାରିଥିଲେ । ଏହା ପରେ ଭାରତ ବର୍ଷରେ ପ୍ରାଦେଶିକ

ସ୍ୱତନ୍ତ୍ରତା ଓ ରାଷ୍ଟ୍ରସଂଘ ଗଠନ ବ୍ୟବସ୍ଥା ନିମିତ୍ତ ଉଦ୍ୟମ କରିବାକୁ ବିଲାତରେ ଗୋଲଟେବୁଲ ବୈଠକ ବସିଲା । ୧୯୩୦ ଖ୍ରୀଷ୍ଟାବ୍ଦରେ ପ୍ରଥମ ଗୋଲଟେବୁଲ ବୈଠକରେ ଓଡିଆଙ୍କ ଦାବୀ ନିଷ୍ଠାପରତା, ଦୃଢ଼ତା ଓ ବଳିଷ୍ଠତାର ସହିତ ଉପସ୍ଥାପିତ କରିବାକୁ ଜଣେ ଶୀର୍ଷସ୍ଥାନୀୟ ନେତାଙ୍କର ଆବଶ୍ୟକତା ଅନୁଭୂତ ହେଉଥିଲା । ମଧୁବାବୁ ବୃଦ୍ଧ ହୋଇ ଯାଇଥିଲେ । କଂଗ୍ରେସ ନେତାମାନେ ସାଇମନ କମିଶନ ଘୋର ବିରୋଧୀ ଥିଲେ । ତେଣୁ କଂଗ୍ରେସ ସହିତ ସଂପୃକ୍ତ କୌଣସି ନେତା ସାଇମନ କମିଶନ ବିରୁଦ୍ଧରେ ବିକ୍ଷୋଭ ଚାଲୁଥିବା ବେଳେ ଓଡିଆମାନଙ୍କ ପକ୍ଷରୁ କମିଶନଙ୍କୁ ଅଭିନନ୍ଦନ ଦେବା ଏକ ବିଶେଷ ଘଟଣାରୂପେ ଦେଶର ଚାରିଆଡେ ଚମକ ପକାଇଥିଲା ।

ପାରଳାଖେମୁଣ୍ଡିର ମହାରାଜା ଶ୍ରୀ ଶ୍ରୀ ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ସେତେବେଳକୁ ମହାରାଜା ଉପାଧି ପାଇ ନ ଥାନ୍ତି । ସେ ମାନ୍ଦ୍ରାଜ ବ୍ୟବସ୍ଥାପକ ସଭ୍ୟ ଥିଲେ । ଓଡିଶାର ଦାବୀ ଉପସ୍ଥାପିତ କରିବା ନିମିତ୍ତ ବିହାର-ଓଡିଶା କାଉନସିଲ ଦ୍ୱାରା ନିର୍ବାଚିତ ହୋଇ ସେ ପ୍ରଥମ ଗୋଲ ଟେବୁଲ ବୈଠକରେ ଯୋଗଦାନ କରିଥିଲେ । ଏହା ପୂର୍ବରୁ ୧୯୧୪ ଖ୍ରୀଷ୍ଟାବ୍ଦ ଡିସେମ୍ବର ମାସରେ ପାରଳାଖେମୁଣ୍ଡିରେ ଶ୍ରୀ ବିକ୍ରମ ଦେବ ବର୍ମାଙ୍କ ସଭାପତିତ୍ୱରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀର ଦଶମ ଅଧିବେଶନରେ ଯୋଗଦେଇ ସେ ପ୍ରଥମଥରପାଇଁ ରାଜନୀତିରେ ଭାଗ ନେଇଥିଲେ । ମାନ୍ଦ୍ରାଜରୁ ପ୍ରସିଦ୍ଧ ନିଉଇଂଟନ୍ ଆଦର୍ଶ ରାଜକୁମାର ବିଦ୍ୟାଳୟରେ ଆଠବର୍ଷ ଶିକ୍ଷାଲାଭ କରି ସେ ସ୍ୱଦେଶ ପ୍ରତ୍ୟାବର୍ତ୍ତନ କରିଥିଲେ ଓ ତା'ର ପୂର୍ବ ବର୍ଷ ୧୯୧୩ ମସିହା ତା ୨୬ରିଖ ଦିନ ସେ କୋର୍ଟ ଅଫ୍ ୱାର୍ଡସଠାରୁ ରାଜ୍ୟ ପରିଚାଳନା ଭାର ଗ୍ରହଣ କରିଥିଲେ । ସମ୍ମିଳନୀର ସମସ୍ତ ଆୟୋଜନ ଓ ଆମୂଳଚୂଳ ସୁବନ୍ଦୋବସ୍ତ ତାଙ୍କର ଗଭୀର ଜାତୀୟତାବୋଧ ଓ ଅନୁପମ ଉତ୍ସାହର ଫଳ ଥିଲା । ସେ ନିଜେ ପୂର୍ବ ବର୍ଷ ପୁରୀଠାରୁ ପାରଳାଖେମୁଣ୍ଡିକୁ ସମ୍ମିଳନୀ ଡକାଇ ଆଣିଥିଲେ । ପୁନଶ୍ଚ ସେ ନିଜେ ଅଳ୍ପ ବୟସ୍କ ଥିବା ଯୋଗୁଁ ଓ ସମ୍ମିଳନୀ ପରି ଦାୟିତ୍ୱସମ୍ପନ୍ନ ଅନୁଷ୍ଠାନରେ ପୂର୍ବରୁ ସ୍ୱଭାବସୁଲଭ ଉଦାରତା ଦେଖାଇ ସେ ଅଭ୍ୟର୍ଥନା ସଭାର ସଭାପତି ପଦ ଗ୍ରହଣ କରି ନଥିଲେ । ମାତ୍ର ସମ୍ମିଳନୀର ସର୍ବ ପ୍ରକାର ଦାୟିତ୍ୱ ଗ୍ରହଣ କରିବାକୁ ପ୍ରତିଶ୍ରୁତି ଦେଇଥିଲେ । ଅଭ୍ୟର୍ଥନା ସମିତି ଗଠନ ବୈଠକରେ ଭାଷଣକ୍ରମେ ସେ କହିଥିଲେ "ଏପରି ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟରେ ହସ୍ତକ୍ଷେପ କରିବା ପୂର୍ବରୁ ଜାତୀୟ ଓ ବ୍ୟକ୍ତିଗତ ଜୀବନର ପ୍ରଭେଦ ସ୍ପଷ୍ଟରୂପେ ବୁଝିବାକୁ ହେବ । ଜାତୀୟ କାର୍ଯ୍ୟ କରିବା ସମୟରେ ବ୍ୟକ୍ତିଗତ ମନୋମାଳିନ୍ୟକୁ ମନରେ ସ୍ଥାନ

ଦେଲେ ଜାତୀୟ କାର୍ଯ୍ୟରେ ବ୍ୟାଘାତ ଘଟିପାରେ । ଜାତୀୟ କାର୍ଯ୍ୟ ସାଧନ କରିବାରେ ବ୍ୟକ୍ତିଗତ ମନୋମାଳିନ୍ୟ ପରିତ୍ୟାଗ କରିବା ପ୍ରତ୍ୟେକ ଦେଶହିତୈଷୀର କର୍ତ୍ତବ୍ୟ । ଇତିହାସରୁ ଜଣାଯାଏ ଯେ ଯେଉଁ ଦେଶରେ ବ୍ୟକ୍ତିଗତ ଭାବର ଆଧିକ୍ୟ ଥାଏ, ସେହି ଦେଶର ପତନ ଓ ଯେଉଁ ଦେଶରେ ଜାତୀୟ ଭାବର ଆଧିକ୍ୟ ଥାଏ, ସେହି ଦେଶ ଉନ୍ନତି ପଥରେ ଅଗ୍ରସର ହୁଏ । ଅତଏବ ଏହାମନେ ରଖି ସମସ୍ତେ ମିଳିମିଶି କାର୍ଯ୍ୟ କରିବା ନିତାନ୍ତ ଆବଶ୍ୟକ ।”

ସମ୍ମିଳନୀର ଯାବତୀୟ ଦାୟିତ୍ୱ ସେ ଗ୍ରହଣ କରିଥିଲେ । ସମ୍ମିଳନୀ ମଣ୍ଡପ ନିର୍ମାଣ, ଆଗନ୍ତୁକ ଅତିଥି ଓ ପ୍ରତିନିଧିମାନଙ୍କର ଅଭ୍ୟର୍ଥନା ଓ ଚର୍ଚ୍ଚା ସ୍ପେସାଲ ଟ୍ରେନ୍, ମଟର ଓ ଘୋଡ଼ାଗାଡ଼ିର ଆୟୋଜନପାଇଁ ଯାବତୀୟ ବ୍ୟୟ ବହନ ନିମିତ୍ତ ସେ ରାଜକୋଷରୁ ଦଶ ହଜାର ଟଙ୍କା ଦାନ କରିଥିଲେ । ସମ୍ମିଳନୀ ସମୟରେ ପାଞ୍ଚଦିନ ସକାଶେ ନିଜ କଚେରୀ ବନ୍ଦ ରଖି ରାଜ୍ୟର ସମସ୍ତ କର୍ମଚାରୀମାନଙ୍କୁ ଆଗନ୍ତୁକମାନଙ୍କର ପରିଚର୍ଯ୍ୟାରେ ନିୟୋଗ କରିଥିଲେ । ରାଜାଙ୍କ କଲେଜ, ଛାତ୍ରାବାସ, ବାଳକ ଓ ବାଳିକା ବିଦ୍ୟାଳୟ, ମଠ ଓ ୟୁରୋପୀୟ ଅତିଥିଶାଳା ସେ ଆଗନ୍ତୁକ ଭଦ୍ରବ୍ୟକ୍ତିମାନଙ୍କରହ ସେବାରେ ଲଗାଇଦେଇଥିଲେ । ନିଜର ଗଜପତି ପ୍ରେସ ସମ୍ମିଳନୀ ସଂକ୍ରାନ୍ତ ସକଳ କାର୍ଯ୍ୟରେ ବ୍ୟବହୃତ ହେଉଥିଲା । ମଧୁସୂଦନ, ଗୋପବନ୍ଧୁ, ବ୍ରଜସୁନ୍ଦର ପ୍ରଭୃତି ଓଡ଼ିଶାର ବିଖ୍ୟାତ ମନୀଷୀମାନେ ଏହି ଅଧିବେଶନରେ ଯୋଗଦାନ କରି ମହାରାଜାଙ୍କର ଦାୟିତ୍ୱଜ୍ଞାନ ଓ ସଂଗଠନ ଶକ୍ତି ଦେଖି ଅଭିଭୂତ ହୋଇ ଯାଇଥିଲେ ଓ ଉତ୍କଳ ଗୌରବ ମଧୁସୂଦନ ତାଙ୍କୁ Head volunteer ଆଖ୍ୟା ଦେଇଥିଲେ । ଏହି ଅଧିବେଶନ ପରେ ସମଗ୍ର ଓଡ଼ିଶାରେ ମହାରାଜାଙ୍କର ଖ୍ୟାତିବ୍ୟାପି ଯାଇଥିଲା ଓ ତାଙ୍କର ସଂଗଠନ ଶକ୍ତିର ପରିଚୟ ପାଇ ଅନ୍ୟାନ୍ୟ ଓଡ଼ିଆ ନେତାମାନେ ସେ ବିହାର-ଓଡ଼ିଶା ପ୍ରଦେଶର ଅଧିବାସୀ ନ ଥିଲେ ମଧ୍ୟ ୧୯୩୦ ମସିହାରେ ତାଙ୍କୁ ଲଣ୍ଡନଠାରେ ଅନୁଷ୍ଠିତ ପ୍ରଥମ ଗୋଲ ଟେବୁଲ ବୈଠକକୁ ପଠାଇଥିଲେ ।

୧୯୩୦ ମସିହାରେ ବିଲାତରେ ଗୋଲ ଟେବୁଲ ବୈଠକରେ ପ୍ରତିନିଧି ଭାବରେ ଯୋଗଦେବାକୁ ଯିବା ସମୟରେ କନିକା ରାଜାସାହେବ ସ୍ୱର୍ଗତଃ ସାର୍ ରାଜେନ୍ଦ୍ର ନାରାୟଣଙ୍କ ଦ୍ୱାରା ପ୍ରଣୋଦିତ ହୋଇ ଚିକିଟିର ତତ୍କାଳୀନ ରାଜାସାହେବ ମହାରାଜାଙ୍କର ପୁତ୍ରସ୍ଥାନୀୟ ଥିବା ଯୋଗୁଁ ତାଙ୍କୁ କହିଥିଲେ ମହାରାଜା ତ ବିଲାତ ଯାଇଥନ୍ତି, ଓଡ଼ିଶା ଦେଶ ମିଶ୍ରଣ ଯେପରି ଭୁଲି ନ ଯିବେ । ପୁତ୍ରପ୍ରତି ଚିକିଟି ରାଜାସାହେବଙ୍କର ଏହି

ପ୍ରକାର ଅଳି ମହାରାଜାଙ୍କୁ ଦେଶ ମିଶ୍ରଣ ନିମିତ୍ତ ବିଲାତରେ ଆନ୍ଦୋଳନ କରିବାକୁ ପ୍ରଥମ ପ୍ରେରଣା ଦେଲା । ସେଠାରେ ସେ ଓଡ଼ିଆଙ୍କର ଦାବୀ ଦୃଢ଼ତା ଓ ନମ୍ରତାର ସହିତ ଉପସ୍ଥାପିତ କରିଥିଲେ ।

ଗୋଲଟେବୁଲ ବୈଠକରେ ୧୯୩୧ ମସିହା ଜାନୁଆରୀ ତା ୧୬ରିଖରେ ସିନ୍ଧୁ ସବ୍‌କମିଟିର ବୈଠକ ବସିଥିଲା । ସେଥିରେ ସ୍ୱତନ୍ତ୍ର ସିନ୍ଧୁ ପ୍ରଦେଶ ଗଠନ କରିବା ବିଷୟ ଆଲୋଚନା ହେବାବେଳେ ପାରଳା ମହାରାଜା ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ପ୍ରସଙ୍ଗ ଉତ୍ଥାପନ କଲେ ଏବଂ ସବ୍‌କମିଟିର ଚେ଼ୟାରମ୍ୟାନ ଅଟଲିଙ୍କଠାରେ ଏଥିପାଇଁ ଦାବୀ କଲେ । ପ୍ରଥମେ ଅଟଲି ଅସମ୍ମତି ପ୍ରକାଶ କରିଥିଲେ କିନ୍ତୁ ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ଯୁକ୍ତି ପ୍ରବଳ ହେବାରୁ ସେ ଶେଷରେ ରାଜିହେଲେ ।

୧୯୩୧ ମସିହା ଜାନୁଆରୀ ୧୬ତାରିଖ ସିନ୍ଧୁ କମିଟିର ବୈଠକରେ ପାରଳା ମହାରାଜା ଯେଉଁ ବକ୍ତୃତା ଦେଇଥିଲେ ତାହା ସମସ୍ତଙ୍କୁ ମୁଗ୍ଧକରି ଦେଇଥିଲା । ତାଙ୍କର ଆନ୍ତରିକତା, ଆବେଗ ଓ ଜ୍ୱାଳାମୟୀ ଭାଷା ମନ୍ତ୍ର ସଦୃଶ କାର୍ଯ୍ୟକଲା । ସ୍ୱତନ୍ତ୍ର ପ୍ରଦେଶ ନିର୍ମାତା ରୂପେ ପାରଳା ମହାରାଜାଙ୍କ ଅକ୍ଷୟ ଉଜ୍ଜ୍ୱଳକୀର୍ତ୍ତି ଯୁଗେ ଯୁଗେ ବିରାଜୁଥିବ । ଓଡ଼ିଶା ଇତିହାସରେ ତାଙ୍କର ନାମ ଅମର ରହିଥିବ । ପାରଳାଖେମୁଣ୍ଡି ମହାରାଜା କହିଥିଲେ-

ମହାଶୟ,

ମହାମାନ୍ୟ ସମ୍ରାଟଙ୍କ ଏକ କୋଟି ଓଡ଼ିଆ ପ୍ରଜାଙ୍କ ତରଫରୁ ଏହି ଅବସରେ ସେମାନଙ୍କର ଅତି ଦୀର୍ଘ କାଳରୁ ଚଳି ଆସୁଥିବା ଦୁଃଖ ଜଣାଇବାପାଇଁ ମୁଁ ଦଣ୍ଡାୟମାନ ହୋଇଅଛି । ଏହି ଅଳ୍ପ କେତେଦିନ ତଳେ ଆପଣମାନଙ୍କ ହସ୍ତରେ ମୁଁ ଯେଉଁ ସ୍ମାରକ-ପତ୍ର ଦେଇଥିବା, ବିଶ୍ୱାସ କରୁଛି ଯେ ତାହା ଆପଣଙ୍କମନରେ ଓଡ଼ିଆମାନଙ୍କର ସୁବିଧାଗୁଡ଼ିକର ସମ୍ବନ୍ଧରେ ସମ୍ୟକ ଜ୍ଞାନ ଜନ୍ମାଇ ପାରିଥିବ । ଓଡ଼ିଆମାନେ ଚା଼ରୋଟି ବିଭିନ୍ନ ପ୍ରଦେଶରେ ରହିଛନ୍ତି । ପ୍ରାୟ ୨୫ବର୍ଷରୁ ଉର୍ଦ୍ଧ୍ୱକାଳ ହେବ ଓଡ଼ିଆମାନେ ଏକତ୍ରୀକରଣ ପାଇଁ ଯେଉଁ ଦାବୀ କରି ଆସୁଛନ୍ତି, ତାହାର ଇତିହାସ ବର୍ଣ୍ଣନା କରି ଆପଣମାନଙ୍କୁ କ୍ଳାନ୍ତ କରିବି ନାହିଁ । ଏହି ଆନ୍ଦୋଳନର ସବୁ ବିଷୟ ମୁଁ ଭଲ ଭାବରେ ଅବଗତ ଅଛି । ଆପଣଙ୍କ ଆଗରେ ସବୁ ତଥ୍ୟ ଉପସ୍ଥାପିତ କରିବି । ଓଡ଼ିଆମାନଙ୍କ ନିମନ୍ତେ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ ଦାବୀ ଓଡ଼ିଆମାନଙ୍କର ଏକ ଜୀବନ ମରଣ ସମସ୍ୟା । ସେମାନେ ବାସ କରୁଥିବା ପ୍ରତ୍ୟେକ ପ୍ରଦେଶର ଶେଷ ଭାଗରେ ପଡ଼ିଥିବାରୁ

ତତ୍‌ଜନିତ ଯାବତୀୟ ଅଭାବ ଅସୁବିଧା ଭୋଗ କରୁଛନ୍ତି । ସେମାନେ ଶାସନ କେନ୍ଦ୍ରର ବହୁ ଦୂରରେ ତ ରହୁଛନ୍ତି, ପୁଣି ସବୁଠାରେ ସେମାନେ ଅତୁଳନୀୟ ସଂଖ୍ୟାଲଘୁ ହୋଇ ରହିଛନ୍ତି । ଏମାନଙ୍କ ପ୍ରତି ଆଦୌ ଦୃଷ୍ଟି ପଡୁନାହିଁ । ସେମାନେ ପ୍ରଦେଶମାନଙ୍କରେ କୋଟି କୋଟି ଲୋକଙ୍କ ଭିତରେ ମିଶି ବୁଡ଼ି ଯାଇଛନ୍ତି ।

ମୁଁ ସମସ୍ତ ମାନ୍ୟବର ସଭ୍ୟଙ୍କୁ ନିବେଦନ କରୁଛି, ଓଡ଼ିଆମାନଙ୍କର ଏ ଯେଉଁ ବିଚିତ୍ର ଅବସ୍ଥା ଓ ଦାବୀ ହୋଇଛି ତାକୁ ହୃଦୟଙ୍ଗମ କରନ୍ତୁ । ବିଭିନ୍ନ ସମୟରେ ସରକାରୀ ସଂଗଠନମାନେ ଏ ସମ୍ବନ୍ଧରେ ଯେଉଁ ସୁପାରିଶ କରିଅଛନ୍ତି, ତାହା ମଧ୍ୟ ହୃଦୟଙ୍ଗମ କରନ୍ତୁ । ଆମ୍ଭେମାନେ ଭାଷା ଓ ଜାତି ଭିତ୍ତିରେ ଆମର ନିଜର ଏକ ପ୍ରଦେଶ ଦାବୀ କରୁଛୁ । ଆମ୍ଭେମାନେ ସନ୍ତୋଷ ଓ ଶାନ୍ତି ସହ ଏକ ଜାତୀୟ ପ୍ରଦେଶ ଚାହୁଁ । ଆମ୍ଭେମାନେ ଭାରତୀୟ ଓ ଇଂରେଜ ରାଜନୀତିଜ୍ଞମାନଙ୍କ ପରିକଳ୍ପିତ ଶାସନ ଦ୍ୱାରା ଲାଭବାନ ହେବାକୁ ଚାହୁଁଛୁ । ଏହି ପରିକଳ୍ପନା ଦ୍ୱାରା ଭାରତରେ ଏକ ଜାତି ଓ ଏକ ଭାଷା ଉପରେ ପ୍ରତିଷ୍ଠିତ କେତେକ ଛୋଟ ରାଷ୍ଟ୍ରପୁଞ୍ଜ ଗଠିତ ହେବାର ଆଶା ଆମ ରାଜନୀତିଜ୍ଞମାନେ କରିଛନ୍ତି । ମୁଁ ଆପଣମାନଙ୍କୁ କହି ରଖୁଛି ଯେ ଏକ କୋଟି ଓଡ଼ିଆମାନଙ୍କର ଏକ ସ୍ୱତନ୍ତ୍ର ପ୍ରଦେଶ ବିନା ଏହି ସମ୍ମିଳନୀରେ ଆପଣମାନେ ସ୍ୱୟଂଚାଳିତ ପ୍ରଦେଶମାନଙ୍କରେ ସଂସଦୀୟ ରାଜ୍ୟ ଶାସନ ପ୍ରବର୍ତ୍ତନ କରିବାପାଇଁ ଯେଉଁ ଆଶା କରିଛନ୍ତି ତାହା ଓଡ଼ିଆମାନଙ୍କ ପକ୍ଷେ ହିତ ପରିବର୍ତ୍ତେ ଅହିତ ହେବ ।

ଆମ୍ଭେମାନେ ଧୈର୍ଯ୍ୟ ସହକାରେ ଅପେକ୍ଷା କରି ରହିଲୁଣି ଏବଂ ବ୍ରିଟିଶ ସମ୍ରାଟଙ୍କ ପ୍ରତି ଆନୁଗତ୍ୟ ପ୍ରଦର୍ଶନ କରି ତାଙ୍କଠାରୁ ସବୁବେଳେ ନ୍ୟାୟ, ସହାନୁଭୂତି ଓ ନ୍ୟାୟ ବ୍ୟବହାର ଆଶା କରି ଆସୁଛୁ । କିନ୍ତୁ ଏହା ପ୍ରମାଣିତ କରୁଛି ଯେ ଲର୍ଡ କର୍ଜନଙ୍କ ଭାଷାରେ "ଓଡ଼ିଆମାନେ ଆନ୍ଦୋଳନକାରୀ ଜାତିର ଲୋକ ନୁହନ୍ତି । ଯଦି ସେମାନେ ଆନ୍ଦୋଳନକାରୀ ହୋଇ ଥାଆନ୍ତେ, ତାହାହେଲେ ସେମାନେ ସେମାନଙ୍କ ପ୍ରତିବାଦ ଶୁଣିବାପାଇଁ ବାଧ୍ୟ କରି ଥାଆନ୍ତେ । ବର୍ତ୍ତମାନ ଯେପରି ଦେଖାଯାଉଛି ସେମାନଙ୍କୁ ବିନା ଦୟାରେ ବଳି ଦିଆଯାଇଛି ।"

ମୋର ଅନୁମାନ ଠିକ୍ ବୋଲି ମୁଁ ଭାବୁଛି ଯେ, ବର୍ତ୍ତମାନ ଏହି ସମ୍ମିଳନୀ ଯେଉଁସବୁ ସମସ୍ୟାମାନ ବିଚାର କରୁଛନ୍ତି, ସେ ଭିତରେ ଓଡ଼ିଆ ସମସ୍ୟାଟି ଅବିବାଦୀୟ । ଆପଣମାନେ ଜାଣନ୍ତି ସାଇମନ କମିଶନ,ଭାରତ ସରକାରଙ୍କ ଅଭିଲେଖ ସଂପୃକ୍ତ ସବୁ ପ୍ରାଦେଶିକ ସରକାରମାନେ ଏହି ସମସ୍ୟାର ଆଶୁ ସମାଧାନର ଜରୁରୀ

ଆବଶ୍ୟକତା ରହିଥିବା ସ୍ୱୀକାର କରିଛନ୍ତି । ଓଡ଼ିଆମାନଙ୍କର ସ୍ୱତନ୍ତ୍ର ପ୍ରଦେଶ ଗଠନ ପଥରେ ଆର୍ଥିକ ବ୍ୟବସ୍ଥା କେବଳ ଏହାର ଏକମାତ୍ର ପ୍ରତିବନ୍ଧକ ରୂପେ ଠିଆ ହୋଇଛି । ଏହାର ଉତ୍ତରରେ ମୁଁ କହୁଛି ପ୍ରାଚୀନ ସଭ୍ୟତା ଓ କୃଷି ଥିବା ଏକ ମହତ ଐତିହାସିକ ଜାତିକୁ ଧ୍ୱଂସମୁଖରୁ ବଞ୍ଚାଇବାପାଇଁ ଯେତେବେଳେ ଆପଣମାନେ ଯାଉଛନ୍ତି ସେତେବେଳେ ଆର୍ଥିକ ଅବସ୍ଥା ପ୍ରତିବନ୍ଧକ ସୃଷ୍ଟି କରିପାରେ ନାହିଁ । "କୁରୁତାକୁ ଚାହିଁ କପଡ଼ା କାଟ" ପୁରୁଣା ନୀତି ବଚନଟି ପ୍ରୟୋଗ କଲେ ଏହା ବହୁଳାଂଶରେ ବହୁ ଆକାଙ୍‌କ୍ଷିତ ଦାବୀ ଓଡ଼ିଶା ପ୍ରଦେଶ ଗଠନ ସପକ୍ଷରେ ଯିବ । ମୁଁ ପୂର୍ଣ୍ଣମାତ୍ରାରେ ବିଶ୍ୱାସ କରୁଛି ଯେ, କେନ୍ଦ୍ର ସରକାର ବିହାର ଓ ଆସାମ ପ୍ରଦେଶ ଗଠନ ସମୟରେ ପ୍ରଥମେ ଯେଉଁ ଉଦାର ଓ ସହାନୁଭୂତି ମନୋଭାବ ଦେଖାଇଥିଲେ ଓଡ଼ିଶା ପ୍ରଦେଶ ଗଠନରେ ସେହିପରି ବ୍ୟବହାର ଦେଖାଇ ନୂତନ ପ୍ରଦେଶକୁ ରକ୍ଷା କରିବେ । ଏ ସମ୍ବନ୍ଧରେ ମୁଁ ଆପଣଙ୍କ ଦୃଷ୍ଟିକୁ ଆଣିବାକୁ ଚାହେଁ ଯେ, ଓଡ଼ିଶା ପ୍ରଦେଶ ଗଠନରେ ପ୍ରଥମେ ଋଣମୁକ୍ତ ପ୍ରଦେଶଟିଏ ଦେଖିବା । ଏହା କମ୍ ଆଶାଜନକ ସୂଚନା ନୁହେଁ । ପୁଣି ଆସାମ ଗଠିତ ହେଲାବେଳେ ସେହି ପ୍ରଦେଶଟି ନିଅଣ୍ଟିଆ ପ୍ରଦେଶ ହୋଇଥିଲା, କିନ୍ତୁ ଓଡ଼ିଶା ପ୍ରଦେଶର ଉଲ୍ଲେଖଯୋଗ୍ୟ ବେଶି ଆୟ ଦେଖାଯିବ । ଆସାମ ଯେତିକି ଆୟରେ ଆରମ୍ଭ ହୋଇଥିଲା, ସେଥିରୁ ଯଥେଷ୍ଟ ବେଶି ହେବ । ବିହାର-ଓଡ଼ିଶା ସରକାରଙ୍କ ସ୍ମାରକ ପତ୍ରର ପୃ୪୦୪ରେ ଦର୍ଶାଯାଇଛି ଯେ ସେହି ପ୍ରଦେଶର ଓଡ଼ିଶା ଡ଼ିଭିଜନର ବାର୍ଷିକ ଆୟ ପ୍ରାୟ ଏକ କୋଟି ଟଙ୍କା ହେବ । ବିଭିନ୍ନ ସରକାରୀ କମିଟିମାନଙ୍କ ସୁପାରିଶମତେ ସବୁ ଜିଲ୍ଲା ଏହା ସହିତ ମିଶିଗଲେ ଏବଂ ଅନ୍ୟ ପ୍ରଦେଶମାନଙ୍କର ଓଡ଼ିଆ ଭାଷୀ ଅଞ୍ଚଳ ସବୁ ଲୋକମତ ଅନୁସାରେ ମିଶିଗଲେ,ମୋର ଦୃଢ଼ ମତ ଯେ ପ୍ରଦେଶର ଆୟ ନିଶ୍ଚୟ ବୃଦ୍ଧି ପାଇବା । ପ୍ରଦେଶର ଆୟ ପ୍ରାୟ ଦୁଇ କୋଟି ଟଙ୍କା ହୋଇଯିବ । ଏହାଦ୍ୱାରା ଆର୍ଥିକ ଦୁରବସ୍ଥା ଦୂର ହୋଇଯିବ, ଏହି ସମ୍ବନ୍ଧରେ ଗୋଟିଏ ଉଦାହରଣ ଦେଉଛି, ଯେଉଁ ପାର୍ବତ୍ୟ ଅଞ୍ଚଳ ମିଶିବ ସେଥିରୁ ଅବକାରୀ ବିଭାଗର ଆୟ ହେବ । ବିସ୍ତୀର୍ଣ୍ଣ ଅନାବାଦୀ ଜମି, ଯାହାକି ବର୍ତ୍ତମାନ ଉନ୍ନତି କରାଯାଉଛି, ସେଥିରୁ ଓ ମୂଲ୍ୟବାନ ବନ୍ୟଜାତ ଦ୍ରବ୍ୟରୁ ବହୁଧନ ପ୍ରାଦେଶିକ ପାଣ୍ଠିକୁ ମିଳିବ । ପୁଣି ଓଡ଼ିଶାର ବିସ୍ତୀର୍ଣ୍ଣ ଉପକୂଳ ଅଞ୍ଚଳରେ ବହୁ ସଂଖ୍ୟକ ଲୁଣମରା କ୍ଷେତ୍ର ଅଛି, ଏବଂ ଏହି ଉପକୂଳ ସହିତ ବ୍ରିଟିସ୍ ସାମ୍ରାଜ୍ୟର ବିଭିନ୍ନ ସ୍ଥାନକୁ ଜାହାଜ ଚଳାଚଳ ହୋଇ ପାରିବ । ଏଥିରୁ ମଧ୍ୟ ବହୁ ଅର୍ଥ ପ୍ରାଦେଶିକ ପାଣ୍ଠିକୁ ମିଳିବ । ମୁଁ ମଧ୍ୟ ନିର୍ଭର ପ୍ରତିଶ୍ରୁତି ଦେଉଛି, ଆବଶ୍ୟକ ପଡ଼ିଲେ, ଓଡ଼ିଆମାନେ ଭବିଷ୍ୟତ ପ୍ରଦେଶର ଅର୍ଥ ଅନାଟନ

ଦୂର କରିବା ନିମନ୍ତେ ଅଧିକା କର ଦେବାକୁ ପ୍ରସ୍ତୁତ ଅଛନ୍ତି ।

ମୁଁ ଆଉ ବେଶି ଆପଣମାନଙ୍କର ମୂଲ୍ୟବାନ ସମୟ ନେବାକୁ ଚାହୁଁ ନାହିଁ । ଏହି ସମସ୍ୟାର ସମାଧାନର ଅତି ଆବଶ୍ୟକତା ସମ୍ବନ୍ଧରେ ଆପଣଙ୍କ ହୃଦ୍‌ବୋଧ କରାଇ ପାରିଲେ ଯଥେଷ୍ଟ ହେଲା । ଏକ ଅତି ପୁରାତନ, ବିଶାଳ,ସଭ୍ୟ, ସଂସ୍କୃତିସମ୍ପନ୍ନ ଉନ୍ନତଜାତିର ଭାଗ୍ୟ ଆପଣମାନଙ୍କ ହସ୍ତରେ ଅଛି । ଏହାକୁ ଆପଣ ସଂଗଠିତ କରି ପାରନ୍ତି ଅଥବା ଧ୍ୱଂସ କରି ଦେଇ ପାରନ୍ତି । ଭାରତର ଅନ୍ୟାନ୍ୟ ଉନ୍ନତ ଜାତିମାନଙ୍କ ସଦୃଶ ଏମାନଙ୍କର ପ୍ରାଚୀନାବସ୍ଥା ଅତି ଉଜ୍ଜ୍ୱଳ ଥିଲେ ମଧ, ଐତିହାସିକ ପ୍ରାଧାନ୍ୟ ଯଥେଷ୍ଟ ଥିଲେ ମଧ, ଅତୁଳନୀୟ ଚିତ୍ତାକର୍ଷକ ପ୍ରାଚୀନ ବିଭବ ଥିଲେ ମଧ ସେମାନେ ବର୍ତ୍ତମାନ ଯନ୍ତ୍ରଣାଦାୟକ ପରିସ୍ଥିତି ଭିତରେ ପଡ଼ି ରହିଛନ୍ତି ।" (ତା ୧୭.୪.୬୯ ପ୍ରଜାତନ୍ତ୍ରରେ ପ୍ରକାଶିତ ପଣ୍ଡିତ ସୂର୍ଯ୍ୟନାରାୟଣ ଦାସଙ୍କର "ଗୋଲଟେବୁଲ ବୈଠକରେ ଓଡିଶା ସ୍ୱତନ୍ତ୍ର ପ୍ରଦେଶ ସମସ୍ୟା ।"ପ୍ରବନ୍ଧରୁ ଗୃହୀତ ।)

ମହାରାଜା କହିଥିଲେ-"We want province of our own on the basis of language and race, so that we can be a homogeneous unit with feelings of contentment and peace, to realise and be benifitted by the projected reforms and look forward to the day when the united states of India will consist of small federated state based on common language and race."

୧୯୩୧ ମସିହା ଜାନୁଆରୀ ତା ୧୯ ରିଖ ଦିନ ଭାରତ ସଚିବ ସାର୍ ସାମୁଏଲ ହୋର ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ହେବା କଥା ଘୋଷଣା କରିଥିଲେ ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ ଏହି ବିଷୟଟି ପୂର୍ବନିର୍ଦ୍ଧାରିତ କର୍ମସୂଚୀରେ ନଥିଲା । ମାତ୍ର ମହାରାଜାଙ୍କର ସବିଶେଷ ଉଦ୍ୟମ ଫଳରେ ସଭାପତି ଏ ପ୍ରଶ୍ନ ଉତ୍ଥାପନ କରିବାକୁ ଅନୁମତି ଦେଇଥିଲେ । ଅନ୍ୟ ସମସ୍ତ ସଭ୍ୟ ଏ ପ୍ରସ୍ତାବକୁ ସମର୍ଥନ କରିଥିଲେ । ଓଡ଼ିଆମାନଙ୍କର ପ୍ରଦେଶ ଦାବୀ, ମୁସଲମାନମାନଙ୍କର ମୁସଲମାନ ବହୁଳ ସ୍ୱତନ୍ତ୍ର ସିନ୍ଧୁ ପ୍ରଦେଶ ଗଠନ ଦାବୀରୁ ମଧ ସମର୍ଥନ ପାଇଥିଲା । ଓଡ଼ିଶା ଦାବୀ ମାନିନେବାକୁ ଯେଉଁମାନେ ପ୍ରସ୍ତୁତ ନ ଥିଲେ, ସେମାନେ ସାମ୍ପ୍ରଦାୟିକତା ଦୃଷ୍ଟିରୁ ସିନ୍ଧୁ ପ୍ରଦେଶ ଗଠନର ସମର୍ଥକ ଥିଲେ । ବାଧ ହୋଇ ସେମାନେ ନୂତନ ଓଡ଼ିଶା ପ୍ରଦେଶ ଗଠନର ପକ୍ଷପାତୀ ହେଲେ । ଫଳରେ ଗୋଲଟେବୁଲ ବୈଠକ ଓଡ଼ିଶା ପ୍ରଦେଶ ଗଠନ ଦିଗରେ ବହୁମତ ପ୍ରକାଶପାଇ ଏହା ଗୃହୀତ ହେଲା । ଭାରତ ମନ୍ତ୍ରୀ ସାର ସାମୁଏଲ

ହୋଇ ଏହି ଦାବୀ ମାନିନେଲେ । ପାରଳାଖେମୁଣ୍ଡି ମହାରାଜାଙ୍କର ସଙ୍ଗଠନ ଶକ୍ତି ଓ କର୍ମଦକ୍ଷତାର ବିଜୟଲାଭ ହେଲା ।

ଏହାପରେ ଖ୍ରୀ ୧୯୩୧ ସାଲରେ ସେପ୍ଟେମ୍ବର ୧୮ ତାରିଖରେ ଭାରତ ସରକାର ଓଡ଼ନେଲ ସାହେବଙ୍କ ସଭାପତିତ୍ୱରେ ଓଡ଼ିଶା ପ୍ରଦେଶ ଗଠନପାଇଁ ଓଡ଼ନେଲ କମିଟି ବସାଇଥିଲେ । ପାରଳାଖେମୁଣ୍ଡି ମହାରାଜା ଏହାର ଜଣେ ଅଙ୍ଗୀଭୂତ ସଦସ୍ୟ ଥିଲେ । ସ୍ୱତନ୍ତ୍ର ପ୍ରଦେଶ ଗଠନ କରାଗଲେ ଓଡ଼ିଶାର ଆର୍ଥିକ ସ୍ଥିତି ଓ ଅନ୍ୟାନ୍ୟ ପରିସ୍ଥିତି କି ଧରଣର ହେବ ତାହା ଏହି କମିଟିର ବିଚାର୍ଯ୍ୟ ଥିଲା । ସ୍ୱତନ୍ତ୍ର ସୀମା ନିର୍ଦ୍ଧାରଣ ମଧ ଏହାର କାର୍ଯ୍ୟଥିଲା । ଏହି କମିଟିର ରିପୋର୍ଟ ଖ୍ରୀ ୧୯୩୨ରେ ପ୍ରକାଶିତ ହେଲା । ଏହି କମିଟି ବଙ୍ଗ ପ୍ରଦେଶରୁ ବା ବିହାରରୁ କୌଣସି ଓଡ଼ିଆଭାଷୀ ଅଞ୍ଚଳ ନୂତନ ପ୍ରଦେଶରେ ମିଶାଇବାପାଇଁ ପ୍ରସ୍ତାବ ଦେଇ ନ ଥିଲେ । ବିହାର ଓଡିଶା ଡିଭିଜନ, ରାୟପୁର ଜିଲ୍ଲା ଖଡ଼ିଆଳ ଜମିଦାରି, ଗଞ୍ଜାମ ଜିଲ୍ଲା ଓ ବିଶାଖାପାଟନା ପାର୍ବତୀୟ ଅଞ୍ଚଳର ବହୁଳ ଅଂଶ ନେଇ ନୂତନ ପ୍ରଦେଶ ଗଠନ ନିମିତ୍ତ ଏହି କମିଟି ସୂଚନା ଦେଲେ । ମୋଟାମୋଟି ଭାବରେ ସେମାନେ ଫିଲିଫ୍ ଡ଼ଫ୍ କମିଟି ନିର୍ଦ୍ଧାରିତ ସୀମା ଅନୁମୋଦନ କଲେ, ମାତ୍ର ଅନ୍ୟ ଦୁଇଜଣଙ୍କ ବିରୁଦ୍ଧ ମତ ସତ୍ତ୍ୱେ ସଭାପତି ଓଡ଼ନେଲ୍ ପାରଳାଖେମୁଣ୍ଡି ଓ ଜୟପୁର ଜମିଦାରି ନୂତନ ଓଡ଼ିଶା ପ୍ରଦେଶର ଅନ୍ତର୍ଗତ ନ ହେବାକୁ ସୁପାରିଶ କଲେ । "କାନ୍ଦୁଥିବ, ଯାହା ପାଉଥିବ ବାନ୍ଧୁଥିବ"- ଏହି ନୀତିରେ କେତେକ ତତ୍କାଳୀନ ନେତା, ବିଖଣ୍ଡିତ ପ୍ରଦେଶଗଠନ ନିମିତ୍ତ ରାଜି ଥିଲେ ମଧ ମହାରାଜା ଏହାର ଘୋର ବିରୋଧ କରିଥିଲେ । ସେହି ବର୍ଷ ବ୍ରହ୍ମପୁରରେ ଏକ ସମ୍ମିଳନୀ ଆହୁତ ହେଲା । ମହାରାଜା କୃଷି କମିଶନ ତାଙ୍କର ସହକର୍ମୀ ଥିବା ଲର୍ଡ଼ ଲିନ୍‌ଲିଥିଗୋଙ୍କ ସହିତ ସାକ୍ଷାତ କରି ତାଙ୍କୁ ନିଜ ସପକ୍ଷରେ ଆଣି ପାରିଥିଲେ । ଏଥିପାଇଁ ଖ୍ରୀ ୧୯୩୩ରେ ୨ୟବାର ଇଂଲଣ୍ଡ ଯାତ୍ରା କଲେ ଓ ସେଠାରେ ନିଜର କର୍ମ କୁଶଳତା ଫଳରେ ସମଗ୍ର ଜୟପୁର ଜମିଦାରି ଓ ନିଜ ରାଜଧାନୀ ସହିତ ପାରଳାଖେମୁଣ୍ଡି ଜମିଦାରୀର ଏକ ତୃତୀୟାଂଶ ଓଡ଼ିଶାକୁ ଆସିବାର ପ୍ରତିଶ୍ରୁତି ହାସଲ କଲେ । ମହାରାଜାଙ୍କର ୨ୟବାର ବିଲାତଯାତ୍ରା ସର୍ବଦଳୀୟ ସମର୍ଥନ ପାଇନଥାଏ । ସେହି କାରଣରୁ ଯେଉଁମାନେ ପାରଳା ଓ ଜୟପୁର ବ୍ୟତୀତ ଓଡ଼ିଶା ପ୍ରଦେଶ ଗଠନ ଚାହୁଁଥିଲେ, ସେମାନେ ଭାରତ ମନ୍ତ୍ରୀଙ୍କୁ କେବଲମାନ ପଠାଇଲେ ଯେ ପାରଳା ଓ ଜୟପୁର ବ୍ୟତୀତ ଓଡ଼ିଶା ପ୍ରଦେଶ ଗଠିତ ହେଉ ଓ ଜୟପୁର ମହାରାଜା ନିଜେ ଓଡ଼ିଶା ସହିତ ତାଙ୍କର ରାଜ୍ୟର ମିଶ୍ରଣ ଚାହାନ୍ତି ନାହିଁ । ଭାରତ ମନ୍ତ୍ରୀ ସାର

ସାମୁଏଲ ହୋରଙ୍କୁ ମହାରାଜା ନିଜ ବ୍ୟୟରେ କେବଲ କରି ମହାଶୟ ବିକ୍ରମ ଦେବଙ୍କର ମତାମତ ଓ ଏହାର ସତ୍ୟତା ଜାଣିବାକୁ ଅନୁରୋଧ କଲେ । ତାଙ୍କର ଦୃଢ଼ତା ଭାରତ ମନ୍ତ୍ରୀଙ୍କୁ ବିସ୍ମିତ କରିଥିଲା । ଏହି ଆନ୍ଦୋଳନରେ ମହାରାଜା ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ କରିଥିଲେ । ମିଶ୍ରଣ ସପକ୍ଷରେ ବହୁ ନେତାଙ୍କୁ ନିଜ ବ୍ୟୟରେ ସେ ବିଲାତ ନେଇଥିଲେ । ସେଠାରେ ଜନମତ ସୃଷ୍ଟି କରିଥିଲେ ଓ ପାରଳା ଜୟପୁର ପ୍ରସ୍ତାବିତ ଓଡ଼ିଶାରେ ନ ମିଶିଲେ ଭାରତ ବର୍ଷକୁ ନ ଫେରିବାର ବ୍ୟକ୍ତ ସଂକଳ୍ପବଦ୍ଧ କରିଥିଲେ ।

ମାନ୍ଦ୍ରାଜ୍ ପ୍ରଦେଶବାସୀ ଅଣଓଡ଼ିଆମାନଙ୍କ ସହିତ ସହଯୋଗ କରି ସରକାର କୋରାପୁଟ ଓ ଗଞ୍ଜାମ ଜିଲ୍ଲାର ଯେଉଁ ସୀମା ନିର୍ଦ୍ଧାରଣ କଲେ, ତାହା ଅତି ବିଚିତ୍ର । ସବୁଠାରେ ଦେଖାଯାଏ, ଦୁଇ ପ୍ରଦେଶ ମଧ୍ୟରେ ନଦୀ, ପର୍ବତ ବା ସେପରି କୌଣସି ପ୍ରାକୃତିକ ସୀମା ଥାଏ, ମାତ୍ର କୋରାପୁଟ ଓ ଗଞ୍ଜାମ ଜିଲ୍ଲାର ସୀମା ଏପରି ବିକୃତଭାବରେ ନିର୍ଦ୍ଧାରିତ ଯେ କୌଣସି ନିର୍ଦ୍ଧାରିତ ରାସ୍ତାରେ ପ୍ରାଦେଶିକ ସୀମା ଦୁଇ ତିନିବାର ଲଂଘନ କରିବାକୁ ହେଉଛି । ମାଛକୁଣ୍ଡ ହେଉ ଅବା କୁଟିଆ ଗ୍ରାମ ମହେନ୍ଦ୍ରଗିରି ହେଉ, ସର୍ବତ୍ର ଆମ୍ଭେମାନେ ଏହି ବିକୃତ ସୀମା ନିର୍ଦ୍ଧାରଣର ଶରବ୍ୟ ହେଉଛୁ । ମହାରାଜାଙ୍କର ଆଗ୍ରହ ଓ ଉଦ୍ୟମ ନଥିଲେ ହୁଏତ ସମଗ୍ର କୋରାପୁଟ ଜିଲ୍ଲା ଓ ପାରଳାଖେମୁଣ୍ଡି ସବ୍‌ଡ଼ିଭିଜନ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶରେ ଆଦୌ ସ୍ଥାନ ପାଇନଥାନ୍ତା ।

୧୯୩୬ ମସିହା ଏପ୍ରିଲ ପହିଲା ଦିନ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲା । ଭାରତ ସମ୍ରାଟଙ୍କ ଆଦେଶ ଜାରି ଅନୁସାରେ ବିହାର-ଓଡ଼ିଶା ପ୍ରଦେଶର ଓଡ଼ିଶା ଡ଼ିଭିଜନ,ମାନ୍ଦ୍ରାଜ ପ୍ରଦେଶରୁ ଗଞ୍ଜାମ ମାଳ ଅଞ୍ଚଳ, ଗଞ୍ଜାମ ଜିଲ୍ଲାର ଆସିକା, ଘୁମୁସର, ସୋରଡ଼ା, କୋଦଳା, ଛତ୍ରପୁର ତାଲୁକା ଓ ବ୍ରହ୍ମପୁର,ଇଛାପୁର ତାଲୁକାର ନିର୍ଦ୍ଧାରିତ ଅଂଶ, ପାରଳାଖେମୁଣ୍ଡି ଜମିଦାରିର ନିର୍ଦ୍ଧାରିତ ଅଂଶ ବିଶାଖାପାଟଣା ଜିଲ୍ଲାର ଅବିଭାଜିତ ଜୟପୁର ଜମିଦାରୀ ଓ ଏହି ଜମିଦାରିର ଅନ୍ତର୍ଗତ ନ ହୋଇଥିବା ପଟାଙ୍ଗୀ ତାଲୁକା ଅଂଶ, ମଧ୍ୟପ୍ରଦେଶରୁ ଆଗତ ରାୟପୁର ଜିଲ୍ଲାର ଖଡ଼ିଆଳ ଜମିଦାରି, ବିଳାସପୁର ଜିଲ୍ଲାର ପଦ୍ମପୁର, ଚନ୍ଦ୍ରପୁର ଜମିଦାରିର କେତେକ ଗ୍ରାମ ଓଡ଼ିଶା ପ୍ରଦେଶରେ ସ୍ଥାନ ପାଇଲା । ଆମ୍ଭମାନଙ୍କ ମନେ ରଖିବା କଥା ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଯଦି ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଦାବୀ ଦୃଢ଼ତର ଭାବରେ ଉପସ୍ଥାପିତ କରା ଯାଇଥାଆନ୍ତା ଓ ଇଂରେଜ ସରକାର ଏହି ଦାବୀ ମାନି ନେଇଥାନ୍ତେ, ତେବେ ପ୍ରଦେଶର ମାନଚିତ୍ର ସଂପୂର୍ଣ୍ଣ ବିଭିନ୍ନ ହୋଇଥାନ୍ତା । ସମଗ୍ର ଓଡ଼ିଆଭାଷୀ ଅଞ୍ଚଳ ଏଥିରେ ସ୍ଥାନ ପାଇଥାନ୍ତା ।ଏହି

ଜାତିର ସୌଭାଗ୍ୟ ପାରଳା ମହାରାଜା ସ୍ୱତନ୍ତ୍ର ପ୍ରଦେଶ ଗଠନ ଆନ୍ଦୋଳନରେ ଅଗ୍ରଣୀ ଥାଇ ବ୍ୟକ୍ତିଗତ ଅସୁବିଧା ସତ୍ତ୍ୱେ ବାରମ୍ବାର ଇଂଲଣ୍ଡ ଯାଇ ସେଠାରେ ଜନମତ ଜାଗ୍ରତ ପ୍ରଭୃତି ଅର୍ଥ ବ୍ୟୟ କରି ସ୍ୱତନ୍ତ୍ର ପ୍ରଦେଶ ଗଠନ କରିପାରିଥିଲେ । ଯେଉଁ ଇଂରେଜ ସରକାର ଓଡ଼ିଆମାନଙ୍କୁ ଖଣ୍ଡ ଖଣ୍ଡ କରି ଚାରୋଟି ପ୍ରଦେଶରେ ପକାଇଥିଲେ ସେହିମାନେ ଭାରତ ଛାଡ଼ିବାର ମାତ୍ର ବାରବର୍ଷ ପୂର୍ବରୁ ମହାରାଜାଙ୍କର ଅଦମ୍ୟ ଉତ୍ସାହ ଫଳରେ ସ୍ୱତନ୍ତ୍ର ପ୍ରଦେଶ ଗଠନ ନିମିତ୍ତ ଘୋଷଣା କରିଥିଲେ । ତାହା ନ ହୋଇଥିଲେ ସ୍ୱାଧୀନ ଭାରତରେ ଆମର ସ୍ଥାନ ଯେ କେଉଁଠାରେ ଥାନ୍ତା ତାହା କିଏ କହି ପାରିବ ? ୧୯୦୩ ମସିହାରୁ ଉତ୍କଳ ସମ୍ମିଳନୀ ଜରିଆରେ ଓଡ଼ିଆଭାଷୀ ଅଞ୍ଚଳମାନଙ୍କର ଏକୀକରଣ ନିମିତ୍ତ ଉତ୍କଳଗୌରବ ମଧୁସୂଦନ ଓ ଅନ୍ୟାନ୍ୟ ମନୀଷୀମାନେ ଯେଉଁସବୁ ସ୍ୱପ୍ନ ଦେଖୁଥିଲେ ତାହା ସଂପୂର୍ଣ୍ଣ ନହେଲେ ମଧ ଆଂଶିକ ଭାବରେ ଓ ଆଖିକୁ ଦେଖାଗଲା ଭଳି କାର୍ଯ୍ୟକାରୀ କରିବାରେ କେବଳ ସେହି ପାରଳାଖେମୁଣ୍ଡି ମହାରାଜାଙ୍କର ଉଦ୍ୟମ ସର୍ବାଦୌ ଗଣନୀୟ । ପ୍ରଦେଶ ଗଠନ ଉତ୍ତାରେ ମହାରାଜା ଦୁଇଥର ପ୍ରଧାନମନ୍ତ୍ରୀ ହୋଇ ଅଛନ୍ତି । ମନ୍ତ୍ରୀ ଅର୍ଜିତ ସମସ୍ତ ବେତନ ଓ ଭତ୍ତା ସେ ସର୍ବ ସାଧାରଣ ପାଣ୍ଠିକୁ ଦାନ କରିଅଛନ୍ତି । ତାଙ୍କର ଉଦ୍ୟମ ଫଳରେ ଗଠିତ ପ୍ରଦେଶରେ ତାଙ୍କର ଯେ କୌଣସି ବ୍ୟକ୍ତିଗତ ବା ଆର୍ଥିକ ସ୍ୱାର୍ଥ ନଥିଲା ତାହା ଏଥିରୁ ସ୍ପଷ୍ଟ ପ୍ରମାଣିତ ହୁଏ । ସ୍ୱତନ୍ତ୍ର ପ୍ରଦେଶ ଗଠନ ଦିଗରେ ମହାରାଜାଙ୍କର ଅବଦାନ ଅବିସ୍ମରଣୀୟ ଓ ସର୍ବବାଦୀ ସମ୍ମତ ।



ଜୀବନର ଉତ୍ତର ଭାଗ :

# ବିସ୍ମୃତ-ଗଜପତି (୧୯୪୪-୭୪)

ପାରଳାଖେମୁଣ୍ଡି ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ଦୁଇଥର ଓଡ଼ିଶାର ପ୍ରଧାନମନ୍ତ୍ରୀ ଭାବରେ ଦାୟିତ୍ୱ ବହନ କରିଥିଲେ । ୧୯୩୫ ମସିହା ଭାରତ ଶାସନ ଆଇନର ପ୍ରବର୍ତ୍ତନ ଫଳରେ ୧୯୩୭ମସିହା ନିର୍ବାଚନ ପରେ ଜାତୀୟ କଂଗ୍ରେସ,ଶାସନ ସଂବିଧାନରେ ସୀମିତ କ୍ଷମତାର ପ୍ରତିବାଦ ସ୍ୱରୂପ ସଂଖ୍ୟାଗରିଷ୍ଠ ଦଳଭାବେ ମନ୍ତ୍ରୀତ୍ୱ ଗଠନ ନିମିତ୍ତ ଅସମ୍ମତି ପ୍ରକାଶ କରିବା ପରେ ଓଡ଼ିଶାର ପ୍ରଥମ ରାଜ୍ୟପାଳ ସାର ଜନ ଅଷ୍ଟିନ ହବାକ ଆଇ.ସି.ଏସ୍‌ଙ୍କର ନିମନ୍ତ୍ରଣ ରକ୍ଷାକରି ସେ ପ୍ରଥମ ମନ୍ତ୍ରୀମଣ୍ଡଳ ଗଢ଼ିଥିଲେ । ନିର୍ବାଚନରେ ତାଙ୍କ ଦଳ ଜାତୀୟତାବାଦୀ ଦଳ ନାମରେ ପ୍ରତିଯୋଗିତା କରି ନିର୍ବାଚନ ଶେଷରେ କଂଗ୍ରେସକୁ ସଂଖ୍ୟାଗରିଷ୍ଠ ବିଜୟୀ ଦଳ ଭାବରେ ଗ୍ରହଣ କରିନେଇଥିଲା । ମହାରାଜା ଏହି ଦଳର ନେତା ଥିଲେ ଓ ବ୍ରହ୍ମପୁରର ଜଣାଶୁଣା ଓକିଲ ଭୁବନେଶ୍ୱର ରଥ ଏହାର ସଂପାଦକ ଥିଲେ । ପ୍ରଥମ କାମଚଳା ମନ୍ତ୍ରୀମଣ୍ଡଳ ୧୯୩୭ ଅପ୍ରେଲରୁ ୧୯୩୭ ଜୁଲାଇ ପର୍ଯ୍ୟନ୍ତ କାର୍ଯ୍ୟକରି କଂଗ୍ରେସ କ୍ଷମତା ଗ୍ରହଣ କରିବାକୁ ସମ୍ମତି ଦେବାରୁ ନିଜ ଦାୟିତ୍ୱରୁ ଅପସରି ଯାଇଥିଲା । ଏହି ମନ୍ତ୍ରୀମଣ୍ଡଳରେ ମହାରାଜା କୃଷ୍ଣଚନ୍ଦ୍ରଙ୍କ ବ୍ୟତୀତ ଅନ୍ୟ ଦୁଇଜଣ ସହଯୋଗୀ ମନ୍ତ୍ରୀ ଥିଲେ-ବ୍ରହ୍ମପୁରର ଓକିଲ ମାନ୍ଧାତା ଗୋରାଚାନ୍ଦ ପଟ୍ଟନାୟକ ଓ ପୁରୀର ଓକିଲ ଲତିଫୁର ରହମନ । ଓଡ଼ିଶା ବ୍ୟବସ୍ଥା ସଭାରେ ସେତେବେଳେ ମୋଟ ସଭ୍ୟ ସଂଖ୍ୟା ୬୦ ମଧ୍ୟରୁ ୪ ଜଣ ରାଜ୍ୟପାଳଙ୍କ ଦ୍ୱାରା ମନୋନୀତ ହେଉଥିଲେ । ମୁସଲମାନମାନଙ୍କ ନିମିତ୍ତ ୪ଗୋଟି, ଭାରତୀୟ ଖ୍ରୀଷ୍ଟିଆନମାନଙ୍କ ନିମିତ୍ତ ଏକଗୋଟି, ଜମିଦାରମାନଙ୍କ ନିମିତ୍ତ ଦୁଇଗୋଟି, ଶ୍ରମିକମାନଙ୍କ ନିମିତ୍ତ ଗୋଟିଏ, ବାଣିଜ୍ୟ ସଭାମାନଙ୍କ ନିମିତ୍ତ ୨ଗୋଟି ଓ ମହିଳାମାନଙ୍କ ନିମିତ୍ତ ଦୁଇ ଗୋଟି ଆସନ ସଂରକ୍ଷିତ ଥିଲା । ଅବଶିଷ୍ଟ ସାଧାରଣ ଆସନ ଥିଲା । ପ୍ରତିଯୋଗିତାରେ ଜାତୀୟ କଂଗ୍ରେସ ଏକକ ସଂଖ୍ୟା ଗରିଷ୍ଠତା ଲାଭ କରିଥିଲା । ଏହି ନିର୍ବାଚନରେ ଭୋଟ ଅଧିକାର ମଧ୍ୟ ସୀମିତ ଥିଲା । ଶିକ୍ଷା ଯୋଗ୍ୟତା ମାଟ୍ରିକୁଲେସନ ବା ତଦୂର୍ଦ୍ଧ୍ୱ ଥିଲେ ନିର୍ଦ୍ଧାରିତ ପରିମାଣରୁ ଅଧିକ ଖଜଣା, ଚୌକିଦାରି ଟିକସ ବା ମ୍ୟୁନିସିପାଲଟି ଟିକସ ବା

ଯେ କୌଣସି ପରିମାଣର ଆୟକର ଦେଉଥିଲେ ଜଣେ ବ୍ୟକ୍ତି ଭୋଟ ଅଧିକାର ପାଇ ପାରୁଥିଲେ । ୨ୟ ଥରପାଇଁ ମନ୍ତ୍ରୀମଣ୍ଡଳ ୨ୟ ବିଶ୍ୱଯୁଦ୍ଧ ସମୟରେ ସେ ଗଠନ କରିଥିଲେ । କଂଗ୍ରେସର ମୁଖ୍ୟ ନେତାମାନେ କାରାଗାରରେ ଥିଲେ । ଯୁଦ୍ଧ ଉଦ୍ୟମରେ ସହାୟକ ହେବା ନିମିତ୍ତ କେତେକ ଦଳତ୍ୟାଗୀଙ୍କ ସାହାଯ୍ୟରେ ଏହି ମନ୍ତ୍ରୀମଣ୍ଡଳ ୧୯୪୧ ମସିହା ଜୁନ ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲା । ଏହି ମିଳିତ ମନ୍ତ୍ରୀମଣ୍ଡଳରେ ପଣ୍ଡିତ ଗୋଦାବରୀଶ ମିଶ୍ର ଓ ମୁସଲିମ ଲିଗର ଅବଦୁଲ ଶୋଭାନ୍ ଖାଁ, ଆଇନଜୀବୀ ସଭ୍ୟ ଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠା ପ୍ରତ୍ୟେକ ଜିଲ୍ଲାରେ କଲେଜ ଓ କଟକରେ ମେଡ଼ିକାଲ କଲେଜ ସ୍ଥାପନ ଏହି ମନ୍ତ୍ରୀ ମଣ୍ଡଳର ବିଶେଷ ଅବଦାନ । ଏହି ମନ୍ତ୍ରୀମଣ୍ଡଳର କାର୍ଯ୍ୟକାଳ ମଧ୍ୟରେ ପ୍ରଧାନ ମନ୍ତ୍ରୀଭାବେ ଅର୍ଜିତ ସମସ୍ତ ବେତନ ଓ ଭତ୍ତା ମହାରାଜା ଉତ୍କଳ ବିଶ୍ୱବିଦ୍ୟାଳୟକୁ ଦାନ କରିଥିବା ସହଯୋଗୀ ମନ୍ତ୍ରୀ ଶୋଭାନ୍ ଖାଁ ଉଲ୍ଲେଖ କରିଛନ୍ତି । ଏହି ମନ୍ତ୍ରୀମଣ୍ଡଳର ଅବସାନ ପରେ ରାଜ୍ୟରେ ପୁଣି ଭାରତ ଶାସନ ଆଇନର ୯୩ ଧାରା ଅନୁସାରେ ରାଜ୍ୟପାଳ ଶାସନ ପ୍ରବର୍ତ୍ତିତ ହୋଇଥିଲା ।

ଯୁଦ୍ଧୋତ୍ତର କାଳରେ ୧୯୪୬ ମସିହାରେ ଯେଉଁ ବ୍ୟବସ୍ଥା ସଭା ନିର୍ବାଚନ ହେଲା, ସେଥିରେ ମହାରାଜା ଭାଗ ନେଇ ନଥିଲେ । ତାଙ୍କ କଲେଜରେ ଏକଦା ଅଧ୍ୟାପକ ପ୍ରଖ୍ୟାତ କଂଗ୍ରେସ ନେତା ପଣ୍ଡିତ ଅନନ୍ତ ତ୍ରିପାଠୀ ଶର୍ମା ପାରଳାଖେମୁଣ୍ଡି ନିର୍ବାଚନ ମଣ୍ଡଳୀରୁ ବ୍ୟବସ୍ଥା ସଭାକୁ ନିର୍ବାଚିତ ହେଲେ । ପାରଳା ମହାରାଜା ସ୍ୱଳ୍ପକାଳ ନିମିତ୍ତ ଭାରତୀୟ ସମ୍ବିଧାନ ସଭାର ସଭ୍ୟଥିଲେ ଓ ୧୯୫୦ରେ ସମ୍ବିଧାନ ଗଠନ ପରେ ଏହି ଦାୟିତ୍ୱରୁ ଅପସରି ଗଲେ । ସେହି ଦିନଠାରୁ ସେ କ୍ଷମତା ରାଜନୀତିଠାରୁ ନିଜକୁ ଅଲଗା ରଖୁଥିଲେ । ଯୁଦ୍ଧ ସମୟରେ ମନ୍ତ୍ରୀମଣ୍ଡଳ ଗଠନ କରି ଯୁଦ୍ଧ ଉଦ୍ୟମରେ ବ୍ରିଟିଶ ସରକାରଙ୍କର ବିଶେଷ ସହାୟକ ହୋଇଥିବା ଯୋଗୁଁ ସେ ଜାତୀୟ ନେତାମାନଙ୍କର ସମାଲୋଚନାର ଶରବ୍ୟ ହୋଇଥିଲେ, ମାତ୍ର ଜମିଦାରୀ ଉଚ୍ଛେଦର ପ୍ରାକ୍‌କାଳରେ ଓଡ଼ିଶା ସରକାରଙ୍କୁ ପ୍ରଦତ୍ତ ଏକ ସ୍ମାରକ ପତ୍ରରେ ନିଜର ବିବାଦୀୟ ଭୂମିକା ସେ ସୁସ୍ପଷ୍ଟ କରି ଦେଇଥିଲେ ।

**And he (Maharaja) had honour of responding to the call of his Excellency-the governor of Orissa to form the Ministry on two occasions at the most critical times in the political history of his mother country.It is of course for the Govt and the people of the country to**

say how the services rendered by him elevated the status of Orissa in the eyes of all who are competent to judge.

On those occasions as on all other occasions the attitude of the Maharaja in the matter of those political relations has been then and will always be,to support and implement the orderly policy of the Govt. established by law.Whichever govt is in office the maharaja considers it his duty, as all right minded and level headed citizens do to strengthen the hands of the govt, so that peace and prosperity through the maintenance of law and order will be ensured for the people of the land.It is in this spirit that he has always conducted himself.

ଏହି ସ୍ମାରକପତ୍ର ଜମିଦାରି ବିଲୋପର ସ୍ୱଳ୍ପକାଳ ପୂର୍ବରୁ ୧୯୪୯ ମସିହାରେ ସରକାରଙ୍କୁ ଦିଆଯାଇଥିଲା । ୧୮୦୩ ମସିହାରେ ଇଂରେଜ ସରକାରଙ୍କଠାରୁ ସନନ୍ଦ ପାଇବା ପୂର୍ବରୁ ଖେମୁଣ୍ଡି ନରପତିମାନେ ସାର୍ବଭୌମ କ୍ଷମତା ସମ୍ପନ୍ନ ଥିଲେ, ସେମାନେ ରୁଲିଂଚିଫ୍‌ଭାବେ ସମ୍ମତି ନ ପାଇଥିଲେ ମଧ୍ୟ ଦଶପଲ୍ଲା, ନୟାଗଡ଼ ରାଜାମାନଙ୍କ ପରି କ୍ଷମତା ଉପଭୋଗ କରୁଥିଲେ ଓ ସେମାନଙ୍କୁ କୌଣସି ବାହ୍ୟ ଶକ୍ତି ଜମିଦାରଭାବେ ସ୍ୱୀକୃତି ଦେଇ ନଥିଲା । ଏହି ଯୁକ୍ତି ଦର୍ଶାଇ ପ୍ରସ୍ତାବିତ ଜମିଦାରି ବିଲୋପ ଆଇନର ପରିସୀମା ମଧ୍ୟରୁ ତାଙ୍କ ଦମିଦାରୀକୁ ବାଦ ଦେବା ନିମିତ୍ତ ସେ ସ୍ମାରକ ପତ୍ର ପ୍ରଦାନ କରିଥିଲେ । ସେଥିରେ ଶାନ୍ତି ଓ ପ୍ରଗତି ସହ ରାଜ୍ୟରେ ଜନହିତକର, ଶୃଙ୍ଖଳିତ ଶାସନ ପ୍ରତିଷ୍ଠା ନିମିତ୍ତ ନିଜର ରାଜନୈତିକ ଜୀବନ ଉଦ୍ଦିଷ୍ଟ ବୋଲି ପରିଷ୍କାରଭାବରେ ଉଲ୍ଲେଖ କରିଥିଲେ । ୧୯୪୭ମସିହା ପୂର୍ବରୁ ବହୁ ସ୍ୱାଧୀନ ନରପତି, ଭୂମ୍ୟାଧିକାରୀ ଓ ପ୍ରତିଷ୍ଠିତ ରାଜନୈତିକ ନେତା ଜାତୀୟ କଂଗ୍ରେସର ଅସହଯୋଗ ନୀତି ସହିତ ଏକମତ ନଥିଲେ । ମହାରାଜାଙ୍କର ଘନିଷ୍ଠ ବନ୍ଧୁ ମାନ୍ଦ୍ରାଜର ପ୍ରଧାନମନ୍ତ୍ରୀ ଡ଼କ୍ଟର ପି.ସୁବାରୋୟାଁ, ସାର ସମ୍ମୁଖଂ ଚେଟି ପ୍ରଭୃତି ଅନେକ ଏହି ଶ୍ରେଣୀର ଅନ୍ତର୍ଭୁକ୍ତ । ଦେଶସ୍ୱାଧୀନ ହେବା ପରେ ସେମାନେ ଓ ଅନ୍ୟବହୁତ ରାଜାମହାରାଜା, ଭୂମ୍ୟାଧିକାରୀ ମନ୍ତ୍ରୀ, ରାଜ୍ୟପାଳ ଓ ରାଜଦୂତ ପଦ ମଣ୍ଡନ କଲେ । ମାତ୍ର ଓଡ଼ିଶାର ଦୁର୍ଭାଗ୍ୟ, ରାଜ୍ୟର ତତ୍‌କାଳୀନ ନେତୃତ୍ୱ ପାରଳାଖେମୁଣ୍ଡି ମହାରାଜାଙ୍କୁ କୌଣସି କାର୍ଯ୍ୟରେ ନିୟୋଜିତ କରି ନ ଥିଲା । ବିଶିଷ୍ଟ ଶିକ୍ଷାବିତ୍ ପାରଳାଖେମୁଣ୍ଡି କଲେଜର ଭୂତପୂର୍ବ ଅଧ୍ୟକ୍ଷ ପାନାଦି ଜଗନ୍ନାଥ ସ୍ୱାମୀ କହିଛନ୍ତି-

The o'doneil committee did not visit paralakhemundi.The earlier enquirry committee philip-Duff commission paid a visit and

went round the Taluk. Their report formed the basis of the formation of Orissa state.Though the O'deneil committee did not pay official visit, two of its official members Mr. Meheta and Mr.Phukan paid an unofficial visit and it was their dissenting report that was responsible for the inclusion of the northern half of the estate in tha Orissa state.Of course it was entirely the effort of the Maharaja Who toiled hard in going to England on two occasions to get a separate state sanctioned and approved by the parliamentary committee.Mr O'doneil, before whom I appeared at Gopalpur, could not in spite of his vehement report, Succeed against the streneuous and patriotic efforts of the owner of the Estate.

ଯେଉଁମାନେ ସାଇମନ କମିସନକୁ "Go back simon" ଧ୍ୱନି ଦେଇ ବିରୋଧ କରୁଥିଲେ, ସେମାନଙ୍କୁ ଓଡ଼ିଶାର ବିଭିନ୍ନ ଅଞ୍ଚଳକୁ ପୂରାଇ ଦେଉ ନ ଥିଲେ ପାରଳାଖେମୁଣ୍ଡିକୁ ଫିଲିଫଡ଼ଫ୍ କମିସନ ଯିବାବେଳେ ସେମାନଙ୍କୁ ସାକ୍ଷ୍ୟ ଗ୍ରହଣର ସୁଯୋଗ ଦେଇ ନଥିଲେ, ଓଡ଼ନେଲ କମିଟି ଆଗରେ ଓଡ଼ିଶା ପ୍ରଦେଶ ଗଠନ ନିମିତ୍ତ ଦୃଢ଼ମତ ପ୍ରକାଶ କରିନଥିଲେ, ସେଇମାନେ ଓଡ଼ିଶାରେ ରହି କ୍ଷମତା ଭୋଗ କରି ନିଜ ଜୀବନକୁ ସାର୍ଥକ କଲେ ।

କବିଗୁରୁ ଲେଖିଛନ୍ତି-

"ଧ୍ୱନିଟିରେ ପ୍ରତିଧ୍ୱନି ସଦା ବ୍ୟଙ୍ଗ କରେ
ଧ୍ୱନି କାଛେ ଋଣୀ ସେ ଯେ ପାଛେ ଧରାପଡ଼େ ।"

ସେମାନଙ୍କର ଚିନ୍ତାଧାରା ଏହିପରି କୌଣସି ଭାବନା ଦ୍ୱାରା ପ୍ରଭାବିତ ହୋଇଥିବା ବିଚିତ୍ର ନୁହେଁ ।

ପୂର୍ବତନ ମୁଖ୍ୟମନ୍ତ୍ରୀ ସଦାଶିବ ତ୍ରିପାଠୀ ନବରଙ୍ଗପୁରରେ କହିବାର ଶୁଣିଛି; "ଦେଶ ସ୍ୱାଧୀନ ହେବାପରେ ଅନେକ ନରପତି ପେଷାଦାର ରାଜନୀତିଜ୍ଞ ହେଲେ, କେତେକ କୂଟନୀତିରେ ଯୋଗ ଦେଲେ, କେହି ଶିଳ୍ପପତି ହେଲେ, କେତେକ ଆନ୍ତର୍ଜାତିକ ବାଣିଜ୍ୟରେ ନିଜକୁ ନିୟୋଜିତ କଲେ । ମାତ୍ର ଶେଷ ଜୀବନ ପର୍ଯ୍ୟନ୍ତ ନିଜକୁ ମହାରାଜଭାବରେ ପରିଚିତ କରି ରଖିପାରିଲେ କେବଳ ପାରଳାଖେମୁଣ୍ଡିର ମହାରାଜା ।" ରାଜଥାଟ ପୂର୍ବପରି ଚାଲୁ ରହିଲା । ସମସ୍ଥାନ (ଜମିଦାରି) ପରିଚାଳନା ଦାୟିତ୍ୱରେ ସବୁବେଳେ ଜଣେ ସୁଦକ୍ଷ ପ୍ରଶାସକ ରହିବେ । ସେ ଆଇ.ସି.ଏସ. ବା ସର୍ବନିମ୍ନ ସିନିଅର ଡେପୁଟି କଲେକ୍ଟର (ଅବସରପ୍ରାପ୍ତ) ହୋଇଥିବେ । ଅଫିସ କାର୍ଯ୍ୟ

ଶୃଙ୍ଖଳିତଭାବରେ ଚ଼ାଲୁ ରହିବ । ମହାରାଜାଙ୍କ ସାକ୍ଷାତ ନିମିତ୍ତ ପୂର୍ବରୁ ସ୍ଥାନ, ସମୟ ନିର୍ଦ୍ଧାରିତ ହେବ । ନିର୍ଦ୍ଧାରିତ ସମୟରେ ମହାରାଜା ଦରବାରୀ ପୋଷାକ ପିନ୍ଧି ଦରବାର କକ୍ଷରେ ବିଜେ କରିବେ । ପ୍ରାର୍ଥୀ ସିଂହାସନ ଉପରକୁ ଉଠିବା ପୂର୍ବରୁ ନିଜର ପାଦୁକା ତଳେ ରଖିଯିବେ । ସାକ୍ଷାତ କରିବେ । ସାକ୍ଷାତ ପୂର୍ବରୁ ଆଲୋଚ଼ିତ ବିଷୟରେ ମହାରାଜ ପୂର୍ବରୁ ପ୍ରସ୍ତୁତ ଥିବେ, ଯେପରି ତାଙ୍କୁ କୌଣସି ଅପ୍ରାସଙ୍ଗିକ ମନ୍ତବ୍ୟ ଦେବାକୁ ନପଡ଼େ । ଏ ନିୟମ ପାରଳାରେ ସରକାରୀ, ବେସରକାରୀ, ସ୍ଥାନୀୟ ବହିରାଗତ ସମସ୍ତଙ୍କ ପ୍ରତି ପ୍ରଯୁଜ୍ୟ ଥିଲା । ମାତ୍ର ରାଜ୍ୟ ବାହାରେ ମହାରାଜା ସବୁ ସମୟରେ ନିଜକୁ ଏହି କାଇଦା କଟକଣାରୁ ମୁକ୍ତ ରଖୁଥିଲେ । ଯୌବନର ପ୍ରାରମ୍ଭରେ ମହାରାଜା ରହୁଥାଆନ୍ତି ମାନ୍ଦ୍ରାଜ ନଗରୀରେ । ଗଞ୍ଜାମର ଅବସରପ୍ରାପ୍ତ ଜିଲ୍ଲା କଲେକ୍ଟର ସ୍ୱର୍ଗୀୟ ଗୋପୀନାଥ ବେହେରା ରାଜ ସହାୟତାରେ ମାନ୍ଦ୍ରାଜ୍‌ରେ ବି.ଏ ପଢୁଥାନ୍ତି । ଥରେ ମହାରାଜା ତାଙ୍କୁ ରାସ୍ତାରେ ଚ଼ାଲି ଯାଉଥିବାର ଦେଖିଲେ । ମହାରାଜା ନିଜର କାର ଅଟକାଇଲେ । ତାଙ୍କଠାରୁ ପଚ଼ାରି ବୁଝିଲେ ଗୋପୀନାଥ ଗୋଟିଏ ମେସରେ ରହୁଛନ୍ତି । କଲେଜ ନିକଟରେ ତାଙ୍କୁ ବାସସ୍ଥାନ ମିଳୁ ନ ଥାଏ । ପ୍ରତିଦିନ କଲେଜକୁ ପାଦରେ ଯାତାୟତରେ ତାଙ୍କର କେତେଘଣ୍ଟା ସମୟ ଯାଉଥିଏ ଓ ସେ ପୁସ୍ତକାଗାର ସୁବିଧା ମଧ୍ୟ ସଂପୂର୍ଣ୍ଣ ଉପଲବ୍ଧି କରି ପାରୁ ନଥାନ୍ତି । ଗୋପୀନାଥଙ୍କର ସମସ୍ତ ସୁବିଧା ଅସୁବିଧା ବୁଝି ମହାରାଜା ତାଙ୍କୁ ବିଦାୟ ଦେଲେ । ପରଦିନ ସେ ରହୁଥିବା ମେସ୍ ଆଗରେ ମହାରାଜାଙ୍କ କାର ଆସି ଅଟକିଲା । ପରେ ଜଣେ ଭୃତ୍ୟ ନୂତନ ଖରିଦ ଗୋଟିଏ ସାଇକେଲ ଧରି ପହଞ୍ଚିଲା । ଏହା ଗୋପୀନାଥଙ୍କୁ ଉପହାର ରୂପେ ପ୍ରଦାନ କରାଯାଇ ଶିକ୍ଷାର ମାନ ଓ ପାରଳାଖେମୁଣ୍ଡିର ଗୌରବ ରକ୍ଷା ନିମିତ୍ତ ତାଙ୍କୁ ଉପଦେଶ ଦିଆଗଲା । ଗୋପୀନାଥ ଏକ ଅନୁନ୍ନତ ସଂପ୍ରଦାୟର ବ୍ୟକ୍ତିଥିଲେ । ଶିକ୍ଷା ସମାପ୍ତି ପରେ ସେ ମାନ୍ଦ୍ରାଜ ଡେପୁଟି ତହସିଲଦାର ଭାବରେ ନିଯୁକ୍ତିପାଇ ଓଡ଼ିଶା ସରକାରଙ୍କ ଅଧୀନରେ କଲେକ୍ଟର ପଦରୁ ଅବସର ଗ୍ରହଣ କଲେ । ମାତ୍ର ପରବର୍ତ୍ତୀ କାଳରେ ରାଜ୍ୟ ମଧରେ, ଗଞ୍ଜାମ ବା କୋରାପୁଟ କଲେକ୍ଟର ଥିବା ସମୟରେ ମଧ ମହାରାଜାଙ୍କ ଦର୍ଶନ ନିମିତ୍ତ ତାଙ୍କୁ ଅନୁମତି ପ୍ରାର୍ଥନା କରି ଦିନ ଓ ସମୟ ସକାଶେ ଅପେକ୍ଷା କରିବାକୁ ପଡୁଥିଲା । ଅନ୍ୟ ଦର୍ଶନାର୍ଥୀଙ୍କ କଥା ଛାଡ଼ନ୍ତୁ । ଜମିଦାରି ବିଲୋପ ପରେ ବାର୍ଦ୍ଧକ୍ୟରେ ତାଙ୍କ ଚ଼ିକିତ୍ସା ନିମିତ୍ତ ଆସିଥିବା ଭେଷଜ ବିଶାରଦଙ୍କୁ ମଧ ଏହି ଶୃଙ୍ଖଳାରୁ ବାଦ ଦିଆଯାଉ ନ ଥିଲା । ମୃତ୍ୟୁର କେତେବର୍ଷ ପୂର୍ବେ କଟକ ମେଡ଼ିକାଲ କଲେଜର ଜଣେ ଅଧ୍ୟାପକଙ୍କୁ ସେ ନିଜ ଚ଼ିକିତ୍ସା ନିମିତ୍ତ

ନିମନ୍ତ୍ରଣ କଲେ । ସରକାର ମଧ୍ୟ ଅଧ୍ୟାପକଙ୍କୁ ସମସ୍ତ ପ୍ରକାର ସୁବିଧା ସୁଯୋଗ ଯୋଗାଇ ଦେଲେ । ମହାରାଜାଙ୍କ ସହିତ ସାକ୍ଷାତର ତାରିଖ ଓ ସମୟ ନିର୍ଦ୍ଧାରିତ ହେଲା । ଅଧ୍ୟାପକ ପାରଳାଖେମୁଣ୍ଡିରେ ପହଞ୍ଚିଲେ । ରାଜ ଅତିଥି ଭାବେ ସର୍କିଟ ହାଉସ୍‌ରେ ରହିଲେ । ସ୍ଥାନୀୟ କେହି କେହି ଘରୋଇ ଚିକିତ୍ସାପାଇଁ ତାଙ୍କୁ ନିଜର ରୋଗୀମାନଙ୍କୁ ଆଣି ଦେଖାଇଲେ । କେତେକ ତାଙ୍କ ପାଖକୁ ଆସିଲେ । କେତେକଙ୍କୁ ସେ ଘରେ ଯାଇ ଦେଖି ଆସିଲେ । ମୋଟା ଫିସ୍ ମିଳିଥାଏ । ଏହା ମଧ୍ୟରେ ନିର୍ଦ୍ଧାରିତ ସମୟ ଅତିକ୍ରାନ୍ତ ହୋଇଗଲା । ନିର୍ଦ୍ଦିଷ୍ଟ ସମୟରୁ ପ୍ରାୟ ପାଞ୍ଚ ଦଶ ମିନିଟ୍ ଗତି ହେବା ପର୍ଯ୍ୟନ୍ତ ମହାରାଜା ଅପେକ୍ଷା କଲେ । ତା'ପରେ ସେ ନିଜ କକ୍ଷକୁ ଚାଲିଗଲେ । ଅଧ୍ୟାପକଙ୍କର ନିର୍ଦ୍ଧାରିତ ପ୍ରାପ୍ୟ ତାଙ୍କୁ ଚେକ୍ ଆକାରରେ ସେହିଠାରେ ଦେଇ ଦେବାକୁ ସେ ଦେୱାନଙ୍କୁ ନିର୍ଦ୍ଦେଶ ଦେଲେ । ସରକାର ବା ଅନ୍ୟ କୌଣସି କର୍ତ୍ତୃପକ୍ଷଙ୍କୁ ମହାରାଜା ଚିକିତ୍ସାପାଇଁ ଆସିଥିବା ଏ ଅଧ୍ୟାପକଙ୍କ ଏ ପ୍ରକାର ସମୟାନୁବର୍ତ୍ତିତାର ଅଭାବ ଓ ତଦ୍‌ଜନିତ ତ୍ରୁଟି କଥା ଶୁଣାଇ ନାହାନ୍ତି । ମଧୁବାବୁ କେଉଁଝର ରାଜାଙ୍କୁ କେତେ ମିନିଟ୍ ବିଳମ୍ବ ହେବା ଦେଖି କହିଥିଲେ "ସାମାନ୍ୟ ଘଣ୍ଟାଟାଏ ଯାହାର ମୂଲ୍ୟ କେଇଟା ଟଙ୍କା ସେ ଛାମୁଙ୍କୁ ଅପେକ୍ଷା କଲାନାହିଁ । ଆଉ ମିଷ୍ଟର ଦାସଙ୍କର ମୂଲ୍ୟ କଣ ତା'ଠାରୁ ଊଣା ଯେ ଆପଣ ଠିକ୍ ସମୟରେ ନ ଆସିଲେ ଆପଣଙ୍କର ଅପେକ୍ଷାରେ ସେ ବସି ରହିଥାନ୍ତେ ।" କୁଳବୃଦ୍ଧ ମଧୁସୂଦନଙ୍କର ଉପଯୁକ୍ତ ଦାୟାଦ ଭାବରେ ମହାରାଜା ଏହି ଚିକିତ୍ସକ ଅଧ୍ୟାପକଙ୍କୁ ଉଚିତ ଶିକ୍ଷା ଦେଲେ, ମାତ୍ର ତାର ପ୍ରତିକ୍ରିୟା କିଛି ପ୍ରକାଶ ପାଇଲା ନାହିଁ ।

୧୯୫୦ ମସିହାରେ ରାଜନୈତିକ ଜୀବନରୁ ସଂପୂର୍ଣ୍ଣ ଅଲଗା ହୋଇ ମହାରାଜା ମାନ୍ଦ୍ରାଜର ଉଟ୍‌କାମଣ୍ଡ (ଅଧୁନା ଉଦକ ମଣ୍ଡଳ) ଓ ପାରଳାଖେମୁଣ୍ଡିରେ ସମୟ ଅତିବାହିତ କରୁଥିଲେ । ଏହା ପୂର୍ବରୁ ୧୯୪୪ ମସିହା ଜୁନମାସରେ ତାଙ୍କର ମନ୍ତ୍ରୀମଣ୍ଡଳର ଅବସାନ ଘଟି ଥିଲା । ୧୯୭୪ ମସିହା ମଇ ମାସରେ ତାଙ୍କର ମୃତ୍ୟୁହେଲା । ଏହି ଦୀର୍ଘ ୩୦ ବର୍ଷ କାଳ ସେ ସଂପୂର୍ଣ୍ଣ ଅରାଜନୈତିକ ଜୀବନ ଯାପନ କରି ନିଜର ଜମିଦାରି ପରିଚାଳନା, କୃଷି ବା କୌଣସି ପ୍ରତିଷ୍ଠିତ କମ୍ପାନୀର ଡ଼ିରେକ୍ଟର ଭାବରେ କାଳଯାପନ କରୁଥିଲେ । ୧୯୬୭ ମସିହା ସାଧାରଣ ନିର୍ବାଚନ ପୂର୍ବରୁ ଦେଶରେ କଂଗ୍ରେସ ବିରୋଧୀ ଜନମତ ସ୍ପଷ୍ଟ ପ୍ରତିଫଳିତ ହୋଇ ରହିଥାଏ । ଓଡ଼ିଶାର ବରିଷ୍ଠ ଜନନାୟକ ବିଜୁ ପଟ୍ଟନାୟକ ମହାରାଜାଙ୍କୁ ସାକ୍ଷାତ କଲେ । ବିଜୁ ବାବୁଙ୍କ ସ୍ୱର୍ଗୀୟ ପିତା ଲକ୍ଷ୍ମୀନାରାୟଣ ପଟ୍ଟନାୟକ ପାରଳାଖେମୁଣ୍ଡିର ଦେୱାନ ଥିଲେ । ସେଇ ସୂତ୍ରରେ ମହାରାଜାଙ୍କର ତାଙ୍କ ସହିତ

ପାାରିବାରିକ ଘନିଷ୍ଠ ବନ୍ଧୁତା । ମାତ୍ର ରାଜନୀତିରେ ଭାଗ ନେବାକୁ ସେ ଦୃଢ଼ ଅନିଚ୍ଛା ପ୍ରକାଶ କଲେ । ମହାରାଜାଙ୍କର ତତ୍‌କାଳୀନ ଦେୱାନ କୃଷ୍ଣମୂର୍ତ୍ତି କହିବାର ଶୁଣିଛୁ ଯେ ସେ କୁଆଡ଼େ କହିଥିଲେ Only a dog returns to its vomit ଅର୍ଥାତ୍ ଯାହା ଉଚ୍ଛିଷ୍ଟ ଭାବରେ ତ୍ୟକ୍ତ ତାକୁ ଗ୍ରହଣ କରିବା ମନୁଷ୍ୟର ପ୍ରକୃତି ବିରୁଦ୍ଧ ।

ସମ୍ବଲପୁର ନଗରପାଳିକାର କାର୍ଯ୍ୟନିର୍ବାହୀ ଅଧିକାରୀ ଥିବାବେଳେ ବଦଳି ଆଦେଶ କ୍ରମେ ମୁଁ ୧୧.୦୬.୧୯୬୭ ତାରିଖରେ ପାରଳାଖେମୁଣ୍ଡିରେ କାର୍ଯ୍ୟନିର୍ବାହୀ ଅଧିକାରୀ ଭାବରେ ଯୋଗଦାନ କଲି ଓ ୩୧.୦୮.୧୯୬୯ତାରିଖ ପର୍ଯ୍ୟନ୍ତ ଏହି ଦାୟିତ୍ୱରେ ଥିଲି । ପୌର ପରିଷଦକୁ ଭାଙ୍ଗି ଦିଆଯାଇଥିବାରୁ ଜଣେ ଅପେକ୍ଷାକୃତ ବରିଷ୍ଠ କର୍ମଚାରୀଙ୍କୁ ସ୍ଥାନାଭିଷିକ୍ତ କରାଯାଇଥାଏ । ତାଙ୍କ ପାଇଁ ସେତେବେଳେ ସ୍ୱତନ୍ତ୍ର ବାସଭବନ ନ ଥାଏ । ସେ ଭଡ଼ା ଘରେ ରହୁଥାନ୍ତି ।, ମୋର ବାସଭବନର ଅପରାର୍ଦ୍ଧରେ ସମସ୍ଥାନର ଜେନେରାଲ ମ୍ୟାନେଜର ଶ୍ରୀ ପାର୍ଥସାରଥି ରହୁଥାନ୍ତି । ତେଣୁ ତାଙ୍କ ମାଧ୍ୟମରେ ମହାରାଜାଙ୍କ ପାରଳାଖେମୁଣ୍ଡି କାର୍ଯ୍ୟକ୍ରମ ଅନୁଧ୍ୟାନ କରିବାରେ ସୁଯୋଗ ମତେ ମିଳିଗଲା । ସରକାର ତାଙ୍କ ଜମିଦାରି ପରିଚାଳନା ୧୯୫୨ ମସିହାରେ ନେଲା ପରେ ତାଙ୍କ ଦାୟିତ୍ୱ କମିଗଲା । ତା ପୂର୍ବରୁ ଜମିଦାରିର ପ୍ରତ୍ୟେକ କାର୍ଯ୍ୟ ସେ ଟିକିନିଖି ଦେଖାରଖା କରୁଥିଲେ । ପୂର୍ବରୁ କୁହାଯାଇଛି ସମୁଦାୟ ଜମିଦାରର ଏକ ତୃତୀୟାଂଶ ଓଡ଼ିଶାକୁ ଆସିଥିଲା । ଏହି ଆଞ୍ଚଳିକ ଜମିଦାରିର ପୂର୍ବରେ ଗାରାବନ୍ଧ ଓ ପଶ୍ଚିମରେ ବାରଣାସୀ (ବର୍ତ୍ତମାନ କାଶୀନଗର)ଥାଇ ପାରଳାଖେମୁଣ୍ଡି ଏହାର କେନ୍ଦ୍ରବିନ୍ଦୁ ଥିଲା । ରାଜ୍ୟ ପାଇବାର ମାତ୍ର ୩ବର୍ଷ ମଧ୍ୟରେ ମହାରାଜା ନିଜର ପରିଚାଳନା ଦକ୍ଷତା ପ୍ରତିପାଦନ କରି ସାରିଥିଲେ । ପ୍ରଜାମାନଙ୍କ ଦରଖାସ୍ତ ବିଚାର ଯେପରି ଅଯଥା ବିଳମ୍ବ ନ ହୁଏ ସେ ଦିଗରେ ସେ ନିଜେ ତିକ୍ଷ୍ଣ ଦୃଷ୍ଟି ଦେଉଥିଲେ । ପାରଳାଖେମୁଣ୍ଡି ଶତାୟୁ ଉତ୍କଳ ହିତୈଷିଣୀ ସମାଜର ସଭାପତି ସ୍ୱର୍ଗୀୟ ଭାଗୀରଥୀ ପାଢ଼ୀଙ୍କ ଠାରୁ ଶୁଣିଛି ଯେ ଏହା ପାରଳାର ପରମ୍ପରା । ସେ ଢଗ ବୋଲୁଥିଲେ-

ବାଡ଼ ହେଇଯେବେ ଖାଏ ବେଉସା
ବିରାଡ଼ି ହୋଇ ଯେ ନ ମାରେ ମୂଷା
ରଜା ହୋଇ ଯେବେ ତଣ୍ଡଇ ଚଷା
କହ କି ହୁଅଇ ସେ ଦେଶ ଦଶା !

ମହାରାଜାଙ୍କର ଅକାଳେ ସ୍ୱର୍ଗପ୍ରାପ୍ତି ପିତା ଗୌରଚନ୍ଦ୍ର ଗଜପତିଙ୍କୁ ଦେୱାନ

ମାଧ୍ୟାହ୍ନ ପୂର୍ବରୁ ପ୍ରତ୍ୟହ ଶୁଣାଉଥିଲେ ଯେ ସବୁ ଦେବାଳୟରେ ଦେବ ସେବା ଜାରି ରହିଲା, ଅତିଥି ଅଭ୍ୟାଗତମାନଙ୍କର ଚର୍ଚ୍ଚା ସରିଲା ପ୍ରଜାମାନଙ୍କର ଆପତ୍ତି ଶୁଣାଗଲା, ଜଳସେଚନ ନିମିତ୍ତ ଦରଖାସ୍ତ ଫଇସଲା ହେଲା, ମଣିମା ମଣୋହିକୁ ବିଜେ କରନ୍ତୁ । ତା'ପରେ ରାଜ ଦରବାର ଭଙ୍ଗ କରୁଥିଲେ ଓ ମାଧ୍ୟାହ୍ନ ଭୋଜନକୁ ଯାଉଥିଲେ । ମହାରାଜା ରାଜ୍ୟର ସମସ୍ତ ଜଳଧାରାର ଜଳସେଚନ କ୍ଷମତା ପ୍ରତ୍ୟକ୍ଷ ଭାବରେ ଅନୁଧ୍ୟାନ କରି ସେ ସବୁର ସଦୁପଯୋଗ ନିମିତ୍ତ ବ୍ୟବସ୍ଥା କରୁଥିଲେ । ଦେଶରେ ଜମିଦାରି ପ୍ରଥାର ଉଚ୍ଛେଦ ନିମିତ୍ତ ଅନ୍ୟ ଏକ ଯୁକ୍ତି ଥିଲା ଯେ ଜମିଦାରମାନେ ଜଳଧାରାର ରକ୍ଷଣାବେକ୍ଷଣ ନିମିତ୍ତ ଯତ୍ନଶୀଳ ନୁହନ୍ତି ଓ ଏହା କୃଷି ଉତ୍ପାଦନ ନିମିତ୍ତ ପ୍ରତିବନ୍ଧକ ହେଉଛି । ନିଜ ଜମିଦାରି ଓ ସରକାରୀ ମାହାଲମାନଙ୍କର ତୁଳନାତ୍ମକ ବିଶ୍ଳେଷଣ କରି ସେ ଏ ପ୍ରକାର ଉଦାହରଣ ଭ୍ରମାତ୍ମକ ବୋଲି ପ୍ରମାଣ କରିଥିଲେ । ନିଜେ ବିଶ୍ୱବିଦ୍ୟାଳୟରୁ ଡ଼ିଗ୍ରି ଅର୍ଜନ କରି ନ ଥିଲେ ମଧ୍ୟ ନିଜର ସୁଯୋଗ୍ୟ ଶିକ୍ଷମାନଙ୍କର ପ୍ରଭାବରେ ସେ ଉଚ୍ଚତର ଶିକ୍ଷା ଓ ବୈଷୟିକ ଶିକ୍ଷା ପ୍ରତି ବିଶେଷ ଧ୍ୟାନବାନ୍ ଥିଲେ । ଟେଲର ସ୍କଲରସିପ୍ ଫଣ୍ଡ ଓ ପରବର୍ତ୍ତୀକାଳରେ ୧୯୨୩ ମସିହାରୁ ଗରିବ ଛାତ୍ରମାନଙ୍କ ମନରେ ଦାୟିତ୍ୱବୋଧ ସୃଷ୍ଟି ନିମିତ୍ତ ଷାଠିଏ ହଜାର ଟଙ୍କାରେ ନାମିତ ଟେଲର ଋଣ ବୃତ୍ତି ପାଣ୍ଠି ଉଚ୍ଚ ଶିକ୍ଷା ପ୍ରସାରରେ ଆଶାତୀତ ଭାବରେ ସହାୟକ ହୋଇଥିଲା । ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ସମୟରେ କଟକ ରେଭେନ୍ସା କଲେଜକୁ ଛାଡ଼ି କେବଳ ପାରଳାଖେମୁଣ୍ଡିରେ ଡିଗ୍ରୀ କଲେଜ ଥିଲା । ତାଙ୍କୁ ୧୯୩୬ ମସିହାରେ ବ୍ରିଟିଶ ସରକାର ଯେତେବେଳେ ମହାରାଜା ଉପାଧିରେ ଭୂଷିତ କଲେ ଓ ତାଙ୍କର ପ୍ରଜାମାନେ ତାଙ୍କୁ ଅଭିନନ୍ଦନ ଜଣାଇଲେ ସେତେବେଳେ ସେ ସେମାନଙ୍କୁ ସେମାନଙ୍କର ସନ୍ତାନମାନଙ୍କର ସ୍ୱଳ୍ପ ବ୍ୟୟରେ ଉଚ୍ଚ ଶିକ୍ଷା ନିମିତ୍ତ ନିଜ କଲେଜରେ ବି.ଏ ଶ୍ରେଣୀ ଖୋଲିବା ନିମିତ୍ତ ପ୍ରତିଶ୍ରୁତି ଦେଲେ । ଆଇ.ଏ ଶ୍ରେଣୀରେ କୃଷି ଶିକ୍ଷାର ବ୍ୟବସ୍ଥା ଥିବା କଲେଜ ଓଡ଼ିଶାରେ ଏକମାତ୍ର ପାରଳାଖେମୁଣ୍ଡି । ପରବର୍ତ୍ତୀ କାଳରେ ଓଡ଼ିଶାରେ ପଶୁପାଳନ, ପଶୁଚିକିତ୍ସା ଓ କୃଷି ଖାଦ୍ୟ ଉତ୍ପାଦନ ବିଭାଗର ଶାସନମୁଖ୍ୟ ପାରଳାଖେମୁଣ୍ଡିର ସନ୍ତାନ ହୋଇଥିବା ବିଚିତ୍ର ନୁହେଁ । ତାଙ୍କ ରାଜ୍ୟରେ ଦୁଇଟି କୃଷି ଫାର୍ମରେ ଉନ୍ନତ କୃଷିର ବ୍ୟବସ୍ଥା ଥିଲା । ଉଚ୍ଚ ବୈଷୟିକ ଯୋଗ୍ୟତା ସମ୍ପନ୍ନ କର୍ମଚାରୀ ଏହାର ଦାୟିତ୍ୱରେ ଥିଲେ । ଉନ୍ନତ ଧରଣର ବୀଜ ଓଡ଼ିଶା ବାହାରୁ ଅଣାଯାଇ ଏଠାରେ ବଂଶ ବୃଦ୍ଧି କରାଯାଇ ପ୍ରଜାମାନଙ୍କୁ ଯୋଗାଇଦିଆଯାଉଥିଲା । କୃଷିବୀଜ ବ୍ୟତୀତ ଉନ୍ନତ ଜାତୀୟ ଗୋରୁ ଓ ମହିଷି ମଧ୍ୟ ଏହି ଫାର୍ମରେ ରଖା ଯାଉଥିଲେ । ଭାରବହନ

ଓ ଦୁଗ୍ଧ ଉତ୍ପାଦନ ଦୁଇ ଦିଗରେ ଲାଭଦାୟକ ଉନ୍ନତମାନର ଗୋରୁ ଅଣା ଯାଉଥିଲେ । ପ୍ରଜାମାନେ ନିଜର ପାଳିତ ଜନ୍ତୁମାନଙ୍କ ତୁଳନାରେ ଏମାନଙ୍କର ଉପାଦେୟତା ଓ ଉପଯୋଗିତା ଦେଖୁଥିଲେ । ସେମାନେ ଯେପରି ଏହି ସୁଯୋଗ ନିଜେ ଉପଭୋଗ କରିପାରିବେ ସେହି ଉଦ୍ଦେଶ୍ୟରେ ବର୍ଷେ ଦୁଇ ବର୍ଷ ଅନ୍ତରରେ ଫାର୍ମର ଉନ୍ନତମାନର ଜନ୍ତୁମାନଙ୍କୁ ନିଲାମ କରି ବିଭିନ୍ନ ଗ୍ରାମମାନଙ୍କୁ ଯୋଗାଇ ଦିଆଯାଉଥିଲା । ଗଞ୍ଜାମରେ ଘୁମସର ଜାତୀୟ ଗୋରୁ ସହିତ ଏହି ନୂତନ ଆମଦାନୀ ପଶୁମାନଙ୍କ ମିଶ୍ରଣ ମଧ୍ୟ ଲାଭ ଦାୟକ ଥିଲା । କୃଷି ନିମିତ୍ତ ସେ ଉନ୍ନତ ଧରଣର କୋଇମ୍ବାଟୁର ଆଖୁ, ଜଡା,କପା, ଅଲଶି, (ଜିଞ୍ଜିଲି) ଓ ଡ଼ାଲି ଜାତୀୟ ଫସଲର ପ୍ରବର୍ତ୍ତନ କରିଥିଲେ । ଆଖୁ ଚାଷରୁ ଅଧିକ ଲାଭ ପାଇବା ଉଦ୍ଦେଶ୍ୟରେ ସେ ଗୁଡ଼ ତିଆରି ନିମିତ୍ତ ଉନ୍ନତ ଧରଣର ଚୂଲା, କରେଇ, ଆଖୁଖାଇରେ ଉନ୍ନତ ରନ୍ଧନ ପ୍ରଣାଳୀ, ବେଶି ଦିନ ଗୁଡ଼ ସାଇତି ରଖି ପାରିବାର ପ୍ରଣାଳୀ ଚାଷମାନଙ୍କ ମଧ୍ୟରେ ଲୋକପ୍ରିୟ କରାଇଥିଲେ । ନିଜ ଫାର୍ମରେ ଜନ୍ତୁମାନଙ୍କ ନିମିତ୍ତ ଉନ୍ନତ ଧରଣର ଗୁହାଳ ତିଆରି କରାଯାଇ ପ୍ରଜାମାନଙ୍କୁ ଦେଖାଇ ଦିଆ ଯାଉଥିଲା । କମ୍ପୋଷ୍ଟ ଖତର ପ୍ରଚଳନ ଚାଷିମାନଙ୍କ ମଧରେ ସେ ସମୟରେ ନଥାଏ, ମାତ୍ର ନିଜେ ମହାରାଜା ନିଜର କମ୍ପୋଷ୍ଟ ତିଆରି କରି କ୍ଷେତ୍ରରେ ବ୍ୟବହାର କରିବା ସଙ୍ଗେ ସଙ୍ଗେ ପ୍ରଜାମାନଙ୍କୁ ଫାର୍ମକୁ ଡ଼ାକି ଏହା ଦେଖାଇ ଖତ ହିସାବରେ ଏହାର ଉପାଦେୟତା ବୁଝାଇ ସେମାନଙ୍କୁ ଏ ଦିଗରେ ପ୍ରଭାବିତ ଓ ପରେ ଉତ୍ସାହିତ କରୁଥିଲେ । ଏସବୁ କାର୍ଯ୍ୟ ନିଜ ଫାର୍ମରେ ହେଉଥିବାବେଳେ ତାଙ୍କର ନୀତିବାଣୀ ଥିଲା The Master'ss foot is the best manure । ଭୂମିର ମାଲିକର ପାଦତଳେ ପଡ଼ିଲେ ଉର୍ବରତା ସବୁଠାରୁ ବେଶି ବଢ଼େ । ପ୍ରତ୍ୟହ ଦୁଇବେଳା ସେ ପାରଳାଖେମୁଣ୍ଡି ଉପକଣ୍ଠରେ ନିଜର ହୋମ ଫାର୍ମକୁ ଯାଉଥିଲେ । ସକାଳେ ସୂର୍ଯ୍ୟୋଦୟ ପୂର୍ବରୁ ଏହି ଯତ୍ରା ଆରମ୍ଭ ହେଉଥିଲା । ଜମିଦାରି ବିଲୋପ ପର୍ଯ୍ୟନ୍ତ ପାରଳା ପ୍ରାସାଦରେ ପ୍ରତ୍ୟହ ନହବତ ବାଦ୍ୟ ବାଜୁଥିଲା ଓ ଏଥି ସହିତ ତାଙ୍କର କୃଷି ଫାରମକୁ ଯାତ୍ରା ଆରମ୍ଭ ହେଉଥିଲା । ଏହା ବ୍ୟତୀତ ଉତ୍କୃଷ୍ଟ ଜାତୀୟ ମକା, ଲଙ୍କା, ବିଲାତିଆଳୁ, ବିଲାତି ବାଇଗଣ, ଫୁଲକୋବି, ବନ୍ଧାକୋବି,ଓଲକୋବି (ନଲଖଲ), ମଟର, ଗାଜର, ସାଲଗମ, ମୂଳା ଓ ବିଭିନ୍ନ ବିନ ଚାଷର ପ୍ରବର୍ତ୍ତନ କରାଇ ଏହି ପରିବାଗୁଡିକର ବ୍ୟବହାରକୁ ସେ ଲୋକପ୍ରିୟ କରି ପାରିଥିଲେ । ବର୍ତ୍ତମାନ ମଧ ଓଡ଼ିଶାରେ ପାରଳାଖେମୁଣ୍ଡିରେ ପନିପରିବା ଓ ଋତୁ ଉପଯୋଗୀ ଫଳ ସବୁଠାରୁ ଶସ୍ତା । ଏହାର

କାରଣ କୃଷି ସହିତ ଓତଃପ୍ରୋତଃ ଭାବରେ ଜଡ଼ିତ ଜଳସେଚନର ଗୁରୁତ୍ୱ ଉପଲବ୍ଧି କରି ରାଜ୍ୟରେ ୫୧୯ଟି ଜଳଧାରାର ରକ୍ଷଣାବେକ୍ଷଣ ପ୍ରତି ଗୁରୁତ୍ୱ ପ୍ରଦାନ କରୁଥିଲେ । ତାଙ୍କର ଦୂରଦୃଷ୍ଟି ଓ ଜଳସେଚନ ସୁବିଧା ଦୃଷ୍ଟିରୁ ବର୍ତ୍ତମାନ ବିଭିନ୍ନ ପ୍ରକାରର ପନିପରିବା ଓ ଋତୁ ଉପଯୋଗୀ ଫଳ ଯଥେଷ୍ଟ ଉତ୍ପାଦନ ହୋଇ ପାରୁଛି ।

୧୯୫୪ ମସିହାରେ ହିନ୍ଦୁସ୍ଥାନ ଷ୍ଟିଲ ଲିମିଟେଡର, ଦୀର୍ଘଦିନ ଧରି ମାନ୍ଦ୍ରାଜର ମେଟୁର ଇଣ୍ଡଷ୍ଟ୍ରିଜର ଓ ସିଂପସନ୍ ଏଣ୍ଡ୍ କୋ.ର ପୁନାର ମଞ୍ଜୁରୀ ଷ୍ଟଡ ଫାର୍ମର ପୁଣ୍ଡିର ଲବଣ ଉତ୍ପାଦନ କାରଖାନାର ଓ ପାରଳାର ଗଜପତି ଷ୍ଟିଲ ଇଣ୍ଡଷ୍ଟ୍ରିଜର ସେ ଡିରେକ୍ଟର ଥାଇ ଶିଳ୍ପ ବିକାଶ ସହିତ ସଂପୃକ୍ତ ଥିଲେ । ୧୯୧୩ମସିହାରୁ ୧୯୪୭ମସିହା ମଧ୍ୟରେ ସେ ଶିକ୍ଷାରେ ୨୧ଲକ୍ଷ ଓ ଜଳସେଚନରେ ସାଢ଼େ ବାରଲକ୍ଷ ଟଙ୍କା ବ୍ୟୟ କରିଥିଲେ । ସମଗ୍ର ଭାରତ ବର୍ଷରେ ନୂତନ ରେଳଲାଇନ ପକାଇବାର ଓ ଏହାର ରକ୍ଷଣାବେକ୍ଷଣ ଓ ପରିଚାଳନା କ୍ଷେତ୍ରରେ ସେ ଏକମାତ୍ର ଜମିଦାର ଥିଲେ । ଜମିଦାରିରେ ୭୪ମାଇଲ ରାସ୍ତାର ରକ୍ଷଣାବେକ୍ଷଣ ନିମିତ୍ତ ବାର୍ଷିକ ଟ୭୮୦୦ ଖର୍ଚ୍ଚ ହେଉଥିଲା । ଏହି ରାସ୍ତାମାନଙ୍କ ଦ୍ୱାରା ଜମିଦାରିର କୌଣସି ବଡ଼ଗ୍ରାମ ଗମନାଗମନର ସୁବିଧାରୁ ବଞ୍ଚିତ ନଥିଲା, ଅଥଚ ବର୍ତ୍ତମାନ ଅଷ୍ଟମ ଯୋଜନା କାଳରେ ସମଗ୍ର ଦେଶରେ ଏହି ଲକ୍ଷ୍ୟ ରଖାଯାଇଛି । ସାମ୍ପ୍ରତିକ ରାଜନୀତିରେ ରାଜନୈତିକ କ୍ଷମତା ହାସଲ କରି ବ୍ୟବସ୍ଥାପକ ବା ମନ୍ତ୍ରୀମାନେ ରାଜକୋଷର ଅବାରିତ ଅପବ୍ୟୟକୁ ପ୍ରଶ୍ରୟ ଦେଉଥିବା ସମୟରେ କ୍ଷମତା ରାଜନୀତିର ଫଳଭୋଗ କରି ନିଜର ବେତନ ଓ ଗସ୍ତ ଭତ୍ତା ଗ୍ରହଣ ନ କରି ତାହା ସତ୍କର୍ମରେ ବ୍ୟୟ ନିମିତ୍ତ ପ୍ରଦାନ କରିବା ଅବିଶ୍ୱାସ୍ୟ ହୋଇପାରେ । ରାଜନୈତିକ ଜୀବନକାଳ ମଧ୍ୟରେ ସେ ନିଜର ପ୍ରଭୁତ ଅର୍ଥ ବ୍ୟୟ କରିଥିଲେ । ନିଜପାଇଁ, ଏପରିକି ନିଜର ନିର୍ବାଚନ ମଣ୍ଡଳୀ ନିମିତ୍ତ ସରକାରୀ ଅର୍ଥବ୍ୟୟ କରିବାକୁ ସେ କୁଣ୍ଠାବୋଧ କରୁଥିଲେ । ଉଦାହରଣ ସ୍ୱରୂପ, ପାରଳାଖେମୁଣ୍ଡିର ଶେଷ ପଶ୍ଚିମ ସୀମାନ୍ତ ବାରଣାସୀ ଗ୍ରାମ (ଅଧୁନା କାଶୀନଗର) । ପାରଳାଖେମୁଣ୍ଡିରୁ ଏହାର ଦୂରତା ପ୍ରାୟ ୩୦କି.ମି । ମିଳିତ ମନ୍ତ୍ରୀମଣ୍ଡଳ ସମୟରେ ସ୍ଥାନୀୟ ଅଧିବାସୀମାନେ ଏହି ରାସ୍ତା ସର୍ବକାଳ ଉପଯୋଗୀ ପକ୍କା କରିବା ନିମିତ୍ତ ପ୍ରଧାନମନ୍ତ୍ରୀଙ୍କୁ ନିବେଦନ କଲେ । ପ୍ରଧାନମନ୍ତ୍ରୀଙ୍କ ପାରଳାଖେମୁଣ୍ଡି ଗସ୍ତ ସମୟରେ ଏହି ନିବେଦନ ପତ୍ର ପ୍ରଦାନ କରାଗଲା । ମହାରାଜା ଗ୍ରାମମାନଙ୍କର ପ୍ରଧାନ ମୁଖିଆ (ନାଇଡୁ)ମାନଙ୍କୁ ବୁଝାଇ ଦେଲେ ଯେ ସେ କେବଳ ନିଜ ଜମିଦାରି ବା ନିର୍ବାଚନ ମଣ୍ଡଳୀର ନୁହନ୍ତି, ସମଗ୍ର ପ୍ରଦେଶର ପ୍ରଧାନମନ୍ତ୍ରୀ । ଅନ୍ୟ ଅଞ୍ଚଳରେ ଅର୍ଥ ବ୍ୟୟ ନ କରି

ତାହା ନିଜ ଜମିଦାରିରେ ରାସ୍ତା ନିର୍ମାଣ ବ୍ୟୟକଲେ ତାଙ୍କର ବ୍ୟକ୍ତିତ୍ୱ ଖର୍ବ ହେବ। ଏହା କରିବାକୁ ସେ ସୁଯୋଗ ଦେବେ ନାହିଁ କହିବାରୁ ନିବେଦନକାରୀମାନେ ସେମାନଙ୍କର ଦରଖାସ୍ତ ଫେରସ୍ତ ନେଲେ। ପରେ ମହାରାଜା ସମସ୍ଥାନ ବ୍ୟୟରେ ଏହି ରାସ୍ତା ତିଆରି କରାଇଥିଲେ।

୧୮୮୬ମସିହାରେ ପ୍ରତିଷ୍ଠିତ ପାରଳାଖେମୁଣ୍ଡି ମ୍ୟୁନିସିପାଲିଟି ଓଡ଼ିଶାର ଅତୀବ ପୁରାତନ ସ୍ୱାୟତ୍ତଶାସନ ଅନୁଷ୍ଠାନ। ସମସ୍ଥାନ ସହରରେ ନିଜର କୋଠାବାଡ଼ି ନିମିତ୍ତ ବାର୍ଷିକ ଟ୬୮୫୦ଙ୍କା ଟିକସ ଦେଉଥିଲେ। ମ୍ୟୁନିସିପାଲିଟିର କୌଣସି କର୍ମକର୍ତ୍ତା ଏକଦା ଏହା ବେଶି ବୋଲି ଅନୁଭବ କରି ତାଙ୍କୁ କମାଇ ଦେଇଥିବା ଜାଣି ମହାରାଜା କଠୋର ସମାଲୋଚନା କରି ଜିଲ୍ଲା କଲେକ୍ଟରଙ୍କୁ ପତ୍ର ଲେଖି ପୂର୍ବ ଦେୟ ବଜାୟ ରଖିଥିଲେ। ପାରଳାଖେମୁଣ୍ଡି ଗଙ୍ଗବଂଶୀ ରାଜାମାନେ ଆତ୍ରେୟ ଗୋତ୍ରୀୟ ଓ ସେମାନେ ଶ୍ରୀ ଚୈତନ୍ୟ ପନ୍ଥାନୁଲମ୍ବୀ ବୈଷ୍ଣବ। ବୈଦିକ ବ୍ରହ୍ମଣମାନଙ୍କର ପୃଷ୍ଠପୋଷକତା ନିମିତ୍ତ ସେମାନେ ବହୁ ବ୍ରାହ୍ମଣ ଶାସନ, ଓ ଆଗ୍ରାହରମ୍ (ବ୍ରାହ୍ମଣଙ୍କୁ ଦାନ ଗ୍ରାମ)ବସାଇଥିଲେ ଓ ବହୁ ଇନାମ (ବ୍ରହ୍ମୋତ୍ତର)ଦାନ କରିଥିଲେ। ସମଗ୍ର ଜମିଦାରିରେ ଏ ପ୍ରକାର ଦାନ ଭୂମିର ପରିମାଣ ୯୬୬୪ ଏକର ଥିଲା। ରାଜ୍ୟର ସମଗ୍ର କର୍ଷିତ ଭୂମିର ଏହା ଶତକଡ଼ା ୧୮ଭାଗ ଥିଲା। ୧୯୪୮ ପ୍ରଚଳିତ ହାରରେ ଏଥିରୁ ରାଜସ୍ୱ ଟ୨୮୯୯୨ଙ୍କା ପାଇବାର ଥିଲେ ମଧ୍ୟ ଇନାମ ଦାନ ହେତୁ ଜମିଦାରି ମାତ୍ର ଟ୧୭୮୯ଙ୍କା ଅସୁଲ କରୁଥିଲେ। ବୈଷ୍ଣବ ଭାବରେ ଜମିଦାର ଏଥିପାଇଁ ଗର୍ବିତ ଥିଲେ। ରାଧାକାନ୍ତ ମଠ ମହନ୍ତ ତାଙ୍କର ଗୁରୁବଂଶ। ମାଣିକେଶ୍ୱରୀ ତାଙ୍କର ଇଷ୍ଟଦେବୀ ଓ ଶ୍ରୀ ଜଗନ୍ନାଥ ମହାପ୍ରଭୁ ଇଷ୍ଟଦେବ। ମୂର୍ତ୍ତିର ବିଶାଳତା ଓ ଉଚ୍ଚତା ଦୃଷ୍ଟେ ପାରଳାର ଜଗନ୍ନାଥ ପୁରୀର ଜଗନ୍ନାଥଙ୍କ ସମକକ୍ଷ। ଆଗରୁ ୩ଗୋଟି ରଥ ହେଉଥିଲେ ମଧ ଜମିଦାରି ବିଲୋପଠାରୁ ତିନି ମୂର୍ତ୍ତି ଗୋଟିଏ ରଥରେ ବିଜେ କରିଥାନ୍ତି। ୧୯୬୮ ମସିହା ରଥଯାତ୍ରା ସମୟରେ ରଥ ଉପରକୁ ଫଳ ପକାଇବା ସମୟରେ କେତେକ ଉତ୍କ୍ଷିପ୍ତ ଛାତ୍ରଙ୍କ ମାଡ଼ରେ ଜଗନ୍ନାଥଙ୍କ ଶ୍ରୀ ବିଗ୍ରହ ଆଘାତ ପ୍ରାପ୍ତ ଓ କ୍ଷତିଗ୍ରସ୍ତ ହେଲା। ମହାରାଜା ସେ ସମୟରେ ଉତ୍କାମଣ୍ଡରେ ରହୁଥିଲେ। ଏ ଖବର ପାଇବା ମାତ୍ରେ ସେ ପାରଳାଖେମୁଣ୍ଡିକୁ ପ୍ରାତ୍ୟାବର୍ତ୍ତନ କଲେ,ନିଜ ଇଷ୍ଟଦେବଙ୍କ ଶ୍ରୀ ଅଙ୍ଗରେ ଆଘାତ ତାଙ୍କୁ ମରଣବ୍ୟଥା ଦେଇଥାଏ। ପୌର ପରିଷଦ ଓ ନଗରର କରଦାତାମାନଙ୍କ ତରଫରୁ ତାଙ୍କଠାରେ କ୍ଷମା ଭିକ୍ଷା ନିମିତ୍ତ ପୌର ପରିଷଦ କାର୍ଯ୍ୟ ନିର୍ବାହୀ ଅଧିକାରୀ ଭାବରେ ମୁଁ

ତାଙ୍କ ସହିତ ସାକ୍ଷାତ ପାଇଁ ସମୟ ଧାର୍ଯ୍ୟ କଲି । ସାକ୍ଷାତ ସମୟରେ ତାଙ୍କର ଗଭୀର ମର୍ମବ୍ୟଥା ଉପଲବ୍ଧି କରି ପାରିଲି । ଆଧୁନିକ ଜଡବାଦ-ପ୍ରଧାନ ଶିକ୍ଷାର କୁ-ପରିଣାମ ଓ ଏ ଦିଗରେ ଶିକ୍ଷକମାନଙ୍କର ପ୍ରଭାବର ଅଭାବ ଏ ପ୍ରକାର ବିଶୃଙ୍ଖଳ ଆଚରଣର କାରଣ ଓ ଏହା ତାଙ୍କୁ ଅତିଶୟ ବ୍ୟଥିତ କରିଥିଲା । ସେ ନିଜେ ଯୌବନରେ ପ୍ରଭୂତ ଧନ ସମ୍ପତ୍ତି ଓ ପ୍ରଭୁତ୍ୱର ମାଲିକ ଥାଇ ମଧ୍ୟ ନିଜର ଆଦର୍ଶ ଶିକ୍ଷକ ଶ୍ୟାମସୁନ୍ଦର ରାଜଗୁରୁ, ଏଡମଣ୍ଡ କେଣ୍ଡଲର, ମରିସନ୍ ଓ ଡ଼ି.ଲା.ହେ-ଏମାନଙ୍କର ପ୍ରଭାବରେ କିପରି ନିଜକୁ ସଂଯତ ରଖି ଦେଶର ସମୂହ ଉନ୍ନତିରେ ନିୟୋଜିତ କରି ପାରିଥିଲେ ସେ ତାହାର ଉଦାହରଣ ଦେଲେ । ବାଲ୍ୟାବସ୍ଥାରେ ଗୃହଶିକ୍ଷକ, ଗଞ୍ଜାମର ପ୍ରଥମ ଓଡ଼ିଆ ଗ୍ରାଜୁଏଟ୍ ଶ୍ୟାମସୁନ୍ଦର ରାଜଗୁରୁଙ୍କୁ ସେ ଏପରି ଭୟ କରୁଥିଲେ ଯେ ଥରେ ତାଙ୍କ ତାଡ଼ନାରୁ ରକ୍ଷା ପାଇବା ନିମିତ୍ତ ସେ ହୀରାଖଣ୍ଡ ଖାଇ ଆତ୍ମହତ୍ୟା କରିବାକୁ ଉଦ୍ୟମ କରିଥିଲେ ।

ଏହି ସାକ୍ଷାତକାର ସମୟରେ ମାଣିକେଶ୍ୱରୀଙ୍କ ପ୍ରତି ମହାରାଜାଙ୍କର ଗଭୀର ଭକ୍ତି ଥିବାର ମୁଁ ଜଣି ପାରିଲି । ସେ କହିଲେ ଜୀବନରେ ଯଦି ସେ କିଛି କରିବାକୁ ସମର୍ଥ ହୋଇଛନ୍ତି ତାହା ତାଙ୍କର ଆଦର୍ଶ ଶିକ୍ଷକମାନଙ୍କର ପ୍ରୋତ୍ସାହନ ଓ ମାଣିକେଶ୍ୱରୀଙ୍କର କୃପା । ଗୋଲଟେବୁଲ ବୈଠକକୁ ଯିବା ସମୟରେ ସେ ନିଜ ସାଙ୍ଗରେ ମାଣିକେଶ୍ୱରୀଙ୍କ ଆଶୀର୍ବାଦ, ଗଙ୍ଗାଜଳ, ପାଟଲୁଗା, ନିଜର ଭୋଜନ ପ୍ରସ୍ତୁତି ନିମିତ୍ତ ସୁଆର (ପାଚ଼କ) ଓ ଯୋଡୀ ମହୁରୀ ବାଦ୍ୟ ନେଇ ଯାଇଥିଲେ । ଲଣ୍ଡନର ଟ୍ରାଫଲଗାର ସ୍କୋୟାର ତାଙ୍କ ବାଦ୍ୟ ଧ୍ୱନିରେ ପ୍ରତିଧ୍ୱନିତ ହୋଇ ତାଙ୍କ ଆଗମନର ଉଦ୍ଦେଶ୍ୟ ସମ୍ବାଦପତ୍ରମାନଙ୍କରେ ପ୍ରକାଶୀତ ହେବାର ସହାୟକ ହୋଇଥିଲା । ଶୁଣାଯାଏ ହାଉସ ଅଫ୍ କମନ୍ସର ସେ ଦିନର କାର୍ଯ୍ୟସୂଚୀରେ ଓଡିଶା ପ୍ରଦେଶ ଗଠନ ନିମ୍ନ ଅଂଶରେ ରାଖାଯାଇଥାଏ । ରାତ୍ରିର ଶେଷ ଭାଗକୁ ସଂସଦର ସଭ୍ୟମାନେ ପ୍ରାୟ ଆଲୋଚନାରେ ଆଗ୍ରହ ପ୍ରକାଶ କରି ନ ଥାନ୍ତି ଓ ସମୟ ସମୟରେ କୋରମ ମଧ ହୋଇ ନ ଥାଏ । ସମ୍ବାଦପତ୍ର ମାଧମରେ ନିଜର ପ୍ରଚ଼େଷ୍ଟା କରି ବିଷୟର ଗୁରୁତ୍ୱ ଦର୍ଶାଇ ସେ ହାଉସ ଅଫ୍ କମନ୍ସ କ୍ଲର୍କଙ୍କୁ (ସଚିବ) ପ୍ରଭାବିତ କରି ବିଷୟବସ୍ତୁ ବିଷୟସୂଚୀ ଶୀର୍ଷ ଭାଗକୁ ଆଣି ପାରିଥିଲେ ।

ସାକ୍ଷାତ ସମୟରେ ମାଣିକେଶ୍ୱରୀଙ୍କ କୃପା ବିଷୟରେ ସେ ଦୁଇଗୋଟି ଉଦାହରଣ ଦେଇଥିଲେ । ସମସ୍ତେ ଜାଣନ୍ତି ମହାରାଜା ମାନ୍ଦ୍ରାଜ ପର୍ଯ୍ୟନ୍ତ ଗଲେ ଗୋଟିଏ ସମ୍ପୂର୍ଣ୍ଣ ପ୍ରଥମ ଶ୍ରେଣୀ ବଗି ତାଙ୍କପାଇଁ ହାଉଡାରୁ ମାନ୍ଦ୍ରାଜ ପର୍ଯ୍ୟନ୍ତ ରିଜର୍ଭ ରଖାଯାଇଥାଏ ଓ ସେଥିରେ ସେ ପଲାଶା ରେଲଷ୍ଟେସନରେ ଆରୋହଣ କରନ୍ତି ।

ଏକଦା ନିଜର ଜଣେ ଇଉରୋପୀୟ ଅତିଥିଙ୍କ ସହିତ ମାନ୍ଦ୍ରାଜ ଯାଉଥାନ୍ତି । ପଳାଶାରେ ଗାଡ଼ିରେ ଚଢ଼ିବା ପରେ ନିଦ ଲାଗିଯାଇଥିଲା । ପାନାସକ୍ତ ବଂଧୁ ଜଣକ ଗାଢ଼ ନିଦ୍ରାଗ୍ରସ୍ତ । ମହାରାଜା ହଠାତ୍ ମାଣିକେଶ୍ୱରୀଙ୍କୁ ସ୍ୱପ୍ନରେ ଦେଖିଲେ । ଦେବୀ ତାଙ୍କୁ ଶୁଣାଇଲେ ଏହି ଟ୍ରେନ ଅତିଶୀଘ୍ର ଦୁର୍ଘଟଣାଗ୍ରସ୍ତ ହେବ । ସେ ସତର୍କ ରୁହନ୍ତୁ । ନିଦରୁ ଉଠି ସେ ବନ୍ଧୁଙ୍କୁ ବହୁ କଷ୍ଟରେ ଉଠାଇଲେ । ସ୍ୱପ୍ନ ବିବରଣୀ ଶୁଣାଇଲେ । ବନ୍ଧୁ ଶଯ୍ୟା ନ ଛାଡ଼ିନ୍ତି, ଜୋରକରି ସେ ତାଙ୍କୁ ଶଯ୍ୟାରୁ ଟାଣି ତଳେ ପକାଇଦେଲେ, ନିଜେ ଜାଗ୍ରତ ରହିଲେ । ଅଳ୍ପ ସମୟ ପରେ ଦୁସି ଷ୍ଟେସନଠାରେ ଏହି ଟ୍ରେନ ଦୁର୍ଘଟଣା ଗ୍ରସ୍ତ ହେବା ଫଳରେ କେତେକ ଯାତ୍ରୀ ମୃତାହତ ହେଲେ । ମହାରାଜା ସାମାନ୍ୟ କ୍ଷତିରୁ ମଧ ରକ୍ଷା ପାଇଲେ । ଆଉ ଥରେ ସେ ନିଜେ ଗାଡ଼ି ଚଳାଇ ଉପରବେଳା ହୋମ ଫାର୍ମକୁ ଯାଉଥିବା ସମୟରେ ମାଣିକେଶ୍ୱରୀଙ୍କ ଦର୍ଶନ ପାଇଲେ । ସୁସଜ୍ଜିତ ଦେବୀ ରାସ୍ତାର ଡାହାଣ ପାଖରୁ ବାମ ପାଖକୁ ତାଙ୍କ ଗାଡ଼ି ଆଗରେ ଚାଲିଗଲେ । ଏହାକୁ ଏକ ଅଘଟଣର ପୂର୍ବ ସୂଚନା ଭାବି ସେ ସତର୍କତା ସହିତ ଗାଡି ଚଳାଇ ହୋମ ଫାର୍ମରେ ପହଞ୍ଚିଲେ । ପ୍ରହରୀ ତାଙ୍କୁ ଦେଖି ତାଙ୍କର ପ୍ରିୟ ଆସନଟି ତାଙ୍କ ପାଇଁ ଆଣି ସେ ସବୁଦିନେ ବସୁଥିବା ଗୋଟିଏ ଆମ୍ବ ଗଛ ତଳେ ପକାଇଦେଲା । ଫାର୍ମରେ ଗୋଟିଏ ଦେଶୀ କୁକୁର ଥାଏ । ଆସନ ଗ୍ରହଣ କରି ମହାରାଜା ତାକୁ ପ୍ରତିଦିନ କିଛି ଖାଦ୍ୟ ଦିଅନ୍ତି । ମାତ୍ର ସେଦିନ ସେ ତାଙ୍କୁ ଆସନରେ ବସିବାକୁ ନ ଦେଇ ପହଞ୍ଚିବା ବେଳଠାରୁ ଅତି ଜୋରରେ ଭୁକିବାକୁ ଲାଗିଲା । ସେ ଚଉକିକୁ ବସିବାକୁ ଉଦ୍ୟତ ହେଲେ ତାଙ୍କର ପ୍ୟାଣ୍ଟ ଧରି ଘୋଷାରିବାକୁ ଲାଗିଲା । କୌଣସି ମତେ ତାଙ୍କୁ ଚଉକି ପାଖକୁ ଯିବାକୁ ନ ଦେବାରୁ ସେ ଚଉକିଦାରକୁ ଡାକି ଚଉକିଟି ଦେଖିବାକୁ କହିଲେ । ତନ୍ନ ତନ୍ନ କରି ଖୋଜି ଦେଖାଗଲା ଯେ ଗୋଟିଏ ମାରାତ୍ମକ ଚିତି ସାପ(Krait) ସେଇ ଚଉକିର ସ୍ପ୍ରିଙ୍ଗ ମଧ୍ୟରେ ଆତ୍ମଗୋପନ କରିଛି ଓ ଆସନ ଗ୍ରହଣ କରିଥିଲେ ଏହା ଶିର ଦେଶରେ ଆଘାତ କରିବା ସମ୍ପୂର୍ଣ୍ଣ ସମ୍ଭବ ଥିଲା । ଦୁଇ ଘଟଣା ବର୍ଣ୍ଣନା କରି ଏହା ଅବିଶ୍ୱସନୀୟ ହେଲେ ମଧ ନିଜର ବ୍ୟକ୍ତିଗତ ଅଭିଜ୍ଞତାରୁ ସତ୍ୟ ଓ ଲୌକିକ ବୋଲି କହିଲେ । ବର୍ତ୍ତମାନ ଯୁଗରେ ମଧ ଅଲୌକିକ ଘଟଣା ଘଟୁଅଛି ବୋଲି ତାଙ୍କର ବିଶ୍ୱାସ ଥିଲା ।

ମହାରାଜାଙ୍କର ଜନ୍ମ ୧୮୯୨ ମସିହା ବୈଶାଖ କୃଷ୍ଣ ଅମାବାସ୍ୟା ତିଥିରେ । ସେଇ ଅନୁସାରେ ତାଙ୍କର ୭୭ତମ ସ୍ୱନକ୍ଷତ୍ର ତା ୧୭.୦୪.୧୯୬୮ରେ ପାଳିତ ହେବାକୁ ଥିଲା । ପୌର ପରିଷଦ ଆନୁକୂଲ୍ୟରେ ଏ ଉତ୍ସବ ପାଳିତ ହେଲା ।

ମହାରାଜା ସେ ସମୟରେ ଉଟ୍‌କାମଣ୍ଡରେ ରହୁଥାନ୍ତି । ଏହି ପୁସ୍ତକ ପ୍ରଥମାର୍ଦ୍ଧରେ ବର୍ଣ୍ଣିତ ବିଷୟବସ୍ତୁ ଉପରେ ଆଧାରିତ ମୋର ଏକ ପ୍ରବନ୍ଧ 'ନବଉତ୍କଳ ନିର୍ମାତା-ପାରଳାଖେମୁଣ୍ଡି ମହାରାଜା' ତଦୁପଲକ୍ଷେ ତା ୨୭.୪.୧୯୬୮ର ଦୈନିକ 'ସମାଜ', 'ପ୍ରଜାତନ୍ତ୍ର', 'ମାତୃଭୂମି', 'ସ୍ୱରାଜ୍ୟ' ଆଦି ,ସମ୍ବାଦପତ୍ରମାନଙ୍କରେ ପ୍ରକାଶ ପାଇଥିଲା । ସମ୍ବାଦପତ୍ରମାନେ ତାଙ୍କର ଦୀର୍ଘ ଜୀବନ କାମନା କରି ସମ୍ପାଦକୀୟ ମଧ୍ୟ ଲେଖିଥିଲେ । ପ୍ରବନ୍ଧ ପ୍ରକାଶ ପାଇବା ପରେ ଏହା ମହାରାଜାଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ତା ୩.୭.୧୯୬୮ର 'ସମାଜ'ରେ ସମ୍ପାଦକଙ୍କୁ ଏକ ପତ୍ର ଲେଖି ସେ ଏହି ପ୍ରବନ୍ଧକୁ ସାଦରେ ଗ୍ରହଣ କରିବା ସଙ୍ଗେ ସଙ୍ଗେ ପ୍ରବନ୍ଧରେ ବର୍ଣ୍ଣିତ କେତେକ ତ୍ରୁଟି ମଧ୍ୟ ଦର୍ଶାଇଥିଲେ । ପରିଶିଷ୍ଟ ୧ରେ ଏହି ପତ୍ରଟି ଦିଆଗଲା । ପ୍ରବନ୍ଧଟି ଲୋକପ୍ରିୟ ହେବାପରି ମୋର ମନେ ହେଲା । କାରଣ ଏହାର ପ୍ରକାଶ ପରେ ଏହା ପାଠ କରି ବହୁ ବନ୍ଧୁ ଓ ମହାରାଜାଙ୍କର ଗୁଣଗ୍ରାହୀ ସଜ୍ଜନ ମୋତେ ପତ୍ର ଲେଖି ଏହି ପ୍ରବନ୍ଧଟିକୁ ପରିବର୍ତ୍ତନ ନିମିତ୍ତ ଅନୁରୋଧ କଲେ । ନବ ଉତ୍କଳ ପ୍ରଦେଶ ଗଠନ ତାଙ୍କର ଅବଦାନ ଅବିସ୍ମରଣୀୟ ଓ ଏହାର ପ୍ରାମାଣିକ ବିବରଣୀ ଲିପିବଦ୍ଧ ହେବା ଆବଶ୍ୟକ । ଏହି ଉଦ୍ଦେଶ୍ୟ ରଖି ମୁଁ ତାଙ୍କୁ ତା ୨୨.୭.୬୮ରେ ଏକ ପତ୍ର ଲେଖି ସାକ୍ଷାତକାର ପ୍ରାର୍ଥନା କଲି । ମାତ୍ର ଦୁଃଖର ବିଷୟ ତାଙ୍କର ଜେନେରାଲ ମେନେଜର ମୋର ପ୍ରତିବେଶି ଶ୍ରୀ ପି.ପାର୍ଥସାରଥି ମୋତେ ୨୩ ତାରିଖରେ ପତ୍ର ଲେଖି ଜଣାଇଲେ ଯେ ମହାରାଜାଙ୍କର ପରିବର୍ଦ୍ଧିତ ଜୀବନ ଚରିତ ପ୍ରକାଶନର କୌଣସି ଆବଶ୍ୟକତା ନାହିଁ । (ପରିଶିଷ୍ଟ)

ଏହି ଘଟଣା ପରେ ତାଙ୍କର ପରବର୍ତ୍ତୀ ଜନ୍ମଦିନ ତା ୧୭.୪.୬୯ରିଖରେ ପାଳନ କିରବା ନିମିତ୍ତ ବିଶିଷ୍ଟ ନାଗରିକ ପଣ୍ଡିତ ଯୁଗଳକିଶୋର ପାଣିଗ୍ରାହୀ, ରାଓ ସାହେବ କେ.ଭି.ଆପାରାଓ, ରାଧାଗୋବିନ୍ଦ ବେହେରା, ଆଇ.ସୋମେଶ୍ୱର ରାଓ, ତତ୍କାଳୀନ ସ୍ଥାନୀୟ ବ୍ୟବସ୍ଥାପକ ଏନ୍.କୁର୍ମାନାଇକଲୁ ବୋରା ଓ ସଦାନନ୍ଦ ପାଢ଼ୀ ପ୍ରମୁଖ ଉଦ୍ୟମ କଲେ । ଏହି ଉତ୍ସବ ସମାରୋହରେ ପାଳନ ନିମିତ୍ତ ପୌର ପରିଷଦ ପ୍ରଥମେ ଟଙ୍କା ମଞ୍ଜୁର କଲେ । ସ୍ଥାନୀୟ ଉତ୍ସାହୀ ଭଦ୍ରବ୍ୟକ୍ତିମାନଙ୍କ ସହାୟତାରେ ଟ୫୭୮୦ଙ୍କା ସଂଗ୍ରହ କରାଗଲା । ହିଞ୍ଜିଳିକାଟୁର ସ୍ୱର୍ଗୀୟ ପ୍ରଧାନ ଶିକ୍ଷକ କିଶୋର ଚନ୍ଦ୍ର ପଣ୍ଡାଙ୍କ ପରି ବହୁ ଗୁଣଗ୍ରାହୀ ଆର୍ଥିକ ସାହାଯ୍ୟର ପ୍ରତିଶ୍ରୁତି ଦେଇ ଏହି ମହତ୍ କାର୍ଯ୍ୟରେ ସେମାନେ ଆଉ କି ପ୍ରକାର ସହଯୋଗ କରି ପାରିବେ ତାହା ଜଣାଇବାକୁ ମୋତେ ପତ୍ର ଦେଲେ । ଏହି ଉତ୍ସବ ପାଳନ କମିଟିର କୋଷାଧ୍ୟକ୍ଷ ଭାବେ ଏ ପ୍ରକାର ସହଯୋଗ ଓ ପ୍ରତିଶ୍ରୁତି

ମୋତେ ଅବିଭୂତ କରିଥିଲେ ମଧ୍ୟ ସରକାରୀ ଅନୁମତି ନ ମିଳିବାରୁ ମୁଁ ଉକ୍ତ ପଦରୁ ଅବ୍ୟାହତି ନେଲି । ସଂଗୃହୀତ ଅର୍ଥ ତାଙ୍କର ୭୮ତମ ଜୟନ୍ତୀ ଉପଲକ୍ଷେ ବ୍ୟୟିତ ହେଲା । ପ୍ରାୟ ତିନି ହଜାର ଟଙ୍କା ବ୍ୟୟରେ ସମିତି ଏକ ସ୍ମରଣିକା ପ୍ରକାଶ କଲେ ଓ ଏହା ମହାରାଜାଙ୍କର କର୍ମମୟ ଜୀବନ, ଦେଶ ପ୍ରୀତି ତାଙ୍କର ଅବଦାନ ଉପରେ ବିଭିନ୍ନ ସମୟର ବିଭିନ୍ନ ଶ୍ରେଣୀର ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କର ମତାମତ ବହନ କରି ଏକ ପ୍ରାମାଣିକ ଗ୍ରନ୍ଥ ଭାବରେ ରହିଅଛି ।

ପୌର ପରିଷଦରେ ମୋର କାର୍ଯ୍ୟକାଳ ତା ୩୧ ଅଗଷ୍ଟ ୧୯୬୯ରେ ଶେଷ ହୋଇଯାଇଥିଲା, ମାତ୍ର ତା ପୂର୍ବରୁ ଆଉ ଥରେ ମହାରାଜାଙ୍କୁ ସାକ୍ଷାତ କରିବାର ସୁଯୋଗ ମୋତେ ମିଳିଥିଲା । ପୌର ପରିଷଦ ବିରୁଦ୍ଧରେ ତାଙ୍କର ସବୁବେଳେ ଅଭିଯୋଗ ଥାଏ ଯେ ରାସ୍ତାରୁ ବୁଲା ଗାଈଗୋରୁ ତଡ଼ିବାରେ ସେମାନେ ନିଷ୍କ୍ରିୟ ହେଉଛନ୍ତି । ସବୁବେଳେ ରାସ୍ତାରୁ ଗାଈଗୋରୁ ଧରି କାଞ୍ଜିଆହୋଦାରେ ପକାଇବା ଏକ ଅପ୍ରିୟ କାର୍ଯ୍ୟ । ଯେତେ ଉଦ୍ୟମ କଲେ ମଧ୍ୟ ମହାରାଜା ସକାଳେ ହୋମଫାର୍ମକୁ ଯିବା ସମୟରେ ରାସ୍ତାରେ ବୁଲା ଗାଈଗୋରୁ, ଛଡ଼ା ବାଛୁରୀମାନେ ନିର୍ବିକାରରେ ଶୋଇ ରହିଥାନ୍ତି । ସହରର ଗାଈ ଗୋରୁ ପାଳିଥିବା ବହୁତ ବ୍ୟକ୍ତିଙ୍କର ନିଜର ଗୁହାଳ ନ ଥାଏ । ରାତିରେ ସେମାନେ ଗାଈଗୋରୁ ରାସ୍ତା ଉପରକୁ ଛାଡ଼ି ଦିଅନ୍ତି । ଏହି ସବୁ ଅସୁବିଧା ଜଣାଇବାକୁ ଓ ପୌର ପରିଷଦର ନିଷ୍କ୍ରିୟତାକୁ ଅତିରଞ୍ଜିତ ବୋଲି ପ୍ରମାଣକରିବାକୁ ମୁଁ ତାଙ୍କୁ ସାକ୍ଷାତ କଲି । ସାକ୍ଷାତ ସମୟରେ ବିଲାତରେ ଗୋଲଟେବୁଲ ବୈଠକ ବିଷୟକ ମୋର ପ୍ରଶ୍ନର ସେ ଉତ୍ତର ନ ଦେଇ ମୋ ଦ୍ୱାରା ଓଡ଼ିଶା ପ୍ରଦେଶ ଗଠନ ନିମିତ୍ତ କିଛି ହୋଇ ନାହିଁ ବୋଲି ବୋଧହୁଏ ଅଭିମାନରେ କହୁଥିଲେ,ତାଙ୍କ ପାଖରେ ଥିବା ମୂଲ୍ୟବାନ ଦଲିଲପତ୍ର ଓ ଫଟୋଗ୍ରାଫମାନ ମତେ ମିଳି ପାରିଲା ନାହିଁ । ନିରାଶ ହୋଇ ମୁଁ ଫେରିଲି । ମୋର ଧାରଣା ହେଲା ଯେଉଁ ପ୍ରଦେଶ ଗଠନ ନିମିତ୍ତ ଭୀଷ୍ମ ପ୍ରତିଜ୍ଞା କରି ସେ ବିଲାତ ଯାଇଥିଲେ, ପ୍ରଦେଶ ଗଠନ ଦାବୀ ଗୃହୀତ କରାଇ ନ ପାରିଲେ ଯୁଦ୍ଧରେ ପରାଜିତ ଗଙ୍ଗବଂଶ ନରପତି ଗଡ଼କୁ ନ ଫେରିବା ପରି ସେ ପାରଳାଖେମୁଣ୍ଡିକୁ ଲେଉଟିବେ ନାହିଁ ବୋଲି କହିଥିଲେ, ନିଜର ସମସ୍ତ ପୁଞ୍ଜି ବ୍ୟୟକରି ନିଜର ଖୁଡ଼ି (ପାରଳାଖେମୁଣ୍ଡିର ସେକେଣ୍ଡ ପ୍ରିନ୍ସ ଚନ୍ଦ୍ର ମହାରାଜାଙ୍କ ବିଧବା ପତ୍ନୀ)ଙ୍କ ସଞ୍ଚିତ ଅର୍ଥ ମଧ୍ୟ ଅକାତରେ ଦାନ ଭାବେ ଗ୍ରହଣ କରି ଅକୁଣ୍ଠିତଭାବରେ ବ୍ୟୟ କରିଥିଲେ, ସେଇ ପ୍ରଦେଶ ଗଠନ ପରେ ବିଶେଷ କରି ଭାରତ ସ୍ୱାଧୀନ ହେବାପରେ ଉପଯୁକ୍ତ ଭୂମିକା ଗ୍ରହଣ ନିମିତ୍ତ

ତାଙ୍କୁ ପୂର୍ଣ୍ଣ ସୁଯୋଗ ଦିଆଗଲା ନାହିଁ । ଏହା ଅନୁଭବ କରି ସେ ନିଜକୁ ବିସ୍ମୃତ ଓ ଅବାଞ୍ଛିତ ମନେ କରୁଥିଲେ । ଅଥଚ୍ କବି ଶେଖର ଚ଼ିନ୍ତାମଣି ୧୯୩୫ ମସିହାରେ ପ୍ରକାଶିତ 'ଉତ୍କଳ ମିଳନ' କାବ୍ୟରେ ଉତ୍କଳ ଜନନୀର ଦୁର୍ଦ୍ଦଶା ବର୍ଣ୍ଣନା କରି ତାଙ୍କୁ ଲକ୍ଷ୍ୟ କରି ଗାଇଥିଲେ-

"ମଧୁ ମୋର ଜ୍ୟେଷ୍ଠପୁତ୍ର ମାତୃ ପରାୟଣ
ମୋ ମହିମା ବୃଦ୍ଧି ଲାଗି ଉତ୍ସର୍ଗିଲା ପ୍ରାଣ
ଅମୂଲ୍ୟ ପ୍ରତିଭା, ଆୟୁ ବ୍ୟୟ କଲା ବତ୍ସ
ମାତୃ ହିତେ, ମାତ୍ର ମୋର କୁଗ୍ରହ ପ୍ରଭାବେ
ସେ ଭଳି ରଥୀର ଚେ଼ଷ୍ଟା ନ ହେଲା ସଫଳ,
ଭାଗ୍ୟ ଅବଳକୁ ବଜ୍ର ଯାଏ ପାଣି ଫାଟି ।
ଶୁଭକ୍ଷଣେ ଉଦେ ହେଲା ପାରଳା ରାଜ୍ୟରେ
କୃଷ୍ଣଚନ୍ଦ୍ର ଗଜପତି-ଗଜପତି ବଂଶେ
ନବସୂର୍ଯ୍ୟ ରୂପେ ତାର, ପ୍ରତିଭା-କିରଣ
ଉଜ୍ଜ୍ୱଳି ମୋ ବକ୍ଷେ, ଗଲା ଦିଗେ ଦିଗେ ବ୍ୟାପୀ ।
ସ୍ୱଗୁଣେ ସେ ରାମରାଜ୍ୟ କଲା ପ୍ରତିଷ୍ଠିତ
କି ବର୍ଣ୍ଣିବି ଗୁଣ ତାର ପୁତ୍ରମଣି ମୋର
ମୋଲାଗି ହୋଇଚି ଆହା, ଯୌବନ ଯୋଗୀ
ଛାଡି ରାଜ୍ୟ ପରିବାର, ନ ମଣି ଦେହକୁ
କେତେ ଦୁଃଖ ସହି ବତ୍ସ ରାଜ ଶରୀରରେ,
ଗଲା ଶ୍ୱେତ ଦ୍ୱୀପେ (ସପ୍ତ ଦ୍ୱୀପର ମହତ୍ତ୍ୱ)
ସୁଦୂର ପ୍ରବାସେ, ତେର ସମୁଦ୍ର ସେ ପାରେ ।
ଜଣାଇଲା ଚକ୍ରବର୍ତ୍ତୀ ଦରବାରେ ତହିଁ
ସବୁ ଦୁଃଖ ବ୍ୟଥା ମୋର ଦେଖାଇ ଦାୟିକା,
ଗାଇଲା କରୁଣେ ମୋର ଦୁର୍ଦ୍ଦଶାର ଗୀତ
ମର୍ମଭେଦୀ ସ୍ୱରେ -ଯୁକ୍ତି ଦେଖାଇ ଅକାଟ୍ୟ ।
ତାହାରି ସେ ସକାତର ନ୍ୟାଯ୍ୟ ପ୍ରାର୍ଥନାରେ
ତିନ୍ତିଲା ସମ୍ରାଟ ହୃଦ (ଦୟାରେ ସଜଳ)

ତହୁଁ ତାଙ୍କ ଶୁଭାଦେଶେ ଶୁଭଦୃଷ୍ଟି ଫଳେ
ସଂଯୋଜିତ ହେଲା ମୋର ବିଖଣ୍ଡିତ ଦେହ ।
କୃଷ୍ଣଚନ୍ଦ୍ର ପୂର୍ଣ୍ଣଚନ୍ଦ୍ର ମୋର ଭାଗ୍ୟ ନଭେ
ତାହାପରି ମାତୃଭକ୍ତ ଧାର୍ମିକ ସୁପୁତ୍ର
ନଥିଲି ମୁଁ ଗର୍ଭେ ଧରି ଅତୀତ ଜୀବନେ,
ନ ପାରିବି ଏ ଜନ୍ମରେ ଶୁଝି ତାର ଋଣ ।
ଯାହାଯୋଗୁଁ ଆଜି ଏହି ଆନନ୍ଦ ଆମ୍ଭର
ଆବର ସୌଭାଗ୍ୟ ଶୁଖତ୍ରିଦିବ ଦୁର୍ଲ୍ଲଭ
ଦେଲା ଯେହୁ ସମସ୍ତଙ୍କୁ ପୁନର୍ଜୀବ ଦାନ,
ଆଜି ଏ ମଙ୍ଗଳ ଦିନେ, ମହାପୁଣ୍ୟକ୍ଷଣେ
କର ସେହି କୃଷ୍ଣଚନ୍ଦ୍ରେ ଆଶୀର୍ବାଦ ସର୍ବେ ।"
ଉତ୍କଳ ଜନନୀଙ୍କର ଏଭଳି ଆଦେଶେ,
ଅଧୀର ହରଷେ ସର୍ବେ ଉଚ୍ଚାରିଲେ ଉଚ୍ଚେ-
"ଜୟ ଗଜପତି ରାଜା କୃଷ୍ଣଚନ୍ଦ ଜୟ ।"
ବଢ଼ାଇଲେ ଦେବୀ ଶଙ୍ଖ ଘୋଷିଲେ ଗର୍ବେ
"ଜୟ ଗଜପତିରାଜା କୃଷ୍ଣଚନ୍ଦ୍ର ଜୟ ।"
ଉଚ୍ଚାରି ତ୍ରିବାର ଜୟ, ସଖୀ ସଙ୍ଗେ ଦେବୀ
ଆଶିଷିଲେ "କୃଷ୍ଣଚନ୍ଦ୍ର ହୁଅ ଚିରଞ୍ଜୀବୀ ।"

ତଥାପି ତାଙ୍କର ୭୮ତମ ଜୟନ୍ତୀ ମହାସମାରୋହରେ ପାଳିତ ହେଲା । 'ନବ ଉତ୍କଳ ଗଠନରେ ପାରଳା ମହାରାଜାଙ୍କ ଅବଦାନ' ଶୀର୍ଷକ ମୋର ଏକ ପ୍ରବନ୍ଧ ତା ୧୭.୪.୬୯ରେ ଦୈନିକ 'ସମାଜ' ଓ ଅନ୍ୟ କେତେକ ସମ୍ବାଦପତ୍ରରେ ପ୍ରକାଶ ପାଇଥିଲା । କେତେକ ସମ୍ବାଦପତ୍ର ସମ୍ପାଦକୀୟ ଦ୍ୱାରା ତାଙ୍କର ଦୀର୍ଘ ଜୀବନ କାମନା କଲେ । ସ୍ୱତଃ ପ୍ରବୃତ୍ତ ହୋଇ ପାରଳାଖେମୁଣ୍ଡି ସହରରେ ପାଳିତ ଏହି ଉତ୍ସବରେ ବିଶଦ ବର୍ଣ୍ଣନା ଦୀର୍ଘ ହେଲେ ମଧ୍ୟ ତାହା ମୁଁ ଉଲ୍ଲେଖ ନ କରି ରହି ପାରୁନାହାଁନ୍ତି । ସେତେବେଳେ ମହାରାଜା ଜଣେ ନାଗରିକଭାବେ ନିଜେ ସହରରେ ରହୁ ନଥାନ୍ତି । ଜ୍ୟେଷ୍ଠ ପୁତ୍ର ଯୁବରାଜଙ୍କ ବିୟୋଗ ପରେ ରାଜପ୍ରସାଦ ପ୍ରାୟ ଅବହେଳିତ ଓ ଶ୍ରୀହୀନ । ତାଙ୍କଠାରୁ କୌଣସି ଲାଭ ପ୍ରାପ୍ତିର ଆଶା କେହି ରଖି ନଥାଏ । ତଥାପି ପ୍ରସ୍ତାବ ଦେବା ମାତ୍ରେ ସହର

ତମାମ ସାହି ମଧ୍ୟରେ ପ୍ରତିଯୋଗିତା କରି ଆଧ୍ୟାତ୍ମିକ ଓ ସାଂସ୍କୃତିକ କାର୍ଯ୍ୟକ୍ରମ ପ୍ରସ୍ତୁତ ହୁଏ । ଏହା ମଧ୍ୟ ଅତି ନିଷ୍ଠାର ସହିତ ପାଳନ କରି ସହରବାସୀମାନେ ମହାରାଜାଙ୍କୁ ଅଯାଚିତ ଭକ୍ତି ଓ ସମ୍ମାନ ପ୍ରଦର୍ଶନ କରି ଭଗବାନଙ୍କ ନିକଟରେ ତାଙ୍କର ଦୀର୍ଘାୟୁ କାମନା କଲେ । ମୋର ଦୀର୍ଘ ବେସରକାରୀ ଓ ସରକାରୀ ଅଭିଜ୍ଞତା ମଧ୍ୟରେ ଏ ପ୍ରକାର ସ୍ୱତଃ ପ୍ରବୃତ୍ତ ଧର୍ମାନୁଷ୍ଠାନ ଅଦ୍ୱିତୀୟ ଓ ଅବିସ୍ମରଣୀୟ ।

ଉତ୍ସବ ଦିବସ(୧୭.୪.୬୯ ଗୁରୁବାର) ସକାଳ ୬ଘଣ୍ଟାରୁ ଦିବାରାତ୍ରି ପ୍ରତ୍ୟେକ ସାହିରେ ମନ୍ତ୍ରପାଠ ପୂଜା ସଂକୀର୍ତ୍ତନ ଓ ଅଖଣ୍ଡ ଦୀପ ସମର୍ପଣ କାର୍ଯ୍ୟକ୍ରମ ଥିଲା । ହାଟପଦା ଚନ୍ଦ୍ରଶେଖର ଦେବାଳୟରେ ମନ୍ତ୍ରୋଚାରଣ ସହ ୨୧ ହଜାର ବେଲପତ୍ର ଲାଗି, ରୁଦ୍ରାଭିଷେକ, ଅଖଣ୍ଡ ଦୀପ, ଭୋଗରାଗ ଅଷ୍ଟପ୍ରହରୀ କୀର୍ତ୍ତନ ଓ ରାତିରେ କୃଷ୍ଣଲୀଳା ନାଟକ ପରିବେଷଣ ହେଲା ।

ସେହିପରି ଚିତ୍ରକାର ସାହି ରଘୁନାଥ ମନ୍ଦିରରେ ୨୧ହଜାର ମଞ୍ଜରୀ ଲାଗି ମନ୍ତ୍ରପାଠ ସହ ଅଖଣ୍ଡ ଦୀପ ଭୋଗରାଗ ଓ ଅଷ୍ଟପ୍ରହର ସଂକୀର୍ତ୍ତନ ।

ଗୋପିନୀ ସାହି ଛକ ତ୍ରିନାଥ ପୀଠରେ ମନ୍ତ୍ରପାଠ ସହ ୯ହଜାର ମଞ୍ଜରୀ ଲାଗି, ୯ହଜାର ଫୁଲ ଲାଗି, ଅଖଣ୍ଡ ଦୀପ, ଭୋଗରାଗ ଚତୁର୍ଥ ପ୍ରହର ସଂକୀର୍ତ୍ତନ, ରାତ୍ରିରେ 'ନଳଦମୟନ୍ତୀ' ନାଟକ ପରିବେଷଣ ।

କବିଚନ୍ଦ୍ର ସାହି ଛକ ଓ ରାଧାବଲ୍ଲଭ ମଠରେ ମନ୍ତ୍ରପାଠ ସହ ୯ହଜାର ମଞ୍ଜରୀଲାଗ. ୯ହଜାର ଫୁଲ ଲାଗି , ସହସ୍ର ନାମ ପାରାୟଣ, ଅଖଣ୍ଡ ଦୀପ, ଭୋରରାଗ ଚତୁର୍ଥ ପ୍ରହର ନାମ ସଂକୀର୍ତ୍ତନ ଓ ରାତ୍ରିରେ ନାଟକ ଅଭିନୟ ।

କଣ୍ଡରା ସାହି ଛକ ତ୍ରିନାଥ ମଠରେ, ପୁରୁଣା ବଜାର ଛକ ବୃନ୍ଦାବତୀ ପୀଠରେ, ଅଙ୍କସାହି ଛକ ତ୍ରିନାଥ ମଠରେ, ପୁରୁଣା ବଜାର ଛକ ବୃନ୍ଦାବତୀ ପୀଠରେ, ଅଙ୍କସାହି ମାଣିକେଶ୍ୱରୀ ମଠରେ, ଜଙ୍ଗମ ସାହି ମଲ୍ଲିକେଶ୍ୱର ମହାଦେବ ମନ୍ଦିରରେ, କଚେରୀ ପାଖ ଶ୍ରୀ ଚୈତନ୍ୟମଠରେ, ରାମସାଗର ରାମଲିଙ୍ଗେଶ୍ୱର ମନ୍ଦିରରେ, ମଞ୍ଜରୀ ଓ ଫୁଲଲାଗି, ଅଖଣ୍ଡ ଦୀପ, ଭୋଗରାଗ ଲାଗି ରହିଥିଲା । ଗୋପାଳକୃଷ୍ଣ ସାହି ସାନ ମଠରେ ମନ୍ତ୍ରୋଚ୍ଚାରଣ ସହ ୧୦ହଜାର ମଞ୍ଜରୀ ଓ ଫୁଲ ଲାଗି । ରାଜଦାଣ୍ଡ ଶ୍ରୀ ଜଗନ୍ନାଥ ମନ୍ଦିରରେ ମନ୍ତ୍ରପାଠ ସହ ୨୧ ହଜାର ମଞ୍ଜରୀ ଲାଗି, ଚତୁର୍ଥ ପ୍ରହରୀ ସଂକୀର୍ତ୍ତନ, ରାଜଦାଣ୍ଡ ବଡ଼ ମଠରେ ଓ ଡ଼େଙ୍ଗା ଦେଉଳରେ ୨୧ହଜାର ମଞ୍ଜରୀ ଲାଗି, ଗୋପାଳକୃଷ୍ଣ ସାହି ରାଧାକାନ୍ତ ମଠରେ ୧୦ ହଜାର ମଞ୍ଜରୀ ଓ ଦଶ ହଜାର ଫୁଲ ଲାଗି, ସେହି

ସାହିର ରାଧାମୋହନ ମଠରେ ୧୦ହଜାର ମଞ୍ଜରୀ ଓ ଫୁଲ ଲାଗି ସହିତ ଅଖଣ୍ଡ ଦୀପ ଭୋଗରାଗ ଦିବସରେ କାର୍ଯ୍ୟ ପ୍ରତିପାଦନ କରୁଥିଲା । ପାରଳାଖେମୁଣ୍ଡି ସହରରେ ଦକ୍ଷିଣାର୍ଦ୍ଧ ପ୍ରାୟ ତେଲୁଗୁ ଅଧ୍ୟୁଷିତ ଓ ଉତ୍ତରାର୍ଦ୍ଧ ଓଡ଼ିଆ ସାହି । ଏ ଦୁଇ ଅର୍ଦ୍ଧ ମଧ୍ୟରେ ଭାଷା ବିଭେଦ ଓ ବିବାଦ ସତ୍ତ୍ୱେ ଉତ୍ସବକୁ ସାଫଲ୍ୟମଣ୍ଡିତ କରିବାକୁ ସୁସ୍ଥ ପ୍ରତିଯୋଗିତା ଆରମ୍ଭ ହୋଇ ଓଡିଆ ତେଲୁଗୁ ନାଟକ ହରିକଥା ବୁରାକଥା ଲୋକନାଟ୍ୟ ଇତ୍ୟାଦି ରାତି ତମାମ ଦେଖା ଯାଉଥିଲା । ଏହା କେହି ନିୟନ୍ତ୍ରଣ କରୁନଥିଲେ । ଏଥିପାଇଁ କେହି ଅର୍ଥ ଦାନ କରୁ ନଥିଲେ ବା ଅର୍ଥର ଆଶା ରଖି ଏଥିରେ ଭାଗ ନେଉ ନ ଥିଲେ । ପାରଳାଖେମୁଣ୍ଡି ନଗରରେ ଏହା ଅଭୂତପୂର୍ବ ଓ ଅନ୍ୟ ଯେ କୌଣସି ସହରରେ ବୋଧହୁଏ ଏହା ଅଶ୍ରୁତପୂର୍ବ । ଉତ୍ସବ ପରିକଳ୍ପନାରେ ଅଂଶ ଗ୍ରହଣ କରିବା ଯୋଗୁଁ ମୁଁ ନିଜକୁ ଧନ୍ୟ ମନେ କରେ ।

୮୨ବର୍ଷ ବୟସରେ ତା ୨୫ମଇ ୧୯୭୪ ପୂର୍ବାହ୍ନ ଘ ୧୧.୩୦ ସମୟରେ ପାରଳାଖେମୁଣ୍ଡି ସହରରେ ଏହି କର୍ମମୟ ଜୀବନର ଅବସାନ ଘଟେ । ଜାତି, ଧର୍ମ, ବର୍ଣ୍ଣ, ଭାଷା, ଲିଙ୍ଗ ନିର୍ବିଶେଷରେ ବିଭିନ୍ନ ରାଜନୈତିକ ମତବାଦ ସତ୍ତ୍ୱେ ଓଡିଶାର ସବୁ ଶ୍ରେଣୀର ରାଜନୈତିକ ନେତା, ସମାଜସେବୀ ଓ ବୁଦ୍ଧିଜୀବୀମାନେ ତାଙ୍କର ମୃତ୍ୟୁରେ ଗଭୀର ଶୋକ ପ୍ରକାଶ କଲେ । ରାଷ୍ଟ୍ରୀୟ ମର୍ଯ୍ୟାଦା ସହକାରେ ପାରଳାଖେମୁଣ୍ଡି ସହରରେ ମହେନ୍ଦ୍ର ତନୟା ନଦୀ କୂଳରେ ପ୍ରତ୍ୟକ୍ଷଦର୍ଶୀଙ୍କ କହିବାରେ ଗଜପତି ସମାଧି ସ୍ଥାନ ତାଙ୍କର ଅନ୍ତ୍ୟେଷ୍ଟିକ୍ରିୟା ସମାପନ ହେଲା । ଓଡ଼ିଶା ସରକାର ଶୋକ ଦିବସ ଘୋଷଣା କରି ସରକାରୀ କାର୍ଯ୍ୟାଳୟ କୋର୍ଟ କଚେରୀ ବନ୍ଦ ରଖିଲେ । ଓଡ଼ିଶା ସରକାରଙ୍କର ତଦାନୀନ୍ତନ ଅର୍ଥମନ୍ତ୍ରୀ ବିନାୟକ ଆଚାର୍ଯ୍ୟ ବହୁ ଉଚ୍ଚ ରାଜକର୍ମଚାରୀମାନଙ୍କ ଗହଣରେ ଏହି ଅନ୍ତ୍ୟେଷ୍ଟିକ୍ରିୟାରେ ରାଜ୍ୟ ସରକାରଙ୍କର ପ୍ରତିନିଧିତ୍ୱ କରିଥିଲେ । ରାଷ୍ଟ୍ରୀୟ ଶୋକ ପାଳନ ସହିତ ଅଶ୍ରୁପୂର୍ଣ୍ଣ ନେତ୍ରରେ ସବୁ ଶ୍ରେଣୀର ଉତ୍କଳ ବାସୀ ତାଙ୍କର ଆତ୍ମାର ସଦ୍‌ଗତି କାମନା କଲେ ତାଙ୍କର ପିତୃବ୍ୟ ପଦ୍ମନାଭଦେବ ରାଜପତିଙ୍କ ମୃତ୍ୟୁରେ ଫକୀରମୋହନ ଲେଖିଥିଲେ :

"କାହାକୁ ମୁଁ ଦେବି ତୁମ ସହିତ ଉପମା
ଉତ୍କଳ ଗଗନୁଁ ଖସି ପଡିଲେ ଚନ୍ଦ୍ରମା"

ମହାରାଜାଙ୍କ ବିୟୋଗରେ ଏବର କବି କ'ଣ ଲେଖିବେ ?

ରାଜନୈତିକ ଭାଷ୍ୟକାର ମଧ୍ୟ ମହାନ୍ତି ତାଙ୍କ ଜୟନ୍ତୀ ଅବସରରେ ଲେଖିଥିଲେ :

"ଆପଣଙ୍କଠାରେ ଦେଖିଛି ଏକାଧାରରେ

କ୍ଷତ୍ରିୟର ବୀର୍ଯ୍ୟ, କୃଷକର ଧୈର୍ଯ୍ୟ
ବ୍ରାହ୍ମଣର ଶୌର୍ଯ୍ୟ ଓ ବଣିକର ସ୍ଥୈର୍ଯ୍ୟ ।
ଆପଣ ଜୀବନକୁ ପଣ କରି ସୈନିକ କରିଦେଇଛନ୍ତି ।
ଧନକୁ ପଣ କରି ଦୌଡ଼ରେ ଜିଣିଛନ୍ତି ।
ଆପଣ ଜମିଦାର ହୋଇଛନ୍ତି ପୁଣି ଚାଷ କରିଛନ୍ତି ।
ରାଜା ହୋଇଛନ୍ତି ପୁଣି ମନ୍ତ୍ରୀ ହୋଇଛନ୍ତି ।
ଗୃହୀ ହୋଇଛନ୍ତି ପୁଣି ସନ୍ନ୍ୟାସୀ ହୋଇଛନ୍ତି ।
ଶାସକ ହୋଇଛନ୍ତି ପୁଣି ଶାସିତ ହୋଇଛନ୍ତି ।
'ରସିକ' ହୋଇଛନ୍ତି ପୁଣି 'ରକ୍ଷକ' ହୋଇଛନ୍ତି ।
ପାଠ ପଢ଼ିଛନ୍ତି ଓ ପାଠ ପଢ଼ାଇଛନ୍ତି ।
ନାଟ କରିଛନ୍ତି ଓ ନାଟ କରାଇଛନ୍ତି ।
ଆପଣଙ୍କପରି ଆଉ କିଏ ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଢିଛନ୍ତି,
ସେଥିରେ ପ୍ରଥମ ମୁଖ୍ୟମନ୍ତ୍ରୀ ହୋଇଛନ୍ତି ?
ଏଇଟା ଏକ ଦିଗରୁ ଯେପରି ଇତିହାସର କୌତୁକ
ଅପର ଦିଗରୁ ସେଇ ପରି ସାଧକ ସିଦ୍ଧି ।"

ସେ ସବୁର ଅବସାନ ଘଟିଛି । ଓଡ଼ିଆ ଜାତି ଓ ଭାରତ ତାଙ୍କୁ an Illusrtious son of modern india ରୂପେ ସର୍ବଦା ସ୍ମରଣ କରିବ ।



ମହାରାଜାଙ୍କ ନେତୃତ୍ୱରେ ଓଡ଼ିଶାର ପ୍ରଥମ ମନ୍ତ୍ରୀ ମଣ୍ଡଳ-ମଝିରେ ପ୍ରଥମ ଗଭର୍ଣ୍ଣର ଜନ୍ ଅଷ୍ଟିନ୍ ହବାବ୍ ତା ୧.୪.୧୯୩୭ରିଖ

## ପରିଶିଷ୍ଟ-୧

### ଦୈନିକ ସମାଜ ତା ୩.୭.୬୮ ପୃ-୪

ଆପଣଙ୍କର ଲୋକପ୍ରିୟ ଖବର 'ସମାଜ'ରେ ଗତ ୨୭.୪.୬୮ରେ ପ୍ରକାଶିତ 'ନବଉତ୍କଳ' ନିର୍ମାତା ପାରଳାଖେମୁଣ୍ଡି ମହାରାଜା ଶୀର୍ଷକ ପ୍ରବନ୍ଧରେ କେତେକ ତ୍ରୁଟି ଥିବାର ଦେଖିଲି । ତାହା ନିମ୍ନଲିଖିତ ମତେ ସଂଶୋଧନ କରି ସର୍ବସାଧାରଣଙ୍କ ଗୋଚରାର୍ଥେ 'ସଂମାଜ'ରେ ଅନୁଗ୍ରହ ପୂର୍ବକ ପ୍ରକାଶ କରିବାକୁ ଅନୁରୋଧ ।

୧୯୧୩ ସାଲରେ ଯେତେବେଳେ ତତ୍କାଳୀନ ମାନ୍ଦ୍ରାଜ କୋର୍ଟ ଅଫ୍‌ୱାର୍ଡସ୍ ମହାରାଜା ସାହେବଙ୍କୁ ପାରଳା ଜମିଦାରି ହସ୍ତାନ୍ତର କଲେ, ସେତେବେଳକୁ ପାରଳା ରାଜକୋଷରେ ଥିବା ଗଚ୍ଛିତ ଧନର ପରିମାଣ ଏକ କୋଟି ନୁହେଁ । ମହାରାଜା ସାହେବ ରାଜକୋଷରୁ କେବଳ ୨୫ ଲକ୍ଷ ଟଙ୍କା ପାଇଥିଲେ ।

ପାରଳା ତାଲୁକାସ୍ଥିତ ରାମ ସାଗର, ସୀତା ସାଗର, ଗଜପତି ସାଗର, କୃଷ୍ଣ ସାଗର, ରାଧା ସାଗର ଓ ଲକ୍ଷ୍ମଣ ସାଗର ମହାରାଜା ସାହେବଙ୍କର ପିତୃ ପିତାମହଙ୍କ ସମୟରେ ନିର୍ମାଣ କରାଯାଇଥିଲା । ମହାରାଜା ସାହେବ ରାଜ୍ୟଭାର ଗ୍ରହଣ କଲାପରେ ଅଧିକା ଦୁଇଗୋଟି ସାଗର ଯଥା କାଶୀନଗରସ୍ଥିତ ନଳିନୀକୃଷ୍ଣ ସାଗର ଓ ମାନ୍ଦ୍ରାଜ ପ୍ରଦେଶରେ ଥିବା ତତ୍କାଳୀନ ପାରଳା ଜମିଦାରିସ୍ଥିତ ବାଗା ସାଗର ପ୍ରତ୍ୟେକର ଏକ ଲକ୍ଷ ଟଙ୍କାରେ ନିର୍ମାଣ କରିଥିଲେ । ଉକ୍ତ ଦୁଇଗୋଟି ସାଗର ପାରଳା ଜମିଦାରିର ତତ୍କାଳୀନ କୃତୀ ଇଞ୍ଜିନିୟର ଶ୍ରୀ ମୁଲାର ସାହେବଙ୍କ ତତ୍ତ୍ୱାବଧାନରେ ନିର୍ମିତ ହୋଇଥିଲା । ତାବାଦ ପାରଳା ଇଷ୍ଟେଟର ଛୋଟ ବଡ ଜଳସେଚନ ବ୍ୟବସ୍ଥାଗୁଡିକର ସଂଖ୍ୟା ବାରଶତ ପର୍ଯ୍ୟନ୍ତ ବଢ଼ାଇ ଦିଆଯାଇଥିଲା । ଉକ୍ତ ବାଗା ସାଗର ପ୍ରାୟ ୩ହଜାର ଏକର ପଦର ଜମିକୁ ଜଳ ଯୋଗାଇ ପାରୁଥିଲା । କିନ୍ତୁ ଦୁର୍ଭାଗ୍ୟବଶତଃ ତା'ର ପଙ୍କୋଦ୍ଧାରପାଇଁ କୌଣସି ବ୍ୟବସ୍ଥା ନଥିବାରୁ କାଳକ୍ରମେ ସାଗର ପୋତି ହୋଇଗଲା ଏବଂ ତାକୁ ପାଣି ଯୋଗାଉଥିବା ପର୍ବତ ଉପତ୍ୟକାରୁ ପ୍ରବାହିତ ଜଳଧାରପଥ ମଧ୍ୟ ରୁଦ୍ଧ ହୋଇଗଲା । ବର୍ତ୍ତମାନ କାଶୀନଗରସ୍ଥିତ ନଳିନୀକୃଷ୍ଣ ସାଗର ଆଖପାଖ ଅଧିକାଂଶ ଜମିକୁ ପାଣି ଯୋଗାଇ ଦୋ-ଫସଲ ଜମିରେ ପରିଣତ କରିପାରିଛି । ମହାରାଜା ସାହେବ ତାଙ୍କର କାର୍ଯ୍ୟକାଳ ମଧ୍ୟରେ ନଉପଡା-ପାରଳାଖେମୁଣ୍ଡି ରେଳପଥକୁ ୧୮ଲକ୍ଷ ଟଙ୍କା ଖର୍ଚ୍ଚରେ ଗୁଣୁପୁର ପର୍ଯ୍ୟନ୍ତ ସଂପ୍ରସାରଣ କରିଥିଲେ । ମହାରାଜା ସାହେବ ଛାତ୍ର-ଛାତ୍ରୀମାନଙ୍କ ସୁବିଧା ଲାଗି ବି ଶିକ୍ଷାର ସଂପ୍ରସାରଣ ନିମିତ୍ତ ୨ଲକ୍ଷ ଟଙ୍କାରୁ ଉର୍ଦ୍ଧ୍ୱ ଖର୍ଚ୍ଚରେ ପାରଳାଖେମୁଣ୍ଡିସ୍ଥିତ ସମସ୍ତ

ଶିକ୍ଷାନୁଷ୍ଠାନର, ରାଜ୍ୟଭାର ଗ୍ରହଣ କଲାପରେ, ସଂପ୍ରସାରଣ ଓ ଅଭିବୃଦ୍ଧି କରିଥିଲେ । ରାଜଗାଦି ଗ୍ରହଣ କଲାପରେ ମହାରାଜା ସାହେବ ତାଙ୍କର ବରେଣ୍ୟ ପିତା ଓ ପିତାମହ ମହୋଦୟଙ୍କ ନିର୍ମିତ ଲୋକହିତକର ଅନୁଷ୍ଠାନଗୁଡିକର ବିକାଶ ଓ ସଂପ୍ରସାରଣ ପାଇଁ ଯେଉଁ ବ୍ରତ ଗ୍ରହଣ କରିଥିଲେ ଭଗବାନଙ୍କ ଦୟାରୁ ସେ ସେହି ଦିଗରେ କୃତକାର୍ଯ୍ୟ ହୋଇପାରିଥିଲେ ।

ମହାରାଜା ସାହେବ ଶ୍ରୀ ବିଷ୍ଣୁଚରଣ ମହାନ୍ତିଙ୍କ ଉକ୍ତ ପ୍ରବନ୍ଧକୁ ସାଦରେ ଗ୍ରହଣ କରିବା ସଙ୍ଗେ ସଙ୍ଗେ ତାଙ୍କୁ ହାର୍ଦ୍ଦିକ ଧନ୍ୟବାଦ ଜଣାଉ ଅଛନ୍ତି ।

ଆପଣଙ୍କ ବିଶ୍ୱସ୍ତ

ଅବିକଳ ନକଲ
ବିଷ୍ଣୁ ଚରଣ ମହାନ୍ତି

ଶ୍ରୀ କେ.କୃଷ୍ଣମୂର୍ତ୍ତି
ଦେବାନ, ପାରଳାଖେମୁଣ୍ଡି

## ପରିଶିଷ୍ଟ- ୨

from
Sri P.parthasarathi
General Manager.,

Samasthan Offfice
Paralakhemundi
(Ganjam)
Dated:23.7.68

To

The executive officer, Municipal Council,
Paralakhemundi

Ref: Your letter dt 22.7.68 for interview with His highness Maharaja saheb regarding expansion of the Biography of the Maharaja Saheb.

Sir,

Iam directed by his Highness, the Maharaja Saheb to inform you that no further expansion of the Biography is necessary.

Yours Faithfully
Sd/ General Manager

## ପରିଶିଷ୍ଟ-୩

ଓଡିଶାର ପ୍ରଧାନମନ୍ତ୍ରୀଭାବରେ ତା ୩୦.୫.୪୪ରେ ସରକାରଙ୍କର ଯୋଗାଣ ବିଭାଗର ଗୋଟିଏ ଫାଇଲରେ ପ୍ରଦତ୍ତ ମହାରାଜାଙ୍କର ଚୂଡାନ୍ତ ଆଦେଶ ତାଙ୍କ ନିଜ

ଅକ୍ଷରରେ ନିମ୍ନରେ ଦିଆଗଲା । ଜନ ସମାଲୋଚନା ପ୍ରତି ତାଙ୍କର ସଜାଗତା ଓ ରାଜ୍ୟ ଶାସନରେ ଦୃଢ଼ତା ପ୍ରତିପାଦିତ ହେଉଥିବା ଏହି ଆଦେଶର ପୂର୍ବପର ସମ୍ବନ୍ଧ ବୁଝାଇଦେବା ଆବଶ୍ୟକ ମନେ ହୁଏ । ୧୯୩୫ ମସିହା ଭାରତ ଶାସନ ଆଇନ ବଳରେ ପ୍ରାଦେଶିକ ସ୍ୱତନ୍ତ୍ରତା ଉପଭୋଗ କରୁଥିବା ରାଜ୍ୟ ପ୍ରଧାନମନ୍ତ୍ରୀମାନଙ୍କର କର୍ତ୍ତୃତ୍ୱ ଆଇ.ସି.ଏସ. ଶାସନ ସଚିବମାନଙ୍କ ଉପରେ ନାମମାତ୍ର ଥିଲା । ବର୍ଣ୍ଣିତ ସମୟରେ, ସ୍ୱଧୀନତୋର କାଳରେ ଜାପାନ ଓ ତୁର୍କୀରେ ରଷ୍ଟ୍ରଦୂତ, ପରେ ଜାତିସଂଘରେ ଭାରତର ସ୍ଥାୟୀ ପ୍ରତିନିଧି ଶ୍ରୀ ଚନ୍ଦ୍ରଶେଖର ଝା ଆଇ.ସି.ଏସ. ଓଡ଼ିଶାର ଯୋଗାଣ ବିଭାଗର ଶାସନ ସଚିବ ଥିଲେ । ସେତେବେଳେ ସବୁ ଫାଇଲ ମନ୍ତ୍ରୀଙ୍କ ଆଦେଶ ପରେ ଲାଟ ସାହେବଙ୍କ ପାଖକୁ ଅବଗତି ନିମିତ୍ତ ପଠାଯାଉଥିଲା । ତତ୍‌କାଳୀନ ଲାଟ ସାହେବ ସାର ଉଇଲିୟମ୍ ହଥର୍ଣ୍ଣ ଲୁଇସ୍ ଆଇ.ସି.ଏସ୍ ମଧ୍ୟ ଜଣେ ସ୍ୱନାମଧନ୍ୟ ଦୃଢ଼ ଗୋରା ସିଭିଲିଆନ୍ ଥିଲେ । ବର୍ତ୍ତମାନ ଯୁଗରେ ମନ୍ତ୍ରୀମାନେ କୌଣସି ଲାଇସେନ୍‌ସ ବା ପରମିଟ ଦେବାରେ ଯେପରି ନିଜ କ୍ଷମତା ଜାହିର କରିବାକୁ ତତ୍ପର ସେତେବେଳେ ତାହା ନ ଥିଲା । ଏ କାର୍ଯ୍ୟ ଏକ ସାଧାରଣ ନିତ୍ୟ ନୈମିତ୍ତିକ ବ୍ୟାପାର ବୋଲି ଧରାଯାଇ ପରମିଟ ବଣ୍ଟନ ସଂକ୍ରାନ୍ତ ଫାଇଲ ସଚିବ ସ୍ତରରେ ଫଏସଲା ହେଉଥିଲା ଓ ମନ୍ତ୍ରୀଙ୍କ ଦୃଷ୍ଟିକୁ ମଧ୍ୟ ଆସୁ ନ ଥିଲା ।

୧୯୪୩ ମସିହାରେ ବଙ୍ଗଳାରେ ଦୁର୍ଭିକ୍ଷ ବେଳେ ଓଡ଼ିଶାରେ ସୋରିଷ ତେଲର ଗୁରୁତର ଅଭାବ ଦେଖାଦେଇଥିଲା । ବଙ୍ଗଳା ଓ ବିହାରରୁ ଓଡିଶାକୁ ଆମଦାନୀ ହେଉଥିବା ତେଲର ଯୋଗାଣ ସେ ରାଜ୍ୟମାନେ ବନ୍ଦ କରିଦେଇଥିଲେ । ଅତି କଷ୍ଟରେ ଅଳ୍ପ ପରିମାଣର ଏହି ଖାଇବା ତେଲ ଉତ୍ତର ପ୍ରଦେଶରୁ ଆମଦାନୀ କରାଯାଇ ଖାଉଟିମାନଙ୍କର ଚାହିଦା ପୂରଣ କରାଗଲା । ଓଡିଶାରେ ସୋରିଷ ଚାଷ କରାଯାଏ ମାତ୍ର ଉପକୂଳବର୍ତ୍ତୀ ଅଞ୍ଚଳର ଉତ୍ପାଦନ ସ୍ଥାନୀୟ ଖାଉଟିମାନଙ୍କର ଅଭାବ ପୂରଣ ନିମିତ୍ତ ଯଥେଷ୍ଟ ହେଉ ନଥାଏ । କୋରାପୁଟ ଜିଲ୍ଲାରେ ବିଶେଷ କରି ରାୟଗଡ଼ା ସବ୍‌ଡିଭିଜନରେ ଉତ୍ପାଦନ ବଳକା ଥିବା ଯୋଗୁଁ ସେଠାରୁ ମୁଖ୍ୟତଃ ମାନ୍ଦ୍ରାଜକୁ ସୋରିଷ ରପ୍ତାନି କରାଯାଇଥାଏ । ଏହି ପରିପ୍ରେକ୍ଷୀରେ ୧୯୪୪ ମସିହାରେ ସରକାର ରାଜ୍ୟ ବାହାରକୁ ସୋରିଷ ଚାଲାଣ ବନ୍ଦ କରିଦେଲେ । ଜଟଣୀର ବିଶ୍ୱନାଥ ରାଇସମିଲ ନାମକ ଏକ ତେଲ କଳକୁ କୋରାପୁଟରୁ ସେଠାକାର ଉତ୍ପାଦନ ୧୯ ହଜାର ଟନ ମଧ୍ୟରୁ ୧୬ ହଜାର ଟନ ଆମଦାନୀ କରିବାକୁ ଅନୁମତି ଦିଆଗଲା । ସରକାରଙ୍କର ଏହି ନୀତି ସମ୍ବାଦପତ୍ରମାନଙ୍କରେ ସମାଲୋଚିତ ହେଲା । ଜନମତ ଏହାର ମଧ୍ୟ ବିରୁଦ୍ଧାଚରଣ କରୁଥିଲା । ଭାରତ

ଛାଡ଼ ଆନ୍ଦୋଳନ ଫଳରେ କଂଗ୍ରେସ ଜନନାୟକମାନେ ସେ ସମୟରନେ କାରାରୁଦ୍ଧ ଥାଆନ୍ତି । ପ୍ରଧାନମନ୍ତ୍ରୀ ନିର୍ଦ୍ଦେଶ ଦେଲେ ଗୋଟିଏ ପୁଞ୍ଜିବାଦୀ ତେଲକଳ ମାଲିକଙ୍କୁ ବେଶୀ ପରିମାଣରେ ସୋରିଷ ଆମଦାନୀ କରିବାକୁ ଓ ନିଜ ତେଲ କଳରେ ତାହା ପେଡାଇବାକୁ ଅନୁମତି ଦେବା ଅସମୀଚୀନ ହୋଇଅଛି । ସୋରିଷ କ୍ଷୁଦ୍ର ବେପାରୀମାନଙ୍କୁ ଦିଆ ଯାଇଥିଲେ ସେମାନେ ଘଣାରେ ତେଲ ପେଡ଼ାଇ ପାରିଥାନ୍ତେ । ଏହା ଫଳରେ ବହୁସଂଖ୍ୟକ ଗ୍ରାମୀଣ ତୈଳଜୀବୀ-ପରିବାର ଜୀବିକା ଅର୍ଜନର ସୁଯୋଗ ପାଇଥାନ୍ତେ । ଘଣାତେଲ ଖାଉଟିମାନଙ୍କୁ ମିଳିବା ବ୍ୟତୀତ ଉତ୍ପାଦିତ ସୋରିଷ ପିଡ଼ିଆ ପଶୁଖାଦ୍ୟ ଓ କୃଷିକ୍ଷେତ୍ରରେ ଖତଭାବରେ ବ୍ୟବହୃତ ହୋଇ ଗ୍ରାମ୍ୟ ଅର୍ଥନୀତିକୁ ଦୃଢ଼ତର କରି ପାରିଥାନ୍ତା । ସେ ସଂପୃକ୍ତ ଫାଇଲ ଉପରେ ଯୋଗାଣ ବିଭାଗ ଶାସନ ସଚିବଙ୍କର କୈଫିୟତ ମାଗିଲେ । ଶାସନ ସଚିବ କିପରି ଅବସ୍ଥାରେ ଜିଲ୍ଲା କଲେକ୍ଟରଙ୍କର ରିପୋର୍ଟ ଉପରେ ସମ୍ବାଦପତ୍ରମାନଙ୍କରେ ବିଜ୍ଞାପନ ସତ୍ତ୍ୱେ ଅନ୍ୟ କୌଣସି ବ୍ୟକ୍ତି ବା ସଂସ୍ଥା ଆମଦାନୀ ସକ୍ଷମ ନ ହେବାରେ ସଂପୃକ୍ତ ତେଲ କଳକୁ ପରିମିଟ ଦିଆଯାଇଛି, ବଜାର ଦର ନିୟନ୍ତ୍ରଣ ନିମିତ୍ତ ଏଥିରେ କିପରି ସର୍ତ୍ତ ରଖା ଯାଇଛି, କୋରାପୁଟରୁ ସୋରିଷ ଆଣି ତେଲ କଳରେ ପେଷାଇଲେ ଦର ଉତ୍ତର ପ୍ରଦେଶରୁ ଆମଦାନି ତେଲ ତୁଳନାରେ କିପରି ଶସ୍ତା ହେବ, ସେ ସବୁ ବୁଝାଇ କୈଫୟତ ଦେଲେ । ସମ୍ବାଦପତ୍ରମାନଙ୍କରେ ସମାଲୋଚନା ଭିତ୍ତିହୀନ ଓ ଅସଙ୍ଗତ ବୋଲି ମଧ ଜଣାଇଲେ । ମହାରାଜା ଏହା ଗ୍ରହଣ କଲେ ମାତ୍ର ଲୋକମତ ପ୍ରତି ସମ୍ମାନ ପ୍ରଦର୍ଶନ କରି ତେଲ କଳକୁ କିପରି ଅବସ୍ଥାରେ ବହୁ ପରିମାଣରେ ସୋରିଷ ଆମଦାନୀ କରିବାକୁ ପରିମିଟ ଦିଆଗଲା, ତାହା ଏକ ପ୍ରେସ୍ ନୋଟ୍ ଜରିଆରେ ସମ୍ବାଦପତ୍ରମାନଙ୍କୁ ପ୍ରକାଶ ନିମିତ୍ତ ଦେଲେ । ଲାଟ ସାହେବ ମଧ୍ୟ ତା ୨.୬.୪୪ରେ ତାଙ୍କ ସହିତ ଏକ ମତ ହେଲେ ।

ଏହି ସଂପର୍କରେ ୧୯୪୪ ମସିହାରେ ପ୍ରଧାନମନ୍ତ୍ରୀ ଭାବରେ ସଚିବାଳୟର ଯୋଗାଣ ପରିବହନ ବିଭାଗର ନୋଟ ଓ ଫାଇଲ ଉପରେ ଦେବା ଆଦେଶର କିୟଦଂଶ-

2. I would further submit in this connection that permanent official are to be guided only by the expressed intention and orders of government. In the present case there was no order of Government that this firm should be prevented from trading in other foodgrains besides rice and paddy and I certainly had not the remotest idea that permits for mustard seeds to this firm might be objected to byGovernment, especially when we were going to

take all measures of control over the distribution and price of all mustard oil & oil cakes produced. If government intended that no permits for mustard seed or for any other commodity should be given to this firm, it would have been appropriate for government to pass specific order on the point. I submit that in the matter of such permits goveernment have vested me with certain discretion and all that I have done is exercise of my discretion after the fullest consideration and in the best interest of the consumers in this province .

3. As regards the press criticism referred to by H.P.M. this is not the the first time that unsound and unfair criticism will have been levelled against the actions of Orissa govt. Or its officers. We have seen only too many such critisms in the past year. No such criticism has come to my notice, but we are fully able to meet any criticism in connection with the permission granted to this firm for importing mustard seed from koraput .

Sd/Secretary, Supply deptt
29.5.44

The explanation is accepted.
But the Sec. knowing the strained
relations of Madan lal Jajodia
with myself in my official capacity
& in his [illegible] objectionable [illegible] a black,
based upon unfounded grounds,
it was normally expected of the Sec.
that he would bring this matter to
my notice before issuing the permit
to the firm. The circumstances under
which the firm got the permit to
import such a large quantity of mustard
seeds from Koraput should be published
through a press statement for the information
of the public.

K [illegible]
30-5-44

HE

[illegible]
1-7-44

Seen
[illegible]
2.6.44

---

ଉପରୋକ୍ତ ନୋଟ୍ ଉପରେ ତତ୍‌କାଳୀନ ପ୍ରଧାନମନ୍ତ୍ରୀ ପାରଳା ମହାରାଜାଙ୍କର ସ୍ୱହସ୍ତରେ ଲିଖିତ ଆଦେଶର ଏକଫଟୋକପି ପ୍ରଦତ୍ତ ହେଲା । ଏହି ଆଦେଶନାମା ମଧ୍ୟ ସେ ସମୟର ଗଭର୍ଣ୍ଣର ହଥର୍ଣ୍ଣ ଲୁଇସିଙ୍କର ଦୃଷ୍ଟିକୁ ଅଣା ଯାଇଥିଲା । ସେକ୍ରେଟେରି ଝା ଓ ଗଭର୍ଣ୍ଣର ଲୁଇସ୍‌ଙ୍କର ସ୍ୱାକ୍ଷର ଏହି ଫଟୋ କିପିରୁ ଦ୍ରଷ୍ଟବ୍ୟ ।

# ପାରଳା ମହାରାଜା
## କିଛି ଜଣା କିଛି ଅଜଣା କଥା

ଶ୍ରୀକୃଷ୍ଣଚନ୍ଦ୍ର ଗଜପତି ବୟଃପ୍ରାପ୍ତ ହେବାପରେ କୋର୍ଟ ଅଫ୍ ୱାର୍ଡ଼ସର ଏଜେଣ୍ଟ ଏନ.ମାକ ମାଇକେଲ ସାହେବଙ୍କ ଠାରୁ ତା ୨୬.୪.୧୯୧୩ ରେ ଦାୟିତ୍ୱ ଗ୍ରହଣ କଲେ । ୧୯୧୮ ମସିହାରେ ତାଙ୍କର ବ୍ୟକ୍ତିଗତ ଉପାଧି ରାଜା ଥିବାବେଳେ ଏହାକୁ ୧୯୨୨ ମସିହାରେ ବଂଶାନୁକ୍ରମିକ କରାଗଲା । ୧୯୩୬ ମସିହାରେ ଉତ୍କଳ ପ୍ରଦେଶ ଗଠନ ପ୍ରାକକାଳରେ ସେ ମହାରାଜା ଉପାଧି ସହିତ ବ୍ରିଟିଶ ସରକାରଙ୍କର କେ.ସି.ଆଇ.ଇ ଉପାଧି ମଧ୍ୟ ଲାଭ କରିଥିଲେ । ପରବର୍ତ୍ତୀ ସ୍ୱାଧୀନତୋତ୍ତର ଯୁଗରେ ଉତ୍କଳ ଓ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ତାଙ୍କୁ ସମ୍ମାନ ସୂଚକ ଡକ୍ଟରେଟ ଉପାଧି ପ୍ରଦାନ କରିଥିଲେ । ଡିସେମ୍ବର ୨୬ ଓ ୨୭ ତାରିଖ ୧୯୧୪ ମସିହାରେ ପ୍ରଥମେ ପାରଳା ଉତ୍କଳ ସମ୍ମିଳନୀରେ ନିଜର କର୍ମ କୁଶଳତା ଦେଖାଇ ସେ ସମଗ୍ର ଓଡିଶାରେ ନିଜକୁ ପରିଚିତ କରାଇ ପାରିଥିଲେ ।

### ତିନିଥର ବିଲାତଯାତ୍ରା

ଓଡ଼ିଶା ପ୍ରଦେଶ ଗଠନ ସମ୍ପର୍କରେ ସେ ତିନିଥର ଶ୍ୱେତଦ୍ୱୀପର ଯାତ୍ରୀ ହୋଇଥିଲେ । ପ୍ରଥମ ଗୋଲଟେବୁଲ ବୈଠକ ଲଣ୍ଡନରେ ୧୯୩୦ ମସିହା ନଭେମ୍ବର ମାସରେ ଆରମ୍ଭ ହୋଇଥିଲା । ମାନ୍ଦ୍ରାଜ ବ୍ୟବସ୍ଥାପକ ସଭାର ସଭ୍ୟ ଥିଲେ ମଧ୍ୟ ସେ ବିହାର ଓଡିଶା ଆସେମ୍ବ୍ଲି ଦ୍ୱାରା ଓଡ଼ିଶାର ପ୍ରତିନିଧିଭାବେ ସ୍ୱୀକୃତ ହୋଇଥିଲେ । ପୁରୀ ଜିଲ୍ଲା ଡ଼େଲାଙ୍ଗ ଜମିଦାରିର ସେ ସ୍ୱତ୍ୱାଧିକାରୀ ଥିଲେ । ଶ୍ରୀକୃଷ୍ଣଚନ୍ଦ୍ର ଗଜପତି ସମଗ୍ର ଓଡ଼ିଆଭାଷୀ ଅଞ୍ଚଳର ଏକୀକରଣ ନିମିତ୍ତ ଏହି ବୈଠକରେ ସ୍ୱର ଉତ୍ତୋଳନ କରିଥିଲେ । ପ୍ରଥମ ଗୋଲଟେବୁଲ୍ ବୈଠକରେ ତତ୍‌କାଳୀନ ଅଧିକାଂଶ ମାହାଦଳୀୟ ସର୍ବଭାରତୀୟ ସ୍ତରର ନେତା ଯୋଗ ଦେଇଥାନ୍ତି । ଏମାନଙ୍କ ମଧ୍ୟରେ ଥିଲେ ମହମ୍ମଦ ଅଲ୍ଲି ଜିନ୍ନା, ଭୀମରାଓ ଆମ୍ବେଦକର, ତେଜ ବାହାଦୁର ସାହ୍ରୁ, ଏମ.ଆର.ଜୟକାର, ରାମସ୍ୱାମୀ ମୁଦାଲିୟର, ସାର ସି.ପି., ରାମସ୍ୱାମୀ ଆୟାର, ଶ୍ରୀନିବାସ ଶାସ୍ତ୍ରୀ, ଚିଲମନ ଲାଲ ସୀତଲବାଦ ପ୍ରଭୃତି । ଓଡ଼ିଶାରୁ ଥିଲେ ପାରଳାମହାରାଜା

ଓ ସାର୍ ପରଶୁରାମ ପାତ୍ର । ଆସ୍କାର ଓକିଲ ପାତ୍ର ଆଗରୁ ଅବିଭକ୍ତ ମାନ୍ଦ୍ରାଜ ପ୍ରଦେଶରେ ମନ୍ତ୍ରୀ ଥିଲେ । ବୈଠକରେ ପାରଳା ରାଜା ଓଡ଼ିଆମାନଙ୍କର ସମସ୍ୟା ଓ ସେମାନଙ୍କର ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନର ଯୌକ୍ତିକତା ଶୀର୍ଷକ ଏକ ପୁସ୍ତକ ସବୁ ସଭ୍ୟମାନଙ୍କୁ ବିତରଣ କରିଥିଲେ । ଏହା ପରେ ୧୯୩୧ ମସିହା ମେ ମାସରେ ଉତ୍କଳ ପ୍ରଦେଶ କମିଟି ସେହି କଥା ଦୋହରାଇଥିଲା । ୧୯୩୧ ମସିହାରେ ଓଡନେଲ କମିଟି ସୀମା ନିର୍ଣ୍ଣାୟକ ବସି ନିଜ ନିଷ୍ପତ୍ତି ଦେବା ପରେ ୧୯୩୩ ମସିହା ମାର୍ଚ୍ଚ ମାସରେ ବ୍ରିଟିଶ୍ ସରକାର ସେମାନଙ୍କର ନିଷ୍ପତ୍ତି ଏକ ଶ୍ୱେତପତ୍ର ଜରିଆରେ ଜଣାଇଲେ । ଏହା ଜୟପୁର ଜମିଦାରି ଓ ପାରଳାଖେମୁଣ୍ଡିକୁ ପ୍ରସ୍ତାବିତ ଓଡ଼ିଶା ପ୍ରଦେଶରୁ ବାଦ ଦେଇଥିଲା । ଏହାର ପ୍ରତିବାଦରେ ଓଡ଼ିଆ ପ୍ରତିନିଧି ଦଳ ପାରଳା ରାଜାଙ୍କ ଅଧ୍ୟକ୍ଷତାରେ ବିଲାତ ଯାଇ ଭାରତ ସଚିବ ସାର ସାମୁଏଲ ହୋରଙ୍କୁ ସାକ୍ଷାତ କରିଥିଲେ । ପ୍ରତିନିଧିଦଳରେ ଭୁବନାନନ୍ଦ ଦାସ, ଲିଙ୍ଗରାଜ ପାଣିଗ୍ରାହୀ, ଶ୍ୟାମସୁନ୍ଦର ଗନ୍ତାୟତ ଅନ୍ତର୍ଭୁକ୍ତ ଥିଲେ । ତେଲୁଗୁ ପ୍ରତିନିଧିମାନେ ମଧ୍ୟ ଭାରତ ସଚିବଙ୍କୁ ସାକ୍ଷାତ କଲେ । ବ୍ରିଟିଶ୍ ସରକାର ଜୟପୁରକୁ ପ୍ରସ୍ତାବିତ ଓଡ଼ିଶାରେ ମିଶାଇବାକୁ ରାଜି ହେଲେ ମାତ୍ର ପାରଳାଖେମୁଣ୍ଡି ମିଶାଇବା ସପକ୍ଷରେ ନଥିଲେ । ଜୟପୁରର ଦେୱାନ୍ ପୁଲାରେଡି, ଆଇ.ସି.ଏସ୍ ବଦଳି ହୋଇଯିବାପରେ ଓ ନୂତନ ମହାରାଜା ବିକ୍ରମଦେବ ରାଜଗାଦି ପାଇବା ପରେ ସେଠାରେ ପରିସ୍ଥିତି ସଂପୂର୍ଣ୍ଣ ପୃଥକ ହୋଇଯାଇଥିଲା । ପ୍ରସ୍ତାବିତ ଖଣ୍ଡିତ ଓଡ଼ିଶା ପ୍ରଦେଶ ଗଠନର ବିରୋଧରେ ଉତ୍କଳ ସମ୍ମିଳନୀ ନିଷ୍ପତ୍ତି ନେଲା । ଫେବୃଆରୀ ୧୯୩୪ ମସିହାରେ ସେମାନେ ପୂର୍ଣ୍ଣାଙ୍ଗ ଓଡ଼ିଶା ପ୍ରଦେଶରେ ପାରଳାଖେମୁଣ୍ଡି ରାଜ୍ୟ ମିଶିବା ଦାବି କଲେ । ପାରଳାରାଜା ୧୯୩୪ରେ ୩ୟ ବାର ବିଲାତ ଯାଇ ଭାରତ ସଚିବଙ୍କୁ ସାକ୍ଷାତ କଲେ । ପ୍ରଦେଶ ଗଠନ ନିମିତ୍ତ ନିଜ ସ୍ୱାର୍ଥ ତ୍ୟାଗ କରି ପାରଳାଖେମୁଣ୍ଡି ସହର ସହିତ ନିଜ ରାଜ୍ୟର ୩୦ଭାଗ ଅଞ୍ଚଳ ଓଡ଼ିଶାରେ ମିଶୁ ବୋଲି ପ୍ରସ୍ତାବ ଦେଲେ । ତଥାପି ମାନ୍ଦ୍ରାଜ୍ ସରକାରଙ୍କ ତେଲୁଗୁ ପ୍ରୀତି ଓ ଭାଇସରୟଙ୍କର ବିରୋଧ ଯୋଗୁ ଏହା ଗ୍ରହଣ କରାଯାଇନଥିଲା । ଏହି ସମୟରେ ପାର୍ଲାମେଣ୍ଟ ବସାଇଥିବା ଯୁଗ୍ମ ସିଲେକ୍ଟ କମିଟି ଭାରତ ଶାସନ ଆଇନ ଉପରେ ଗଠିତ ହୋଇଥିଲା । ଏହାର ଅଧକ୍ଷ ଥିଲେ ଲର୍ଡ ଲିନଲିଥିଗୋ । ପରେ ସେ ଭାରତର ବଡଲାଟ ହେଲେ । କୃଷି କମିଶନ ଅଧକ୍ଷ ଭାବରେ ସେ ମହାରାଜାଙ୍କର ସହକର୍ମୀ ଥିଲେ । ସେମାନେ ଜୟପୁର ଇଷ୍ଟେଟ୍ ସହିତ ପାରଳାଖେମୁଣ୍ଡି, ଜଳନ୍ତର ମାଳ ଅଞ୍ଚଳ ଓ ପାରଳା ସହର ସହିତ ପ୍ରସ୍ତାବିତ ଅଂଶ ଓଡ଼ିଶାରେ ମିଶିବା ପ୍ରସ୍ତାବକୁ ସମର୍ଥନ

କଲେ । ଏହା ଫଳରେ ଶ୍ୱେତ ପତ୍ର ଅନୁସାରେ ୨୧୫୧୫ ବର୍ଗ ମାଇଲ ପ୍ରଦେଶର ସୀମା ୩୨.୬୯୫ ବର୍ଗ ମାଇଲ୍‌କୁ ବୃଦ୍ଧି ପାଇଲା ।

୧୯୩୦ ମସିହା ଗୋଲଟେବୁଲ ବୈଠକରେ ବ୍ରିଟିଶ୍ ଡ଼େଲିଗେସନର ଜଣେ ସେକ୍ରେଟେରୀ ଥିଲେ ଉଲିୟମ ହଥର୍ଣ୍ଣ ଲୁଇସ । ସେ ଏହା ପୂର୍ବରୁ ସମ୍ବଲପୁରର ଡେପୁଟି କମିସନର (ଜିଲ୍ଲାପାଳ) ଥାଇ ଓଡ଼ିଶାର ସ୍ୱତନ୍ତ୍ରତା ବିଷୟରେ ଅବଗତ ଥିଲେ । ପରବର୍ତ୍ତୀ କାଳରେ ସେ ଓଡ଼ିଶାର ୨ୟ ଗଭର୍ଣ୍ଣର ହେଲେ ଓ ସେହି ସମୟରେ ପାରଳା ମହାରାଜା ପ୍ରଧାନମନ୍ତ୍ରୀ ହେବାରୁ ଉଭୟଙ୍କ ମଧ୍ୟରେ ସଦ୍‌ଭାବ ଓ ସହଯୋଗ ପ୍ରଦେଶ ପକ୍ଷରେ ହିତକର ହୋଇଥିଲା ।

## ପ୍ରଦେଶରେ ଉଚ୍ଚତର ଶିକ୍ଷାର ଶୁଭାରମ୍ଭ

ପ୍ରଦେଶ ଗଠନ ଉପରେ ଲାଟସାହେବଙ୍କ ପରାମର୍ଶଦାତା କମିଟିର ସଭ୍ୟ ଥିବା ଲାଟ ସଭା ସଭ୍ୟ କୃଷ୍ଣଚନ୍ଦ୍ର ଗଜପତି ଦୁଇବାର ଓଡିଶାର ପ୍ରଧାନମନ୍ତ୍ରୀ (ମୁଖ୍ୟମନ୍ତ୍ରୀ ପରେ କୁହାଗଲା) ହୋଇଥିଲେ । ପ୍ରଥମ ଥର ତାଙ୍କର ସହଯୋଗୀ ମନ୍ତ୍ରୀ ଥିଲେ ପାରଳାର ଓକିଲ ମାନ୍ଧାତା ଗୋରାଚାନ୍ଦ ପଟନାୟକ ଓ ପୁରୀର ଲତିଫୁର ରହମନ । ଏହା ସ୍ୱଳ୍ପସ୍ଥାୟୀ ଥିଲା ।

କଂଗ୍ରେସ ଶାସନଭାର ନେବାକୁ ରାଜି ହେବାରୁ ସେ ଇସ୍ତଫା ଦେଇଥିଲେ । ନଭେମ୍ବର ୧୯୪୧ ରୁ ଜୁନ୍ ୧୯୪୪ ଦ୍ୱିତୀୟ ମନ୍ତ୍ରୀମଣ୍ଡଳରେ କଂଗ୍ରେସରୁ ବାହାରି ଆସିଥିବା ପଣ୍ଡିତ ଗୋଦାବରୀଶ ମିଶ୍ର, ଅବଦୁଲ୍ ଶୋଭାନ୍ ଖାଁ (ଭଦ୍ରକର ଓକିଲ) ମନ୍ତ୍ରୀ । ଶ୍ରମିକ ନିର୍ବାଚନ ମଣ୍ଡଳୀର ପ୍ରତିନିଧି ପ୍ୟାରୀଶଙ୍କର ରାୟ ପାର୍ଲାମେଣ୍ଟରୀ ସେକ୍ରେଟରୀ ଥିଲେ ।

ପ୍ରଥମ ମନ୍ତ୍ରୀମଣ୍ଡଳର ସଭ୍ୟମାନଙ୍କର ବେତନ ସେତେବେଳେ ଏକହଜାର ଟଙ୍କା ଥିଲା, ମାତ୍ର କଂଗ୍ରେସର ମନ୍ତ୍ରୀମାନେ ସେହି ବେତନ ଗ୍ରହଣ କଲେ । ୧୯୩୭ ମସିହା ଅପ୍ରେଲ ମାସରେ ଓଡିଶାରେ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ନିମିତ୍ତ କମିଟି ଶିକ୍ଷା ବିଭାଗ ସଚିବ ଏଫ୍.ଆର୍.ଉଡ୍. ଡିପିଆଇ ହରବର୍ଟ ଡିପି, ରେଭେନ୍‌ସା କଲେଜର ଅଧ୍ୟକ୍ଷ ଶ୍ୟାମଚରଣ ତ୍ରିପାଠୀ, ଆଇଇଏସ୍, ଅଧ୍ୟାପକ ପ୍ରାଣକୃଷ୍ଣ ପରିଜା, ଆଇ ଇଏସ୍, ଟ୍ରେନିଂ କଲେଜ ଅଧ୍ୟକ୍ଷ ମହେଶଚନ୍ଦ୍ର ପ୍ରଧାନ, ଖଲିକୋଟ କଲେଜରେ ଅଧ୍ୟକ୍ଷ

ପ୍ରେମାନନ୍ଦ ମହାନ୍ତି ଓ ପାରଳାଖେମୁଣ୍ଡି କଲେଜ ଅଧ୍ୟକ୍ଷ ପନ୍ନାଦି ଜଗନ୍ନାଥ ସ୍ୱାମୀଙ୍କୁ ନେଇ ଗଠିତ ହୋଇଥିଲା । ପରବର୍ତ୍ତୀ କାଳରେ ପଣ୍ଡିତ ନୀଳକଣ୍ଠ ଦାସ, କେନ୍ଦ୍ର ବ୍ୟବସ୍ଥାପକ ସଭାର ସଭ୍ୟ ଏହାର ଅଧ୍ୟକ୍ଷ ହେଲେ । ମାତ୍ର ୧୯୪୨-୪୩ ମସିହାର ବଜେଟରେ ପଣ୍ଡିତ ଗୋଦାବରୀଶ ନୂତନ ବିଶ୍ୱବିଦ୍ୟାଳୟ ଗଠନ ବିଚାର ନିମନ୍ତେ ସଭ୍ୟମାନଙ୍କୁ ଅନୁରୋଧ କଲେ । ୧୯୪୩-୪୪ ମସିହା ବଜେଟରେ ବିଶ୍ୱବିଦ୍ୟାଳୟ ପାଇଁ ଅର୍ଥ ବ୍ୟବସ୍ଥା କରାଗଲା । ବ୍ୟବସ୍ଥାପକ ସଭାରେ ବିଶ୍ୱବିଦ୍ୟାଳୟ ବିଲ୍ ଉପସ୍ଥାପିତ କରାଯାଇ ମଞ୍ଜୁରୀ ପାଇଲା ଓ ୨୭ ନଭେମ୍ବରରେ ଏହାର କାର୍ଯ୍ୟ ଆରମ୍ଭ କରାଗଲା । ତିନିଗୋଟି କଲେଜ ଓ ଗଡ଼ଜାତ ସମେତ ଓଡ଼ିଶାର ୫୦ ଟି ସ୍କୁଲକୁ ଧରି ଏହା ଆରମ୍ଭ ହେଲା । ଏଥିପାଇଁ ବଜେଟରେ ୨୦ ହଜାର ଟଙ୍କାର ଗ୍ରାଣ୍ଟ ଦିଆଗଲା । ୫ବର୍ଷ ପର୍ଯ୍ୟନ୍ତ ପ୍ରତିବର୍ଷ ଫାଉଣ୍ଡେସେନ୍ ଫଣ୍ଡ ପାଇଁ ୨୦ ହଜାର ଟଙ୍କା ଦେବାର ବ୍ୟବସ୍ଥା ମଧ୍ୟ ରଖାଗଲା । ନିର୍ମାଣ କାର୍ଯ୍ୟ ନିମିତ୍ତ ଷାଠିଏ ହଜାର ଟଙ୍କା ଫର୍ଣ୍ଣିଚର ଖରିଦ ପାଇଁ ସାତ ହଜାର ଓ ଲାଇବ୍ରେରୀପାଇଁ ଦଶ ହଜାର ଟଙ୍କା ଦେବାର ବଜେଟ ବ୍ୟବସ୍ଥା ରହିଲା । ରେଭେନ୍ସା କଲେଜରେ ଭୂଗୋଳ ଶିକ୍ଷା ଦେବାର ବ୍ୟବସ୍ଥା କରାଗଲା । ସମ୍ବଲପୁର ଜିଲ୍ଲା ସ୍କୁଲରେ ଅସ୍ଥାୟୀ ଭାବରେ ଜୁନିୟର କଲେଜ ଖୋଲାଯାଇ ଆଇ.ଏ., ଶ୍ରେଣୀର ଶିକ୍ଷା ଦେବା ବ୍ୟବସ୍ଥା ହେଲା । ୩ ହଜାର ଟଙ୍କା ବ୍ୟୟ ବ୍ୟବସ୍ଥା ଥାଇ ପରେ ପରେ ବାଲେଶ୍ୱର ଓ ପୁରୀରେ କଲେଜ ଖୋଲିଲା । ଜୟପୁର ମହାରାଜା ଜୟପୁରରେ ଓ ପାଟଣା ମହାରାଜା ବଲାଙ୍ଗୀରରେ ମଧ୍ୟ କଲେଜ ଖୋଲିଲେ । ଖଡ଼ିଆଳ ଓଡ଼ିଶାରେ ନୂଆ ମିଶିଥିଲା । ବଜେଟରେ ଖଡ଼ିଆଳରେ ମାଇନର ସ୍କୁଲ ଓ ନୂଆପଡ଼ାରେ ସବ୍‌ଡିଭିଜନ୍ ଅଫିସ୍ ଥିବାରୁ ସେଠାରେ ଅନ୍ୟ ଏକ ମାଇନର ସ୍କୁଲ ଖୋଲିବାର ମଧ୍ୟ ବ୍ୟବସ୍ଥା କରାଗଲା । ଭାରତୀୟ ମେଡ଼ିକାଲ କାଉନ୍‌ସିଲ୍ ଭାରତ ବର୍ଷରୁ ମେଡ଼ିକାଲ ସ୍କୁଲ ଉଠାଇ ଦେବାକୁ ନିଷ୍ପତ୍ତି ନେଲେ । ଗଭର୍ଣ୍ଣର ଲୁଇସଙ୍କ ସମ୍ବଲପୁରରେ ଅନ୍ୟ ଗୋଟିଏ ମେଡିକାଲ ସ୍କୁଲ ପ୍ରତିଷ୍ଠା କଥା ହେଲା ନାହିଁ । ମାତ୍ର ମନ୍ତ୍ରୀମଣ୍ଡଳ ଓଡ଼ିଶାରେ ଏକ ମାତ୍ର କଟକର ମେଡ଼ିକାଲ ସ୍କୁଲକୁ କଲେଜରେ ପରିଣତ କରିବାକୁ ନିଷ୍ପତ୍ତି ନେଲେ । ବଜେଟରେ ଅର୍ଥର ବ୍ୟବସ୍ଥା କରାଗଲା । ୧୯୪୩ ଜୁଲାଇ ମାସଠାରୁ କଲେଜ ପ୍ରତିଷ୍ଠା ପ୍ରକ୍ରିୟା ଆରମ୍ଭ ହେଲା । କୃଷ୍ଣଚନ୍ଦ୍ର ଗଜପତିଙ୍କ ମନ୍ତ୍ରୀମଣ୍ଡଳ ଓଡ଼ିଶାରେ ଉଚ୍ଚତର ଶିକ୍ଷାର ଶୁଭାରମ୍ଭ କରିବା ଏହିଥିରୁ ଜଣାଯିବ ।

ହାଇକୋର୍ଟ ଗଠନ ସଭ୍ୟମାନଙ୍କର ବିଚାରକୁ ଛାଡ଼ି ଦିଆଯାଇଥିଲା । ୧୯୪୮

ରେ ଗଡଜାତ ରାଜ୍ୟ ମିଶ୍ରଣ ପରେ ଏହା ସମ୍ଭବ ହେଲା ।

## ଅର୍ଥନୀତିକ ବିକାଶ ଦିଗରେ ଉଦ୍ୟମ

ଓଡିଶାର ଅର୍ଥନୀତିକ ବିକାଶ ଓ ରାଜ୍ୟର ଅର୍ଥାଗମ ବ୍ୟବସ୍ଥା ନିୟନ୍ତଣ ପାଇଁ ଗୋଟିଏ କମିଟି ଉନ୍ନୟନ ମନ୍ତ୍ରୀଙ୍କ ଅଧକ୍ଷତାରେ ଗଢ଼ାଗଲା । ଖଲିକୋଟ କଲେଜରେ ଅଧକ୍ଷ ଥିବା ନରସିଂହ ପାଢ଼ି ଏହାର ସଂପାଦକ ଥିଲେ । ଏହାର ଅନ୍ୟ ସଦସ୍ୟମାନେ ଥିଲେ ମାନ୍ଧାତା ଗୋରାଚାନ୍ଦ ପଟ୍ଟନାୟକ, ଜୟପୁର ଦେଓ୍ୱାନ ସି.ଭି.ରାଓ. ବାର -ଆଟ-ଲ, ଭିକାରୀ ଚରଣ ପଟ୍ଟନାୟକ, କଟକ, ମହମ୍ମଦ ସାଲେ, ସମ୍ବଲପୁର, କୁମାର ବିଦ୍ୟାଧର ସିଂହ ଦେଓ, ଜୟପୁର, ଚ଼ଉଧୁରୀ ରାଧାନାଥ ମିଶ୍ର ଓ ବଂଶୀଧର ରଥ(କଟକ) । ଏମାନେ ରାଜସ୍ୱ ଆୟବୃଦ୍ଧି ଓ ଅର୍ଥନୀତିକ ବିକାଶ ଦିଗରେ ନିଜର ସୁଚିନ୍ତିତ ମତାମତ ଜଣାଇଲେ ।

ରାୟ ବାହାଦୁର ଭିକାରୀଚରଣ ପଟ୍ଟନାୟକ ଓଡ଼ିଶାରେ କୁଟୀର ଶିଳ୍ପର ବିକାଶ ଓ ଦ୍ରୁତ ପ୍ରସାର କରାଯିବା ନିମିତ୍ତ ନିଜର ରିପୋର୍ଟ ୧୯୪୫ ମସିହାରେ ଦାଖଲ କଲେ । ପରବର୍ତ୍ତୀ କାଳରେ ଓଡ଼ିଶାର ଶିଳ୍ପ ସଚିବ ଡକ୍ଟର ହରିବନ୍ଧୁ ମହାନ୍ତି, ଅଧାପକଙ୍କୁ ଓଡିଶାରେ ଶିଳ୍ପ ବିକାଶର ସମ୍ଭାବନା ଅନୁଧାନ ନିମିତ୍ତ ନିଯୁକ୍ତ କରାଗଲା । ତାଙ୍କର ରିପୋର୍ଟ ମଧ ୧୯୪୫ ମସିହାରେ ଦାଖଲ ହେଲା । ଏହା ଉପରେ ପରବର୍ତ୍ତୀ କାଳରେ ଶିଳ୍ପ ପ୍ରତିଷ୍ଠା ସମ୍ଭବ ହେଲା । ତେଣୁ ସାମନ୍ତବାଦୀ ଥାଇ ମଧ ଯୋଜନାବଦ୍ଧ ଅର୍ଥନୀତିରେ ସାଧାରଣ ଜନତାର ଆର୍ଥିକ ଉନ୍ନତି କୃଷ୍ଣଚନ୍ଦ୍ରଙ୍କ ଚିନ୍ତାଧାରାରେ ଥିଲା ।

(ଚଳିତ ବର୍ଷ) ୨୦୦୪-୦୫ ମସିହା ପ୍ରଥମ ଅତିରିକ୍ତ ବଜେଟରେ ଆୟ ୨୧୨୭ କୋଟି ବ୍ୟୟ ତଦନୁରୂପ ଟଙ୍କା ଦେଖି ପ୍ରବନ୍ଧ ଉଲ୍ଲେଖ ଅର୍ଥ ହାସ୍ୟାସ୍ପଦ ଦେଖାଯାଇ ପାରେ । ମାତ୍ର ଏଠାରେ ସ୍ମରଣ ଯୋଗ୍ୟ ଯେ ସେ ସମୟରେ ଓଡ଼ିଶା ବଜେଟରେ ଆୟ ମାତ୍ର ଦୁଇକୋଟି ପାଖାପାଖି ଥିଲା, ଟଙ୍କାର କ୍ରୟ ଶକ୍ତି ବିଚାରକୁ ନେଲେ ୧୯୨୯ ମସିହାରେ ସମ୍ବଲପୁର ଧାନ-ଓଡ଼ିଶାର ଚାଷୀକୁଳର ଏକମାତ୍ର ସମ୍ବଳ ଓ ଅର୍ଥକାରୀ ଫସଲ ଟଙ୍କାକୁ ଦେଢ଼ମହଣ (ପ୍ରାୟ ୬୦କେଜି) ଭାଉରେ ବିକ୍ରିୟ ହେଉଥିଲା ।

## ସାହିତ୍ୟିକଙ୍କୁ ମର୍ଯ୍ୟାଦା

ସ୍ୱର୍ଗତ ଗୋପାଳ ଚନ୍ଦ୍ର ଛୋଟରାୟ ଜଣେ ନାଟ୍ୟକାର ଓ ରେଡ଼ିଓ ଶିଳ୍ପୀଭାବରେ ଓଡ଼ିଶାରେ ସୁପରିଚିତ । ତାଙ୍କର ଆତ୍ମଜୀବନୀ 'ପଥିକ' ୧୯୯୫ ମସିହାରେ ବିଦ୍ୟାପୁରୀ କଟକ

ଦ୍ୱାରା ପ୍ରକାଶିତ । ତାଙ୍କର ଅଭିଜ୍ଞତା ସେ ବର୍ଣ୍ଣନା କରିଛନ୍ତି । ୧୯୪୨-୪୩ ମସିହାରେ ଓଡ଼ିଶାରେ ଯେ କୌଣସି ମୁହୂର୍ତ୍ତରେ ଜାପାନ ଆକ୍ରମଣ ଆଶଙ୍କା ଥାଏ । ଯୁଦ୍ଧ ସାମ୍ମୁଖ୍ୟରେ ଗୋଟିଏ ସଙ୍ଗୀତ ନାଟକ ଶାଖା ଥାଏ । ସାଧାରଣ ଜନତାଙ୍କୁ ଜାପାନ ଆକ୍ରମଣର ବିଭୀଷିକା ଜଣାଇବା ଏହାର ଉଦ୍ଦେଶ୍ୟ ଥାଏ । ବିଶିଷ୍ଟ ଜମିଦାର, ଉଦାରପନ୍ଥୀ ନେତା, 'ମୁକୁର' ସଂପାଦକ ଓ ବିଧାୟକ ବ୍ରଜସୁନ୍ଦର ଦାସ ଏହାର ମୁଖ୍ୟ ଥାଆନ୍ତି । ଗୋଟିଏ ଏକାଙ୍କିକା ପ୍ରତିଯୋଗିତା ହେଲା । ମିତ୍ର ପକ୍ଷର ଯୁଦ୍ଧ ଉଦ୍ୟମର ପ୍ରଚାରପାଇଁ ପାଲା, ଦାସକାଠିଆ ଓ ଏକାଙ୍କିକା ମାଧମରେ ଲୋକମାନଙ୍କର ମନୋରଞ୍ଜନ କରିବା ଏହାର ଉଦ୍ଦେଶ୍ୟ ଥିଲା । ପାରିତୋଷିକପାଇଁ ଗୋପାଳବାବୁ ଏକାଙ୍କିକା ଦାଖଲ କଲେ । ତାଙ୍କ ଲେଖା ଶ୍ରେଷ୍ଠ ନିର୍ବାଚିତ ହେଲା । କୋଡ଼ିଏ ଟଙ୍କା, ଲେଖକଙ୍କ ପାରିତୋଷିକ ମିଳିବାର କଥା । ସେ ସମୟରେ ଏହାର କ୍ରୟ ଶକ୍ତି ଯଥେଷ୍ଟ ଥିଲା ମାତ୍ର ଗୋପାଳ ବାବୁଙ୍କ ନାଟକ ଦିନର "ସ୍ପେଶାଲ କେସ" କହି ତାଙ୍କୁ ପଇଁତିରିଶ ଟଙ୍କା ପୁରସ୍କାର ମିଳିଲା । ନାଟକର ନାମ ଥିଲା "ସହଧର୍ମିଣୀ" । ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚରେ ଏହା ଗଭର୍ଣ୍ଣର ସାର ହଥର୍ଣ୍ଣ ଲୁଇସଙ୍କୁ ପଢ଼ା ଯିବାପରେ ମଞ୍ଚସ୍ଥ ହେଲା । ଗଭର୍ଣ୍ଣର ମୂଳରୁ ଶେଷ ଉପସ୍ଥିତ ରହି ଏହା ଦେଖିଲେ । ପରେ 'ଭାରତୀ' ରଙ୍ଗ ମଞ୍ଚରେ ଏହା ଅଭିନୀତ ହେଲା । ପ୍ରଧାନମନ୍ତ୍ରୀ ପାରଳା ମହାରାଜା ଅତିଥି ଥାଇ ନାଟକ ଶେଷରେ ପରଦିନ ନାଟ୍ୟକାର ତାଙ୍କୁ ତୁଳସୀପୁର ବାସ ଭବନରେ ସାକ୍ଷାତ କରିବାକୁ ନିର୍ଦ୍ଦେଶ ଦେଲେ । ଅଭିନୟରେ ପ୍ରୀତ ହୋଇ ସେଠାରେ ସେ ନାୟକ ଓ ନାୟିକା ଉଭୟଙ୍କୁ ଗୋଟିଏ ଲେଖା ସ୍ୱର୍ଣ୍ଣ ପଦକ ପ୍ରଦାନ କରିଥିଲେ । ପରଦିନ ପ୍ରଧାନମନ୍ତ୍ରୀ ନିଜ ବାସଭବନରେ ସ୍ମିତବଦନରେ ନାଟ୍ୟକାରଙ୍କୁ ଶହେ ଟଙ୍କାର ଖଣ୍ଡେ ନୋଟ ବଢ଼ାଇଦେଲେ । ମହାରାଜା ତାଙ୍କୁ ସ୍ମରଣ କରାଇଦେଲେ ଯେ କାଲିର ରଙ୍ଗମଞ୍ଚରେ ସେମାନେ ଥିଲେ ଅଭିନେତା । ସେଥିପାଇଁ ସେମାନଙ୍କୁ ରଙ୍ଗମଞ୍ଚରେ ପୁରସ୍କୃତ କଲି । ମାତ୍ର ତୁମେ ଜଣେ ଲେଖକ । ତୁମ ସହିତ ପଦେ ଅଧେ କଥାବାର୍ତ୍ତା ହେବାକୁ ଚାହୁଁଥିଲି । "ଆଜି ଅର୍ଦ୍ଧ ଶତାଧିକ ବର୍ଷ ପରେ ମୁଁ ଏହି କଥାଟି ଉଲ୍ଲେଖ କରୁଛି ଯେ ଯଦି ସେତେବେଳେ ସମ୍ମାନନୀୟ ବ୍ରଜ ସୁନ୍ଦର ଦାସ ଓ ପାରଳା ମହାରାଜା ଶ୍ରୀକୃଷ୍ଣଚନ୍ଦ୍ର ଦେବଙ୍କ ଠାରୁ ଏହିପରି ପ୍ରୋତ୍ସାହନ ପାଇ ନଥାନ୍ତି ତେବେ ବୋଧହୁଏ ନାଟକ ଲେଖିବା କଥା କେବେହେଲେ ଚିନ୍ତା କରି ପାରି ନଥାନ୍ତି ।" ଏହା 'ପଥିକ'ଙ୍କର ସ୍ୱମନ୍ତବ୍ୟ (ପୃ ୧୭୮) । ତାଙ୍କର ପ୍ରକାଶିତ ପୁସ୍ତକର ସଂଖ୍ୟା, ୫୫ ସେଥିରୁ ନାଟକ ୩୫ ଓ ଗୀତନାଟ୍ୟ ୧୭ ଖଣ୍ଡ ।

## ଦେଶସେବାରେ ଅର୍ଥବ୍ୟୟ

ତାଙ୍କ ଜନ୍ମଦିନ ଉପଲକ୍ଷେ ତା ୨୭.୦୪.୧୯୬୮ ମସିହା 'ସମାଜ'ରେ 'ନବ ଉତ୍କଳ ନିର୍ମାତା ପାରଳାଖେମୁଣ୍ଡି ମହାରାଜା, ନାମରେ ମୋର ଗୋଟିଏ ପ୍ରକାଶିତ ପ୍ରବନ୍ଧ ତାଙ୍କ ଦୃଷ୍ଟି ଆକର୍ଷଣ କଲା । ଜମିଦାରି ପାଇବାବେଳେ ସେ କୋଟିଏ ଟଙ୍କା ପାଇଥିଲେ ଓ ନିଜ ସାହେବ ଶିକ୍ଷକଙ୍କ ପ୍ରରୋଚନାରେ ସେ ଏହା ଓଡ଼ିଆ ଜାତିର ଉନ୍ନତି ନିମିତ୍ତ ଉତ୍ସର୍ଗ କରିଥିବା ମୁଁ ଉଲ୍ଲେଖ କରିଥିଲି । ଏହାର ପ୍ରତିବାଦ କରି ସେ ୨୫ ଲକ୍ଷ ଟଙ୍କା ପାଇଥିବା ବିଷୟ ୩.୭.୬୮ ତାରିଖରେ ସମାଜରେ ଏକ ପତ୍ରରେ ପ୍ରକାଶ କରିଥିଲେ । ତାଙ୍କର ପୂର୍ଣ୍ଣାଙ୍ଗ ଜୀବନୀ ଲେଖିବା ନିମିତ୍ତ ମୋର ପ୍ରସ୍ତାବ ସେ ପ୍ରତ୍ୟାଖ୍ୟାନ କଲେ । ପରବର୍ତ୍ତୀ ଜନ୍ମଦିବସରେ ତା ୧୭.୦୪.୬୯ରେ 'ସମାଜ'ରେ ମଧ 'ନବଉତ୍କଳ ଗଠନରେ ପାରଳା ମହାରାଜାଙ୍କ ଅବଦାନ' ଶୀର୍ଷକ ମୋର ଏକ ପ୍ରବନ୍ଧ ପ୍ରକାଶିତ ହେଲା । ଏଥିପାଇଁ ତଥ୍ୟ ସଂଗ୍ରହ ସମୟରେ ଭାଗୀରଥି ପାଢ଼ୀ ପାରଳା ଉତ୍କଳ ହିତୈଷିଣୀ ସମାଜର କର୍ମକର୍ତ୍ତା, ବିଲାତ ଯିବାବେଳେ କଟକରେ ମହାରାଜା ଆଉ ଅଧିକ ଟଙ୍କା କରଜ କରି ନେଇଥିବା ସେ ଅଧ୍ୟାପକ ଯୁଗଳ କିଶୋର ପାଣିଗ୍ରାହୀଙ୍କ ଠାରୁ ଶୁଣିଥିବା ପ୍ରକାଶ କଲେ । ଯୁଗଳ ମାଷ୍ଟ୍ରେ କଲେଜରେ ଅଧ୍ୟାପକ ଥାଇ ମହାରାଜାଙ୍କର ବ୍ୟକ୍ତିଗତ ସଚିବ ଥିଲେ । ଏହାର ସମର୍ଥନ ଅନ୍ୟ କୌଣସି ସୂତ୍ରରୁ ନପାଇ ପ୍ରବନ୍ଧରେ ଏହା ଉଲ୍ଲେଖ କଲିନାହିଁ ।

ସ୍ୱର୍ଗତ ପଣ୍ଡିତ କୃଷ୍ଣଚନ୍ଦ୍ର କର ଜଣେ ଲବ୍ଧ ପ୍ରତିଷ୍ଠ ସାହିତ୍ୟିକ । ତାଙ୍କର ଆତ୍ମଜୀବନୀ 'ହଜିଲା ଦିନର ସ୍ମୃତି' ୧୯୯୧ ମସିହାରେ କଟକର ଗ୍ରନ୍ଥ ମନ୍ଦିରଙ୍କ ଦ୍ୱାରା ପ୍ରକାଶିତ । ଏଥିରେ ସେ ଉଲ୍ଲେଖ କରିଛନ୍ତି ମହାରାଜାଙ୍କର ଦେଶପ୍ରେମ ଓ ମହାନୁଭବତା । ସେ ଏହାର ଚାକ୍ଷୁଷ ସାକ୍ଷୀ (ପୃ. ୩୦୯ ରୁ ୩୧୪) । ତାଙ୍କ ନିଜ ଭାଷାରେ

"ଅତୁଳ ଜନ୍ମଭୂମି ମମତା ଓ ଉତ୍କଳ ଜନନୀ ସେବାରେ ଗୋଟିଏ ତୁଳ୍ୟାତି ରହିତ ଦେଶାତ୍ମବୋଧ ଦୃଷ୍ଟାନ୍ତ ଏଠାରେ ଉଲ୍ଲେଖ କରିବାକୁ ଯାଉଛି ଯାହା ମୋର ପ୍ରତ୍ୟକ୍ଷଦୃଷ୍ଟ ।"

ଲଣ୍ଡନ ଯାତ୍ରା ଏକ ପ୍ରକାର ବହ୍ୱାଡମ୍ବର ଜୈତ୍ରର ଯାତ୍ରା ରୂପ ଧାରଣ କରିଥିଲା । ଏକ ନବନିର୍ମିତ ରମଣୀୟ ପ୍ରାସାଦରେ ବ୍ରଜସୁନ୍ଦର ବାବୁ ଅବସ୍ଥାନ କରୁଥିଲେ । ଏକ ନାତିବୃହତ୍‌ଦ୍ୱିତଳଭବନ । ତଳ ପ୍ରକୋଷ୍ଟଟି ଉତ୍କଳ ସମ୍ମିଳନୀର

ଅଫିସ କକ୍ଷ ଏବଂ ଉପର ପ୍ରକୋଷ୍ଠଟି ସମ୍ମିଳନୀର ସମ୍ମେଳନ କକ୍ଷ । ଏହା ଛଡ଼ା ଯେଉଁ ଆଗନ୍ତୁକମାନେ ସମୟସମୟରେ ଆସନ୍ତି ଏହି ଉପରତାଲା କକ୍ଷଟି ସେମାନଙ୍କର ହୁଏ ରହଣିସ୍ଥଳ । ଦେଶାତ୍ମବୋଧୋଦ୍‌ବୁଦ୍ଧ ଗଜପତି ମହାରାଜା କୃଷ୍ଣଚନ୍ଦ୍ର ନାରାୟଣ ଦେବ ବିଲାତକୁ ଏଥର ବିଜୟ ଅଭିଯାନ କଲାବେଳେ କଟକରେ ଦିନଟିଏ ଅଟକିଥିଲେ । ସେହିଦିନ ତାଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା କରିବା ଉଦ୍ଦେଶ୍ୟରେ କଟକର ବିଶିଷ୍ଟ ବୁଦ୍ଧିଜୀବୀ ଗୋଷ୍ଠୀ ପକ୍ଷରୁ ବ୍ରଜ ସୁନ୍ଦର ବାବୁଙ୍କ ଘାସାଚ୍ଛାଦିତ ମନୋରମ ପ୍ରାଙ୍ଗଣ ପରିସରରେ ଏକ ଗୁରୁଗମ୍ଭୀର ସମାବେଶର ଆୟୋଜନ କରାଯାଇଥିଲା ।

ସଭା ସାଙ୍ଗ ହେବା ପରେ ପାରଳା ମହାରାଜାଙ୍କୁ ସମ୍ମିଳନୀ ଭବନର ଉପରତାଲା କକ୍ଷକୁ ପାଛୋଟି ନିଆଯାଇଥିଲା । ସେଠାରେ ସେ ଉତ୍କଳ ସମ୍ମିଳନୀର ସଭାପତି, ସଂପାଦକ ଓ ବିଭିନ୍ନ କର୍ମକର୍ତ୍ତା ପ୍ରଭୃତିଙ୍କ ସହିତ କିଛି ସମୟ ଆଳାପ ଆଲୋଚ୍‌ନା କରିଥିଲେ । ସେତେବେଳେ ସ୍ୱାମୀ ବିଚ୍ଛିତ୍ରାନନ୍ଦ ଦାସ, ବ୍ରଜ ସୁନ୍ଦର ଦାସ, ଲକ୍ଷ୍ମୀଧର ମହାନ୍ତି, ଗୋପାଳ ଚନ୍ଦ୍ର ପ୍ରହରାଜ, ଭିକାରୀଚରଣ ପଟ୍ଟନାୟକ, ଚିନ୍ତାମଣି ଆଚାର୍ଯ୍ୟ, ଲକ୍ଷ୍ମୀ ନାରାୟଣ ସାହୁ, ସୋମନାଥ ମହାପାତ୍ର ଇତ୍ୟାଦି ବିଶିଷ୍ଟ ବ୍ୟକ୍ତିଙ୍କ ମେଳରେ ମୁଁ ମଧ୍ୟ ଉପସ୍ଥିତ ଥିଲି । ସମ୍ମିଳନୀର ପ୍ରଚାର ସବକମିଟିର ମୁଁ ଜଣେ ସଭ୍ୟ ଥିବାରୁ ପ୍ରହରାଜ ମହୋଦୟ ମତେ ସେଠାକୁ ସଙ୍ଗରେ ନେଇଯାଇଥିଲେ । ମହାରାଜା ଉପସ୍ଥିତ ବନ୍ଧୁମାନଙ୍କୁ ଲଣ୍ଡନରେ ଆୟାସସାଧ ନିଜ କାର୍ଯ୍ୟ ଯୋଜନାର ସଂକ୍ଷିପ୍ତ ସୂଚ୍‌ନା ଦେଉଥିବାବେଳେ ତାଙ୍କଠାରୁ ଡ଼ାକରା ପାଇଁ ରାଜବାଟୀ ଅଧୀକ୍ଷକ Palace Supdt .ଶ୍ରୀ ଛାମୁରେ ହାଜର ହେଲେ । ଲଣ୍ଡନ ଯାତ୍ରାରେ ସେ ମହାରାଜାଙ୍କର ତହବିଲ ରକ୍ଷା ତଥା ହିସାବ ରକ୍ଷକ ରୂପେ ରାଜକୀୟ ଦଳରେ ଅନ୍ତର୍ଭୁକ୍ତ ଥିଲେ । ମହାରାଜା ସେହି ତହବିଲଦାରଙ୍କୁ ପଚାରି ବୁଝିଲେ ଯେ ବିଲାତ ଗସ୍ତପାଇଁ ସଙ୍ଗରେ ଆସିଥିବା ମୋଟ ସମ୍ବଳର ପରିମାଣ ପାଞ୍ଚଲକ୍ଷ ଟଙ୍କାରୁ କିଞ୍ଚିତ ମାତ୍ର ଅଧିକ । ଜମା ପାଞ୍ଚଲକ୍ଷ । ମହାରାଜାଙ୍କ ବଡ଼ ଆଖିକୁ ଏହା ପାଇଲା ନାହିଁ, କମ୍ ଦିଶିଲା । ମନ ଉଣାରେ ସେ ବ୍ରଜସୁନ୍ଦର ବାବୁଙ୍କୁ କହିଲେ "ବିଦେଶକୁ ଗଲେ ପରିସ୍ଥିତିର ଦାବି ଅନୁସାରେ ଖର୍ଚ୍ଚ କରିବାକୁ ପଡ଼େ । ପରିସ୍ଥିତିର ଚାହିଦାମତେ ପର୍ଯ୍ୟାପ୍ତ ଧନ ପାଖରେ ନ ଥିଲେ ବିଦେଶରେ ହଟହଟା ହେବାକୁ ହୁଏ । ନିଜର ସୀମିତ ସମ୍ବଳକୁ ଚାହିଁ ବାଣ୍ଟିକୁଣ୍ଟି ଖର୍ଚ୍ଚ କଲେ ବାଞ୍ଛିତ ଫଳ ଲାଭର ଆଶା ବ୍ୟାହତ ହୋଇଥାଏ । ମୁଁ ବିରାଟ ଆଶା ଘେନି ଗୋଲଟେବୁଲ ବୈଠକରେ ଯୋଗ ଦେବାକୁ ଯାଉଛି । ଏଥର ଲଣ୍ଡନରେ ଅପରିମିତ ବ୍ୟୟର ପ୍ରୟୋଜନ ଅଛି ।

ତହବିଲରେ ଥିବା ଏତିକି ମାତ୍ର ଟଙ୍କାରେ ଲକ୍ଷ୍ୟ ହାସଲ ହୋଇପାରିବ ବୋଲି ମୋର ବିଶ୍ୱାସ ଆସୁନାହିଁ । ଅନ୍ତତଃ ଆଉ ଲକ୍ଷେଟଙ୍କା ତୁମେ ମୋ ପାଇଁ ଯୋଗାଡ଼ କରିଦିଅ । ସେତକ ପାଖରେ ଥିଲେ ଅର୍ଥାଭାବର ସଂଶୟ ରହିବ ନାହିଁ । ଲମ୍ଫକୁଞ୍ଚି ସବୁଥିକୁ ପାଏ ପରା । ଏଠି ବଡ଼ ମହାଜନ କିଏ ଅଛନ୍ତି ତୁରନ୍ତ ଡ଼କାଅ । ମୁଁ ହାଣ୍ଡନୋଟରେ ସହିକରି ଟଙ୍କା ନେବାକୁ ପ୍ରସ୍ତୁତ ହୋଇ ରହିଛି । ମୋର କଡ଼ା ବ୍ୟବସ୍ଥା ଅନୁଯାୟୀ ରାଜସ୍ୱ ଆଦାୟ ତନାଘନା ଚାଲିଛି । ତେଣୁ ମୁଁ ବିଲାତରୁ ଫେରିବା ମାତ୍ରେ ହିଁ ଏହି ଋଣ ସୁଧ ସହିତ ପରିଶୋଧ ହୋଇଯିବ ।"

ବ୍ରଜସୁନ୍ଦର ବାବୁ ଉତ୍ତରରେ କହିଲେ "ବଡ଼ ମହାଜନ ତ ଅଛନ୍ତି, କିନ୍ତୁ ମଣିମା କାହିଁକି ହାଣ୍ଡନୋଟରେ ସ୍ୱାକ୍ଷର କରିବେ ? ଏହାଦ୍ୱାରା ରାଜସମ୍ମାନରେ ନିଶ୍ଚୟ ଆଞ୍ଚ ଆସିବ । ଏଣୁ ମୁଁ ବର୍ତ୍ତମାନ ମହାଜନ ଠାରୁ ହାଣ୍ଡନୋଟରେ ଏକଲକ୍ଷ ଟଙ୍କା ଆଣି ତହବିଲଦାରଙ୍କ ହସ୍ତରେ ଅର୍ପଣ କରିବି । ମହାମନା ମହାରାଜ ବ୍ରଜସୁନ୍ଦର ବାବୁଙ୍କୁ ବୁଝାଇଦେଲେ "ପାରଳାଖେମୁଣ୍ଡି ଧରାଧୀଶ ଗଜପତି ମହାରାଜା କୃଷ୍ଣଚନ୍ଦ୍ର ନାରାୟଣ ଦେବ ରୂପେ ମୁଁ ଋଣପତ୍ରରେ ଦସ୍ତଖତ କରିବାକୁ ଯାଉନାହିଁ । ଛିନ୍ନମସ୍ତା ଉତ୍କଳମାତାର କୋଟିଏ ସନ୍ତାନ ମଧ୍ୟରୁ ଅବୋଧ ସନ୍ତାନ ରୂପେ ମୁଁ ଏହି ଋଣ କରିବାକୁ ମନ ବଳାଇଛି । ଏହା ମୋର ଏକ ଅବଶ୍ୟ କରଣୀୟ ଜାତୀୟ କର୍ତ୍ତବ୍ୟ ନୁହେଁ କି ? ତୁମେ ଏ ଅନାବଶ୍ୟକ ପ୍ରସଙ୍ଗ ଉତ୍‌ଥାପନରୁ ପ୍ରତିନିବୃତ୍ତ ହୋଇ ଅତିଶୀଘ୍ର ମହାଜନଙ୍କୁ ଟଙ୍କା ସହ ଆସିବାକୁ ଖବର ଦିଅ ।" ସେ ସମୟରେ କୁସୀଦଜୀବୀ ବଡ ମଜାଜନ ହିସାବରେ ସର୍ବଶ୍ରେଷ୍ଠ ଧନୀକ ଥିଲେ ଆକାଶୀ ସୋମଶେଖରମ୍ , ଜାତିରେ ତେଲେଗା । ଡ଼ାକରା ପାଇ କ୍ଷଣବିଳମ୍ବ ନକରି କୁସୀଦ ବ୍ୟବସାୟୀ ଆକାଶୀ ଲକ୍ଷେଟଙ୍କା ଓ ଲିଖିତ ହାଣ୍ଡନୋଟ ସହ ସମ୍ମିଳନୀ ଭବନରେ ଆସି ଉପଗତ ହୋଇଗଲେ । ତହବିଲଦାର ଏକ ଲକ୍ଷ ଟଙ୍କା ଗଣିନେଲେ । ମହାରାଜା ଋଣପତ୍ରରେ କୃଷ୍ଣଚନ୍ଦ୍ର ନାରାୟଣଦେବ ନାମରେ ସ୍ୱାକ୍ଷର ଦେଲେ । ବାତ୍ସଲ୍ୟମୟୀ ଜନ୍ମଭୂମି ମା' ଉତ୍କଳ ପ୍ରସାଦରୁ ଖାତକ ହୋଇପାରି ଥିବାରୁ ଅନନୁଭୂତ ଆନନ୍ଦ ଓ ଗର୍ବରେ ସେ ଦିନ ତାଙ୍କର ବକ୍ଷ ବିସ୍ଫାରିତ ହୋଇଯାଇଥିଲା ।

୧୯୪୯-୫୦ ମସିହାର କଥା । ସମ୍ବିଧାନ ସଭାକୁ ନିର୍ବାଚନ ହେଉଥାଏ । ଲାଟ ସଭା ସଭ୍ୟମାନେ କେବଳ ଭୋଟ ଦିଅନ୍ତି । ପାରଳା ମହାରାଜା କମ ଭୋଟ ପାଇଲେ । ଲକ୍ଷ୍ମୀ ନାରାୟଣ ସାହୁ ନିର୍ବାଚିତ ହେଲେ । ପରବର୍ତ୍ତୀ କାଳରେ ପ୍ରଥମ

ସାବାଳକ ଭୋଟର ସାଧାରଣ ନିର୍ବାଚନ । ମହାରାଜା ଭାରତର ଲୋକସଭାକୁ ପ୍ରାର୍ଥୀ ନିର୍ବାଚନ, କଂଗ୍ରେସ ଟିକଟରେ ଲଢ଼ିବାର ଥାଏ । ମନୋନୟନ ପତ୍ର ଦାଖଲ ହେଲା । ପୁଣ୍ଡିରେ ତାଙ୍କର କେତେକ ଚୁକ୍ତି ତାଙ୍କ ବିରୋଧରେ ଦାଖଲ ହେଲା । ମନୋନୟନ ପତ୍ର ଛତ୍ରପୁରରେ ନାକଚ ହେଲା । ତାପରେ ରାଜନୀତିରୁ ବିଦାୟ । ବହୁ ରାଜନୀତିକ ଦଳର ପ୍ରତିଷ୍ଠିତ ନେତାମାନେ ତାଙ୍କୁ ନିଜ ଦଳରେ ନେବାକୁ ମନେଇଲେ ମାତ୍ର ତାଙ୍କର ପଦେ ମାତ୍ର ଉତ୍ତର ଥିଲା ।

ରାଜନୀତିରୁ ବିଦାୟ "Only a dog returns to is vomit"



# ପ୍ରଦେଶ ଗଠନରେ ନେପଥ୍ୟ ନାୟକ

ଭାଷାଭିତ୍ତିକ ଓଡ଼ିଶା ପ୍ରଦେଶ ଗଠନରେ ମହାରାଜା କୃଷ୍ଣଚନ୍ଦ୍ର ଦେବଙ୍କ ପରି ଅନେକ ଜନନାୟକଙ୍କର ଦାନ ଅବିସ୍ମରଣୀୟ । ମାତ୍ର ଏହା ବ୍ୟତୀତ ଅନେକ ଦେଶପ୍ରେମୀ ସର୍ବସାଧାରଣଙ୍କର ଅଲକ୍ଷ୍ୟରେ ଏହି ଦିଗରେ ସାହାଯ୍ୟ କରିଥିଲେ । ଖଳନାୟକ ଭୂମିକାରେ ମଧ କେତେକ ପ୍ରଦେଶ ଗଠନର ବିରୋଧ କରୁଥିଲେ । ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନିଜର କୌଶଳ ପ୍ରୟୋଗ କରି ସେମାନଙ୍କର ଉଦ୍ୟମ ପଣ୍ଡ କରିଥିଲେ । ଏହି ପ୍ରବନ୍ଧରେ ଏହିପରି କେତେଜଣଙ୍କର ଭୂମିକା ଆଲୋଚିତ ହେବ ।

୧ . ସମ୍ବଲପୁରର ଦେଶପ୍ରେମୀ ଦାଶରଥୀ ମିଶ୍ର, ସିମଳା ଯାତ୍ରାର ଲେଖକ ଶ୍ରୀପତି ମିଶ୍ରଙ୍କ ସେ ସାନଭାଇ ଥିଲେ । ଜନ୍ମ ୧୮୪୭ ମସିହାରେ । ଏନ୍‌ଟ୍ରାନସ୍ ପାଶ କରି ସେ ମଧ୍ୟପ୍ରଦେଶ ଅନ୍ତର୍ଗତ ତତ୍କାଳୀନ ସମ୍ବଲପୁର ଡ଼େପୁଟି କମିଶନରଙ୍କ ଅଫିସରେ କିରାଣୀ କାମ କରୁଥିଲେ । ବଡ଼ଭାଇ ଶ୍ରୀପତିଙ୍କଠାରୁ ସେ ଦେଶାତ୍ମବୋଧ ଶିକ୍ଷା କରିଥିଲେ । କଚେ଼ରିରେ କାମ କରିବା ସମୟରେ ସେ ହିନ୍ଦି ଭାଷୀଙ୍କର ଦୌରାତ୍ମ୍ୟ ଉପଲବ୍ଧି କରିଥିଲେ । ଅମଲାମାନେ ସ୍ଥାନୀୟ ଓଡ଼ିଆ ଭାଷା ଜାଣି ନଥିବାରୁ କୋର୍ଟ କଚେରୀରେ ହିନ୍ଦୀ ଭାଷା ପ୍ରଚ଼ଳନ କରି ଏହି ଅସୁବିଧା ଦୂର କରିବାକୁ ସରକାରଙ୍କୁ ପ୍ରସ୍ତାବ ଦେଇ ପ୍ରଭାବିତ କଲେ । ସମ୍ବଲପୁରର ତତ୍କାଳୀନ ଡ଼େପୁଟୀ କମିଶନର ଏହି ପରିବର୍ତ୍ତନ ପ୍ରତି ଅସାଧାରଣ ଭାବେ ସହାନୁଭୂତିଶୀଳ ଥିଲେ । ପ୍ରଦେଶ ତମାମ ଓଡ଼ିଆ ଭାଷା ଉଠାଇ ଦେବାର ପ୍ରତିବାଦ ତୀବ୍ରହେଲା । 'ସମ୍ବଲପୁର ହିତୈଷିଣୀ' ଓ ଉତ୍କଳ ଦୀପିକା' ମାଧ୍ୟମରେ ଏ ଚ଼କ୍ରାନ୍ତ ସଚେତନ ବୁଦ୍ଧିଜୀବୀ ଓ ଲୋକ ଦୃଷ୍ଟିକୁ ଆସିଲା । ସ୍ୱଭାବ କବି ଗଙ୍ଗାଧର ମେହେର ଉତ୍କଳ ହିତୈଷିଣୀରେ 'ଭାରତୀ ରୋଦନ' ଶୀର୍ଷକ କବିତା ପ୍ରକାଶ କରିଥିଲେ । ସେଥିରେ ସେ ଲେଖିଥିଲେ -

ଉତ୍କଳ ଭାରତୀ ରୋଦନ କରୁଛି କାତରେ ସମ୍ବଲପୁରେ
ବିକଳ ଧ୍ୱନି କର୍ଣ୍ଣରେ ପଡ଼ିଲେ ନୟନ ଲୋତକେ ପୂରେ ।।
ବୋଲଇ ଦୁଃଖିନୀ କେତେ କଷ୍ଟ ସହି ମୋ କୋଳରେ ଧରି
କୁମାରଙ୍କୁ ମୋର ପାଳନ କରୁଛି ପ୍ରାଣାଧିକ ସ୍ନେହ କରି ।।

ହିନ୍ଦି ସରସ୍ୱତୀ ମୋ ଛାତିରେ ବସି କରିବ ପରା ରାଜତ୍ୱ
ସେ ଆଶା କାନନ ଭସ୍ମରାଶି ହେବ ତା ନବ ଉଦ୍ୟାନେ ଖତ ॥
ଉପମାତ ଆସି ଗର୍ଭଧାରିଣୀର ମସ୍ତକେ ଚରଣ ଦେବ,
ଏ ବେଶ ଦେଖିଲେ କେଉଁ ସନ୍ତାନର ମନରେ ଦୁଃଖ ନ ହେବ ॥

ଅଯୌକ୍ତିକ ଭାବେ ଏହି ହିନ୍ଦି ପ୍ରଚଳନର ବିରୋଧ କରି ଓଡ଼ିଆମାନେ ଦେଖାଉଥିବା ଆପତ୍ତି ଅଭିଯୋଗମାନ କର୍ତ୍ତୃପକ୍ଷଙ୍କର ଦୃଷ୍ଟିକୁ ଆସି ପାରୁନଥିଲା । ଅଣଓଡ଼ିଆ ଅମଲାମାନେ ଏ କାଗଜସବୁ ଚାପି ଦେଉଥିଲେ । ଦାଶରଥି ନିଜ ବଡ଼ଭାଇ ଶ୍ରୀପତି ମିଶ୍ର ଓ ସମ୍ବଲପୁରର ପ୍ରଖ୍ୟାତ ଜାତୀୟତାବାଦୀ ନେତା ଚନ୍ଦ୍ରଶେଖର ବେହେରାଙ୍କୁ ଏହି ଷଡ଼ଯନ୍ତ୍ରର ସୂତ୍ରମାନ ଜଣାଇ ଦେଉଥିଲେ । ଫଳରେ ଅମଲାମାନଙ୍କର ଚକ୍ରାନ୍ତ ବିଫଳ ହେଲା । ସେମାନେ ଦାଶରଥୀଙ୍କୁ ନିଜର ଶତ୍ରୁ ମନେକଲେ । ତାଙ୍କ ବିରୁଦ୍ଧରେ ଅଭିଯୋଗ ଅଣାଗଲା । ତାଙ୍କୁ କୈଫୟତ ମଗାଗଲା । ନିଜର ମର୍ଯ୍ୟାଦା ରକ୍ଷା ଲାଗି ସେ ନିଜର ଚାକିରିରୁ ଇସ୍ତଫା ଦେଲେ । ପରବର୍ତ୍ତୀ କାଳରେ ସେ ବ୍ୟବସାୟୀ ଭାବରେ ପ୍ରତିଷ୍ଠିତ ହେଲେ ଓ ଜାତୀୟ କଂଗ୍ରେସରେ ଯୋଗଦାନ କରି ଜନସେବା କରିଥିଲେ । ମାତ୍ର ସମ୍ବଲପୁରର ଓଡ଼ିଶା ପ୍ରଦେଶ ସହିତ ମିଶ୍ରଣ ପ୍ରସଙ୍ଗରେ ସେ ସ୍ମରଣୀୟ । ଓଡ଼ିଶା ଏକୀକରଣ ଏହିଠାରୁ ହିଁ ଆରମ୍ଭ ହେଲା ।

୨.ସେହିପରି ଆଉ ଜଣେ ଓଡ଼ିଶାର ସୁଯୋଗ୍ୟ ସନ୍ତାନ ନୀଳମଣି ସେନାପତି । ପୁରୀ ଜିଲ୍ଲାରେ ତାଙ୍କର ଜନ୍ମ ୧୮୯୭ ମସିହା ଫେବୃଆରି ୧୯ ତାରିଖରେ । କଲିକତାରୁ ବି.ଏସ୍.ସି ପାସ କରି ସେ ୧୯୨୨ ମସିହାରେ ଆଇ.ସି.ଏସ୍. ହେଲେ । ବିଲାତ ଗଲେ । କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରୁ ବି.ଏ. ପାସ କରି ଭାରତକୁ ଫେରି ଜନସେବାରେ ନିଯୁକ୍ତ ହେଲେ । ବିହାର ଓ ଓଡ଼ିଶା ତାଙ୍କର କର୍ମକ୍ଷେତ୍ର ଥିଲା । ରୟେଲ୍ ଜ୍ୟୋଗ୍ରାଫିକାଲ ସୋସାଇଟିର ମଧ୍ୟ ସେ ସଭ୍ୟ ଥିଲେ । ଆଦିବାସୀମାନଙ୍କ ମଧ୍ୟରେ ସହୃଦୟତା ସ୍ଥାପନ ନିମିତ୍ତ ସେ ଓରାମ୍ ଭାଷା ଶିକ୍ଷା କରି ସେଥିରେ ଦକ୍ଷତା ହାସଲ କରିଥିଲେ । ବିହାରରେ ସଚିବ ଓ ପରେ ଓଡ଼ିଶାର ମୁଖ୍ୟ ଶାସନ ସଚିବ ଓ ରାଜସ୍ୱପରିଷଦ ଅଧ୍ୟକ୍ଷ ଭାବରେ କାର୍ଯ୍ୟକରି ସେ ଅବସର ନେଲେ । ସ୍ୱାଧୀନ ଭାରତରେ ଓଡ଼ିଶାରେ କର୍ମନିଯୁକ୍ତ ଥିବା ସମୟରେ ଗଡ଼ଜାତମାନଙ୍କର ମିଶ୍ରଣ ଓ ଜମିଦାରି ପ୍ରଥା ବିଲୋପ କାର୍ଯ୍ୟକ୍ରମରେ ସେ ମୁଖ୍ୟ ପରାମର୍ଶଦାତାର ଭୂମିକା ଗ୍ରହଣ କରିଥିଲେ । ମାତ୍ର ସମ୍ବଲପୁର ଜିଲ୍ଲାପାଳଭାବେ

ପ୍ରଦେଶ ଗଠନ ଦିଗରେ ତାଙ୍କର ରହିଥିବା ଲୁକ୍କାୟିତ ଅବଦାନ ସ୍ମରଣୀୟ । ଭାଷା ଦୃଷ୍ଟିରୁ ପ୍ରଦେଶର ସୀମା ନିରୂପଣ ନିମିତ୍ତ ଓଡନେଲ୍ କମିଟି ୧୯୩୧ ମସିହାରେ ଗଠିତ ହୋଇଥିଲା । ସେମାନେ ବିଭିନ୍ନ ଅଞ୍ଚଳ ବୁଲି ଲୋକମତ ଓ ପ୍ରାଶାସନିକ ସୁବିଧା ବିଚାରକୁ ନେଇ ସୀମା ନିର୍ଦ୍ଧାରଣପାଇଁ ସୁପାରିସ୍ କରିବାର ଥିଲା । ୧୯୩୧ ମସିହା ଜୁଲାଇ ୨୪ ତାରିଖରେ ସମ୍ବଲପୁରରେ ଏକ ସାଧାରଣ ସଭାରେ ସେନାପତି ସାହେବ, ଖଡ଼ିଆଳ, ପଦ୍ମପୁର, ଫୁଲଝର ପରି ଓଡିଆ ଅଞ୍ଚଳମାନ ଆଣିବାକୁ ଉଦ୍ୟମ କରି ଉଦ୍‌ବୋଧନ ଦେଇଥିଲେ । ରାୟପୁର ଜିଲ୍ଲା ଅନ୍ତର୍ଗତ ଖଡ଼ିଆଳ (ବର୍ତ୍ତମାନ ନୂଆପଡା ଜିଲ୍ଲା) ଏକ ଓଡ଼ିଆ ଜମିଦାରି । ରାଜା ଓଡ଼ିଆ ଓ ଅଧିକାଂଶ ପ୍ରଜା ଓଡ଼ିଆ ଭାଷାଭାଷୀ । ମାତ୍ର ମଧ୍ୟପ୍ରଦେଶର ପ୍ରଭାବ ସେଠାରେ ଅବ୍ୟାହତ ଥିଲା । ସାର୍ ହରିସିଂହ ଗୌର ଜଣେ ନାମଜାଦା ଓକିଲ, ବ୍ୟବସ୍ଥାପକ, ସରକାରଙ୍କ ଆଇନ ସଭ୍ୟ ଓ ନ୍ୟାୟ ବିଶାରଦ ଥିଲେ । ତାଙ୍କୁ ପାଠପଢ଼ାରେ ଖଡ଼ିଆଳ ରାଜା ସାହାଯ୍ୟ କରିଥିବାରୁ ସେ ତାଙ୍କଠାରେ ଋଣୀ ଥିଲେ । ସାଗର ବିଶ୍ୱ ବିଦ୍ୟାଳୟ ପ୍ରତିଷ୍ଠା ସାର୍ ହରିସିଂହଙ୍କର ଏକ ପ୍ରଧାନ କୀର୍ତ୍ତି । ସେ ଖଡିଆଳ ରାଜାଙ୍କୁ ଓଡିଶାରେ ନ ମିଶିବାକୁ ପ୍ରବର୍ତ୍ତାଇଥିଲେ । ସେତେବେଳେ ରାୟପୁରର ଜିଲ୍ଲାପାଳ ଥିଲେ ସ୍ୱନାମଧନ୍ୟ ଚିନ୍ତାମଣି ଦେଶମୁଖ । ପରେ ସ୍ୱାଧୀନ ଭାରତରେ ସେ କଂଗ୍ରେସରେ ଯୋଗଦାନ କରି ଭାରତର ଅର୍ଥମନ୍ତ୍ରୀ ହୋଇଥିଲେ । ଓଡ଼ନେଲ୍ କମିଟି ରାୟପୁରଠାରେ ସାକ୍ଷ୍ୟ ନେଲା ।

ଓଡ଼ିଶାରେ ରାୟପୁର ଜିଲ୍ଲାର କୌଣସି ଅଂଶ ମିଶିବ ନାହିଁ ବୋଲି ସେମାନେ ନିଷ୍ପତ୍ତି କରି ସମ୍ବଲପୁର ଆସିଲେ । ସେମାନେ ଡେପୁଟି କମିଶନର୍ ନୀଳମଣି ସେନାପତିଙ୍କର ଅତିଥି ହେଲେ । ଏହି କମିଟିର ସଂପାଦକ ଥିଲେ ଭବାନୀ ଚରଣ ମୁଖାର୍ଜି ଆଇ.ସି.ଏସ୍. । ସେ କଟକର କଲେକ୍ଟର ଥିଲେ ଓ ପରବର୍ତ୍ତୀକାଳରେ ଓଡ଼ିଶାର ମୁଖ୍ୟ ଶାସନ ସଚିବ ହୋଇଥିଲେ । ସେ ସେନାପତିଙ୍କର ଅତିଥି ହେବା ସମୟରେ ରାୟପୁର କମିଶନର୍ ମଧ୍ୟ ତାଙ୍କ ସହିତ ଆସିଥିଲେ । କିପରି ଭାବରେ ଅନ୍ୟାନ୍ୟ ସମସ୍ତ ସଭ୍ୟଙ୍କୁ ପ୍ରଭାବିତ କରି ସେନାପତି ସାହେବ୍ ରାୟପୁରରୁ ଖଡ଼ିଆଳ ମହାଦେବପାଲି, ପଦ୍ମପୁର (ବର୍ତ୍ତମାନ ହୀରାକୁଦ ଜଳଭଣ୍ଡାର ଗର୍ଭରେ) ଆଣିବାକୁ ସକ୍ଷମ ହୋଇଥିଲେ ସେ ବିଷୟରେ ସମ୍ବଲପୁରର ତତ୍କାଳୀନ ମୁଖ୍ୟଅମଲା ମୁରଲୀଧର ବହିଦାର, କୃତ୍ତିବାସ ପ୍ରଧାନ, ମୃତ୍ୟୁଞ୍ଜୟ ପତି ଆଦିଙ୍କ ଠାରୁ ଚାଞ୍ଚଲ୍ୟକର ବିବରଣୀ ଶୁଣାଯଉଥିଲେ ମଧ ସ୍ୱୟଂ ସେନାପତି ୧୯୮୦ ମସିହା ଅପ୍ରେଲ ମାସ 'ଉତ୍କଳ ପ୍ରସଙ୍ଗ'ରେ ଗୋଟିଏ

ପ୍ରବନ୍ଧରେ ଏହାର କିଞ୍ଚିତ ବର୍ଣ୍ଣନା ଦେଇଛନ୍ତି । ପ୍ରାତଃ ଭୋଜନ ସମୟରେ କଥାବାର୍ତ୍ତା ବେଳେ ଅତିଥିମାନେ ସେମାନଙ୍କର ଓଡ଼ିଶାବିରୋଧୀ ମତାମତ ସ୍ପଷ୍ଟ କରିଦେଲେ । ଆଗରୁ ମଧ୍ୟପ୍ରଦେଶରେ ଜଣେ ଡେ଼ପୁଟି କମିଶନର୍ ଥିଲେ ରବୀନ୍ଦ୍ରନାଥ ବାନାର୍ଜୀ । ସେ ୧୯୨୦ ମସିହାର ଆଇ.ସି.ଏସ୍. । ପୂର୍ବେ ସେ ସମ୍ବଲପୁରର ଜିଲ୍ଲା ସ୍କୁଲର ଛାତ୍ର ଥିଲେ । ଅନେକ ଓଡ଼ିଆଭାଷୀ ଅଞ୍ଚଳ ମଧ୍ୟପ୍ରଦେଶରେ ରହିଅଛି । ସେ ଏହା କ୍ଷେତ୍ର ଅନୁସନ୍ଧାନରେ ଜାଣିଥିଲେ । ସରକାରଙ୍କୁ ମଧ୍ୟ ଏହା ଜାଣାଇଦେଇଥିଲେ । ତାଙ୍କର ମତାମତ, କମିଟିକୁ ଜଣାଇ ଦିଆଗଲା । କମିଟି କହୁଥିଲା ଏ ଅଞ୍ଚଳର ଜମିଦାରମାନେ ଓଡ଼ିଶା ସହିତ ମିଶିବାକୁ ଚାହୁଁନାହାନ୍ତି । ସମ୍ବଲପୁର ସହିତ ଏହି ଅଞ୍ଚଳର ଗମନାଗମନର ସୁବିଧା ନାହିଁ ଓ ପ୍ରଜାମାନଙ୍କ ନିମିତ୍ତ ସ୍ୱତ୍ୱଲିପି ହିନ୍ଦୀଭାଷାରେ ଦିଆଯାଇ ପ୍ରଜାମାନଙ୍କ ଦ୍ୱାରା ନିର୍ବିବାଦରେ ଗୃହୀତ ହୋଇଛି । ସମ୍ବଲପୁରର ତତ୍କାଳୀନ ଜନନାୟକମାନେ ହେଲେ:- ରାମ ନାରାୟଣ ମିଶ୍ର, ଶଙ୍କର ପ୍ରସାଦ ମିଶ୍ର, ଗୋକୁଳଚନ୍ଦ୍ର ବାବୁ, ବୋଧରାମ ଦୁବେ, ଅଚ୍ୟୁତାନନ୍ଦ ପୁରୋହିତ, ମହମ୍ମଦ ସାଲେ ପ୍ରଭୃତି । ସେମାନେ ଡେପୁଟି କମିଶନର୍‌ଙ୍କ ଠାରୁ ଉତ୍ସାହ ପାଇ ସ୍ୱପକ୍ଷରେ ସାକ୍ଷ୍ୟପ୍ରମାଣ ଓ ତଥ୍ୟଭିତ୍ତିକ ଯୁକ୍ତି ସଭ୍ୟମାନଙ୍କ ଆଗରେ ଉପସ୍ଥାପିତ କରିବାକୁ ବାହାରିପଡ଼ିଲେ । ସଭ୍ୟମାନଙ୍କୁ ଦେଖାଇ ଦିଆଗଲା, ସ୍ୱତ୍ୱଲିପିମାନ ପ୍ରଜାମାନଙ୍କୁ ଓଡ଼ିଆଭାଷାରେ ଦିଆଯାଇଛି । ମାତ୍ର କେବଳ ସରକାରଙ୍କର ରେକର୍ଡ ରୁମ୍‌ରେ ଅମଲାମାନଙ୍କର ସୁବିଧା ନିମିତ୍ତ ହିନ୍ଦୀଭାଷାରେ ଲିଖିତ ସ୍ୱତ୍ୱଲିପି ରଖାଯାଇଛି । ଗମନାଗମନର ଅସୁବିଧା କିପରି ଅମୂଳକ ଏହା ଦେଖାଇବାକୁ ବିଶିଷ୍ଟ ମୋଟର ଗାଡ଼ିବେପାରୀ ଓ ପେଟ୍ରୋଲ ପମ୍ପ ମାଲିକ ମହମ୍ମଦ ସାଲେ ଖଡ଼ିଆଳରେ ଥିବା ଏକ ପେଟ୍ରୋଲପମ୍ପ ଦେଖିବାକୁ ନିଜ ଫୋର୍ଡ ମଟରରେ ରାତିରେ ଯାଇ ପୂର୍ବଦିନ ଫେରି ଆସିଥିଲେ । ସେ ନିଜେ ଏହା କମିଟି ଆଗରେ ସାକ୍ଷ୍ୟ ଦେଲେ । ଖଡ଼ିଆଳ ଓ ଅନ୍ୟାନ୍ୟ ରାଜାଙ୍କୁ ମଧ୍ୟପ୍ରଦେଶ ଗଠନକୁ ବିରୋଧ କଲେ ପରେ ହଇରାଣ ହେବେ ବୋଲି ନୀଳମଣି ସତର୍କ କରାଇ ଦେବାରୁ ସେମାନେ ନିଜ ମତ ପରିବର୍ତ୍ତନ କଲେ । ପଦ୍ମପୁର, ଚନ୍ଦ୍ରପୁର ରାଜା ଭବାନୀ ଶଙ୍କର ସିଂହ ନିଜ ରାଜ୍ୟ ସମ୍ବଲପୁରରେ ମିଶିବାକୁ ବଡ଼ଲାଟ୍‌ଙ୍କୁ ନିବେଦନ ପତ୍ର ଦେଲେ । ଫଳରେ ଖଡ଼ିଆଳ ଓ ପଦ୍ମପୁର (ମହାଦେବପାଲୀ) ଅଞ୍ଚଳ ଓଡ଼ିଶାରେ ମିଶିଲା ।

୩).ଅନ୍ୟ ଦୁଇ ଜଣ ନାୟକ ହେଲେ, ଓ.ପୁଲ୍ଲା ରେଡ୍‌ଡ଼ି ଓ ସେ ସମୟରେ ଅବିଭକ୍ତ ମାଡ୍ରାସ ପ୍ରେସିଡ଼େନ୍‌ସିର ଜନଗଣନା ସୁପରିଂଟେଣ୍ଡେଟ୍ ଉଇଲିୟମ ଓ୍ୱାଲଟର୍, ମରେ

ୟିଟସ (W.W.M.Yeats) ଯେକି ୧୯୨୦ ମସିହାର ଆଇ.ସି.ଏସ୍. ଥିଲେ । ଆମ ଦୃଷ୍ଟିରୁ ଏ ଦୁଇଜଣଙ୍କୁ ଖଳନାୟକ ଆଖ୍ୟା ଦିଆଯାଇପାରେ । ଓ.ପୁଲ୍ଲା ରେଡ୍ଡି ୧୯୦୨ ମସିହାରେ ଆନ୍ଧ୍ର ପ୍ରଦେଶର ରୟଲ ଅଞ୍ଚଳରେ ଜନ୍ମଗ୍ରହଣ କରିଥିଲେ । ୧୯୨୫ ମସିହାରେ ସେ ଆହ୍ଲାବାଦରୁ ଆଇ.ସି.ଏସ୍. ପରୀକ୍ଷା ଦେଇ ପ୍ରଥମ ସ୍ଥାନ ଅଧିକାର କରି କୃତକାର୍ଯ୍ୟ ହୋଇଥିଲେ । ତାଙ୍କୁ ଏହି ପଦବୀ ମିଳିବାରେ ମାନ୍ଦ୍ରାଜ୍‌ରେ ଏକଦା ମୁଖ୍ୟମନ୍ତ୍ରୀ ଥିବା ପାନ୍ନାଗାଲର୍ ରାଜା ସାହେବ ଓ ଆନ୍ଧ୍ର ବିଶ୍ୱବିଦ୍ୟାଳୟର କୁଳପତି ପୂର୍ବତନ ମନ୍ତ୍ରୀ ସାର୍ କେ.ଭି.ରେଡ୍ଡି ସାହାଯ୍ୟ କରିଥିଲେ । ତେଣୁ ଆନ୍ଧ୍ରପ୍ରେଦଶ ଗଠନ ନହୋଇଥିଲେ ମଧ ଆନ୍ଧ୍ର ଅଞ୍ଚଳ ପାଇଁ ଦୁର୍ବଳତା ତାଙ୍କର ରହିବା ସ୍ୱାଭାବିକ ଥିଲା । ମାନ୍ଦ୍ରାଜ୍ ପ୍ରଦେଶ ଅନ୍ତର୍ଗତ ଜୟପୁର ଜମିଦାରିରେ ସେ ଦେୱାନଭାବରେ ଅବସ୍ଥାପିତ ହୋଇଥିଲେ । ୧୯୪୫ ମସିହାରେ ଓଡ଼ିଶା ସରକାର ମାନ୍ଦ୍ରାଜ୍ ସହିତ ମିଶି ମାଛକୁଣ୍ଡ ଜଳବିଦ୍ୟୁତ୍ ଯୋଜନା, ଡୁଡୁମା କାର୍ଯ୍ୟକାରୀ କରିବାରେ ସେ ମାନ୍ଦ୍ରାଜ୍ ସରକାରଙ୍କ ତରଫରୁ କଥାବାର୍ତ୍ତା ଚଳାଇଥିଲେ ଓ ସେମାନେ ଜଳବିଦ୍ୟୁତ୍‌ରେ ୭୦ ଭାଗ କେତେ ବର୍ଷ ପାଇବାର ବ୍ୟବସ୍ଥା କରିଥିଲେ । ଅବଶ୍ୟ ସେ ସମୟରେ ଓଡ଼ିଶାରେ ବିଦ୍ୟୁତ୍ ଚାହିଦା ନଗଣ୍ୟ ଥିଲା । ପରେ ପୁଲ୍ଲା ରେଡ୍ଡି ୧୯୫୩ ମସିହାରେ ଆନ୍ଧ୍ରପ୍ରଦେଶ ଗଠନ ହେବା ପରେ ଏହାର ମୁଖ୍ୟଶାସନ ସଚିବ ହୋଇଥିଲେ । କେନ୍ଦ୍ରରେ ସେ ଦେଶରକ୍ଷା ସଚିବଭାବେ କାର୍ଯ୍ୟ କରିଥିଲେ । ଆନ୍ଧ୍ର ପ୍ରଦେଶ କୃଷି ବିଶ୍ୱବିଦ୍ୟାଳୟ ଗଠିତ ହେବା ପରେ ସେ ୧୯୬୪ ରୁ ୧୯୭୨ ପର୍ଯ୍ୟନ୍ତ ପ୍ରଥମ କୁଳପତି ଥିଲେ । ୧୯୭୮ ମସିହାରେ ଆନ୍ଧ୍ର ବିଶ୍ୱବିଦ୍ୟାଳୟ, ୱାଲଟିୟର୍ ତାଙ୍କୁ ସମ୍ମାନ ସୂଚକ ଡି.ଲିଟ୍ ଉପାଧି ପ୍ରଦାନ କରିଥିଲା । ତାଙ୍କର କୃତିତ୍ୱ ବର୍ଣ୍ଣନା କରିବାର ଉଦ୍ଦେଶ୍ୟ ହେଲା ଏହିପରି ଜଣେ ଉଦ୍ୟମଶୀଳ ସିଭିଲିଆନ୍‌ଙ୍କର ଚକ୍ରବ୍ୟୂହ ଭେଦକରି ନିଜର ସାଧନ କରାଇବାରେ ସକ୍ଷମ ହେବାରେ ଗଜପତି ମହାରାଜା ଶ୍ରୀକୃଷ୍ଣଚନ୍ଦ୍ରଦେବଙ୍କ ଦୂରଦର୍ଶୀ ଭୂମିକା ସ୍ମରଣୀୟ ।

ପୁଲ୍ଲା ରେଡ୍ଡିଙ୍କର ଆତ୍ମଜୀବନୀ ଭାରତୀୟ ବିଦ୍ୟାଭବନ, ବମ୍ବେ ଦ୍ୱାରା ୧୯୭୮ ରେ ପ୍ରକାଶିତ । ସେଥିରେ ସେ ନିଜ ଅଭିଜ୍ଞତା ବର୍ଣ୍ଣନା କରିଛନ୍ତି ଓ ଓଡିଶା ସହିତ ତାଙ୍କର ଭାବଗତ ସଂପର୍କ ନଥିବା ମଧ ସ୍ୱୀକାର କରିଛନ୍ତି । ପୁଲ୍ଲା ରେଡ୍ଡି ଜୟପୁର ଜମିଦାରିର ଦେୱାନ୍ ହେବା ସମୟରେ ଏହା ମାନ୍ଦ୍ରାଜ୍ ପ୍ରଦେଶ ଓ ସମଗ୍ର ଭାରତବର୍ଷର ବୃହତ୍ତମ ଜମିଦାରି ଥିଲା । ଏହି ଜମିଦାରିର ମହାରାଜା ରାମଚନ୍ଦ୍ର ଦେବ ଅଳ୍ପ ବୟସରେ ପ୍ରାଣତ୍ୟାଗ କଲେ । ୧୯୩୧ ମସିହାରେ ତାଙ୍କ ସ୍ଥାନରେ ଗାଦି ପାଇଲେ, ତାଙ୍କର

କକେଇ ବିକ୍ରମଦେବ ବର୍ମା । ସେ ଉଚ୍ଚକୋଟୀର ଓଡ଼ିଆ ଓ ତେଲୁଗୁ ସାହିତ୍ୟିକ ଥାଇ ପରିଣତ ବୟସରେ ସେ ଏ ରାଜଭୋଗର ସୁଯୋଗ ପାଇଥିଲେ । ତେଣୁ ରାଜକାର୍ଯ୍ୟ ସେ ଅତି ହାଲୁକାଭାବରେ ଗ୍ରହଣ କରିଥିଲେ । ପୁଲ୍ଲା ରେଡ୍ଡିଙ୍କର ଶିକ୍ଷା, ଦକ୍ଷତା ଓ ପ୍ରାଶାସନିକ ଅଭିଜ୍ଞତା ବିଚାର କରି ସେ ତାଙ୍କ ଉପରେ ବିଶେଷ ନିର୍ଭରଶୀଳ ଥିଲେ । ଆନ୍ଧ୍ରପ୍ରଦେଶ ଗଠନ ହୋଇ ନଥିଲେ ମଧ୍ୟ ପୁଲ୍ଲା ରେଡ୍ଡି ଭବିଷ୍ୟତର ସ୍ୱାର୍ଥ ଚିନ୍ତା କରୁଥିଲେ । ଆନ୍ଧ୍ରମାନଙ୍କର ପ୍ରଭାବ ହେତୁ ରାଜା ରାମଚନ୍ଦ୍ର ଦେବ ଜୟପୁରର ଓଡ଼ିଶାରେ ମିଶ୍ରଣକୁ ବିରୋଧ କରୁଥିଲେ । ବଡ଼ଲାଟଙ୍କୁ ବ୍ୟକ୍ତିଗତଭାବରେ ଏହି ମର୍ମରେ ଗୋଟିଏ ମେମୋରେଣ୍ଡମ୍ ମଧ୍ୟ ସେ ପ୍ରଦାନ କରିଥିଲେ । ସେଥିରେ ସେ ଦର୍ଶାଇଥିଲେ ଯେ, ରାଜ୍ୟର ଲୋକସଂଖ୍ୟାର ମାତ୍ର ୨/୫ ଅଂଶ ଓଡ଼ିଆ ଓ ତେଲୁଗୁମାନେ ରାଜ୍ୟ ଶାସନରେ ଭାଗୀଦାର ଥାଇ ଦକ୍ଷତାର ସହିତ ଶାସନ ଚଳାଉଅଛନ୍ତ । ଓଡ଼ିଆଙ୍କର ସେତେବେଳେ ଜନଗଣନାନୁସାରେ ସଂଖ୍ୟା ୧,୬୨,୦୦୦ ଥିଲେ ମଧ୍ୟ ଏହାକୁ ଭୁଲ ତଥ୍ୟ ଆଧାରରେ ମାତ୍ର ୧,୪୦,୦୦୦ବୋଲି ଦେଖାଇଦିଆଯାଇଥିଲା । ବିକ୍ରମଦେବ ରାଜା ହେଲାପରେ ପୁଲ୍ଲା ରେଡ୍ଡି ତାଙ୍କୁ ପ୍ରଭାବିତ କରି ନୂତନ ଭାବରେ ୱାଲଟିଅର୍‌ରେ ପ୍ରତିଷ୍ଠିତ ଆନ୍ଧ୍ର ବିଶ୍ୱବିଦ୍ୟାଳୟକୁ ବାର୍ଷିକ ଏକ ଲକ୍ଷ ଟଙ୍କା ପୁନଃପୌନିକ ଅନୁଦାନ ଦିଆଯିବାର ବ୍ୟବସ୍ଥା କଲେ । ପରବର୍ତ୍ତୀ କାଳରେ ଭାରତର ରାଷ୍ଟ୍ରପତି ଭାରତରତ୍ନ ଡଃ ରାଧାକ୍ରିଷ୍ଣନ୍ ଏହି ସମୟରେ କୁଳପତି ଥିଲେ । ରାଜା ବିକ୍ରମ ଦେବଙ୍କ ଏହି ମହାନ ଦାନ ନିମିତ୍ତ ବିଶ୍ୱବିଦ୍ୟାଳୟ ତାଙ୍କୁ ସମ୍ମାନସୂଚକ ଡି.ଲିଟ୍ ଉପାଧି ପ୍ରଦାନ କରିଥିଲା । ଆନ୍ଧ୍ର ବିଦ୍ୱାନସଭା ମଧ୍ୟ ତାଙ୍କୁ 'କଳାପ୍ରପର୍ଣ୍ଣ' ଉପାଧିରେ ସମ୍ମାନିତ କରିଥିଲା । ୧୯୩୫ ମସିହାରେ ସାର୍ ରାଧାକ୍ରିଷ୍ଣନ୍ ବିଶ୍ୱବିଦ୍ୟାଳୟ ଛାଡ଼ିବା ପରେ ପୁଲ୍ଲା ରେଡ୍ଡି ମଧ୍ୟ କିଛି ଦିନ ଏହି ପଦବୀରେ କାର୍ଯ୍ୟ କରିଥିଲେ । ଜୟପୁରରେ ଜଳବାୟୁ ଅସ୍ୱାସ୍ଥ୍ୟକର ଥିବାରୁ ବର୍ଷାଦିନେ ୨/୩ ମାସ ଦେୱାନ୍ ଓ ରାଜା ଆନ୍ଧ୍ରପ୍ରଦେଶର ୱାଲିଟିଅରରେ ରହୁଥିଲେ ଓ ଆନ୍ଧ୍ରସାହିତ୍ୟରେ ତାଙ୍କର ବିଦ୍‌ବତ୍ତା ସ୍ୱୀକୃତ ହୋଇଥିଲା । ଓଡ଼ିଆମାନେ ବିକ୍ରମ ଦେବଙ୍କୁ ସମ୍ବର୍ଦ୍ଧନା ଦେବା ଉଦ୍ଦେଶ୍ୟରେ ଦେଶ ମିଶ୍ରଣ କମିଟି ତରଫରୁ ବ୍ରହ୍ମପୁର ଠାରେ ଗୋଟିଏ ସଭାର ଆୟୋଜନ କଲେ । ବିକ୍ରମ ଦେବ ସଂପର୍କରେ ପାରଳା ମହାରାଜା କୃଷ୍ଣଚନ୍ଦ୍ରଙ୍କ ମାମୁଁ ଥିଲେ । ମହାରାଜା କୃଷ୍ଣଚନ୍ଦ୍ର ତାଙ୍କୁ ଯଥେଷ୍ଟ ସମ୍ମାନ ଓ ଆଦର କରୁଥିଲେ । ପ୍ରସ୍ତାବିତ ସମ୍ବର୍ଦ୍ଧନା ସଭାରେ ପାରଳା ମହାରାଜାଙ୍କୁ ସଭାପତି ହେବାକୁ ଅନୁରୋଧ କରାଯାଇଥିଲା ଓ ତାହା ସେ ଗ୍ରହଣ କରିଥିଲେ । ଏହାପରେ ଦେଶ ମିଶ୍ରଣର ଗତି ଭିନ୍ନ

ମାର୍ଗ ଅବଲମ୍ବନ କଲା । ପୁଲ୍ଲା ରେଡ୍ଡି ଲେଖିଛନ୍ତି :-
'ଜୟପୁର ଓଡ଼ିଶାକୁ ଯାଉ ଓ ମାନ୍ଦ୍ରାଜ୍ ପ୍ରଦେଶର ଅଙ୍ଗ ହୋଇ ନରହୁ ବୋଲି ଜନମତ ଦୃଢ଼ ହେବାରେ ଲାଗିଲା । ମହାରାଜା (ବିକ୍ରମଦେବ) ନିଜ ସଂପର୍କୀୟ ଭଣଜା ପାରଳାଖେମୁଣ୍ଡି ମହାରାଜାଙ୍କ କଥାରେ ପରିଚାଳିତ ହୋଇ ଏହି ଉଦ୍ୟମରେ ଭାଗୀ ହେଲେ । ଫଳରେ ୧୯୩୬ ମସିହାରରେ ଗଠିତ ନୂତନ ଓଡ଼ିଶା ପ୍ରଦେଶରେ ଜୟପୁର ଜମିଦାରିର ମିଶ୍ରଣ ହେଲା ।" ଏହା ପରେ ପୁଲ୍ଲା ରେଡ୍ଡି ନିଜ ମୂଳ ଆଇ.ସି.ଏସ୍.କୁ ଲେଉଟି ଗଲେ ।

୪. ଶେଷରେ ୧୯୩୧ ଜନଗଣନା ସୁପରିଟେଣ୍ଡେଣ୍ଟ ଇଟ୍ସ୍‌ଙ୍କ କଥା । ବ୍ରହ୍ମପୁରରେ ଜୟପୁର ମହାରାଜା ବିକ୍ରମଦେବଙ୍କୁ ଅଭ୍ୟର୍ଥନା ଦେବା ଅବସରରେ ଜଣାପଡିଲା ଯେ, ମାନ୍ଦ୍ରାଜ ପ୍ରଦେଶର ରାଜପୁରୁଷମାନେ ଜାଣିଶୁଣି ଓଡ଼ିଆମାନଙ୍କ ସଂଖ୍ୟା ହ୍ରାସ କରାଇବାରେ ଲାଗିଛନ୍ତି । ସେତେବେଳେ ଗଞ୍ଜାମ ଜିଲ୍ଲା କହିଲେ ବର୍ତ୍ତମାନର ଅବିଭକ୍ତ ଗଞ୍ଜାମ ଜିଲ୍ଲା (ଗଜପତି ଜିଲ୍ଲା ସହିତ) ଫୁଲବାଣୀ ଜିଲ୍ଲା ଓ ଆନ୍ଧ୍ର ପ୍ରଦେଶର ଶ୍ରୀକାକୁଲମ୍ ଜିଲ୍ଲାକୁ ବୁଝାଉଥିଲା । ଦେଖାଗଲା ଯେ ୧୯୦୧ ମସିହାରେ ମୋଟ ଲୋକସଂଖ୍ୟା ୧୬,୮୮,୫୯୪ ମଧ୍ୟରୁ ଓଡିଆଭାଷୀ ଥିଲେ ୧୨,୭୪,୯୭୫ ତେଲୁଗୁ, ୩,୪୨,୯୧୦ । ୧୯୧୧ ଜନଗଣନାରେ ଏହା ମୋଟ ୧୮,୭୦,୮୨୬ ରୁ ଓଡ଼ିଆ ୯,୫୮,୭୭୧, ତେଲୁଗୁ ୮,୩୯,୪୪୯ । ୧୯୨୧ ଜନଗଣନାରେ ସେମିତି ମୋଟ ୧୮,୩୬,୫୬୨ ମଧ୍ୟରୁ ଓଡ଼ିଆ ହେଲେ ୯,୩୧,୭୯୦, ତେଲୁଗୁ ୮,୪୭,୫୫୦ । ଓଡ଼ିଶା ପ୍ରଦେଶ ଗଠନର କେନ୍ଦ୍ରସ୍ଥଳ କଟକରେ ଜନନାୟକମାନଙ୍କୁ ଏହି ମାରାତ୍ମକ ତଥ୍ୟ ଜଣା ନଥିଲା । ପ୍ରଥମେ ପଣ୍ଡିତ ସତ୍ୟନାରାୟଣ ରାଜଗୁରୁ The Census errors in Ganjam ଶୀର୍ଷକ ଗୋଟିଏ ପୁସ୍ତିକା ପ୍ରକାଶ କରି ଏହାକୁ ସରକାରଙ୍କୁ ପଠାଇଲେ । ପାରଳା ମହାରାଜାଙ୍କ ପ୍ରୋତ୍ସାହନରେ ଜନଗଣନା ତଥ୍ୟ ସାମ୍ପ୍ରତିକ ଓଡ଼ିଆମାନଙ୍କ ତରଫରୁ ମଧ୍ୟ ସଂଗ୍ରହ ଚାଲିଲା । ଏହାକୁ ଏକ ସମାନ୍ତରାଳ ଜନଗଣନା ଆଖ୍ୟା ଦେଇ ଇଟିସ୍ ସାହେବ ବିରୋଧ କଲେ । ତତ୍କାଳୀନ ଗଞ୍ଜାମର ଜନନାୟକ ଶଶିଭୂଷଣ ରଥ, ଭୁବନେଶ୍ୱର ରଥ, ଦିଗାମ୍ବର ରଥ, ଗୋରାଚାନ୍ଦ ପଟ୍ଟନାୟକ, ନିତ୍ୟାନନ୍ଦ ପଟ୍ଟନାୟକ ଆଦି ଏଥିରେ ସଂପୂର୍ଣ୍ଣ ସହଯୋଗ କଲେ । ପରେ ଗଞ୍ଜାମର କଲେକ୍ଟର ହୋଇଥିବା ଡେପୁଟି ଅନନ୍ତରାମ ରଥ ମଧ୍ୟ ପାରଳାର ଦେୱାନ୍‌ଭାବେ ନିଯୁକ୍ତି ପାଇଥିବାରୁ ଏଥିରେ ସହାୟକ ହେଲେ । ପାରଳାଖେମୁଣ୍ଡି କର୍ମୀମାନେ ଯଥା:-

ଶ୍ୟାମସୁନ୍ଦର ଗନ୍ତାୟତ, ହୀରାଲାଲ୍ ବର୍ଦ୍ଧନ ପ୍ରଭୃତି ପଣ୍ଡିତ ସତ୍ୟନାରାୟଣଙ୍କର ନେତୃତ୍ୱରେ ବିଭିନ୍ନ ଗାଁମାନ ବୁଲି ଗାଁର ମୁଖିଆ ଲୋକମାନଙ୍କୁ ଓଡେନେଲ୍ କମିଟି ଆଗରେ ଜାତି ଓ ଭାଷା ବିଷୟକ ତଥ୍ୟ କିପରି ଉପସ୍ଥାପିତ କରିବେ, ତାହା ତାଲିମ୍ ଦେଲେ । ଲେଲୁଗୁ ରାଜଭାଷା ଥିଲା । ତେଲୁଗୁ କର୍ମଚାରୀମାନେ ତେଲୁଗୁରେ ପ୍ରଶ୍ନ ପଚାରୁଥିଲେ, ଉତ୍ତର ସେମିତି ତେଲୁଗୁରେ ଆସୁଥିଲା । ଉଦାହରଣ ସ୍ୱରୂପ ଧୋବାର ତେଲୁଗୁ ପ୍ରତିଶବ୍ଦ ସାକିଲି । ଓଡ଼ିଆ ଧୋବା ନିଜ ଜାତି ତେଲୁଗୁରେ କହିବାରୁ ସେମାନଙ୍କୁ ତେଲୁଗୁ ଭାଷାଭାଷୀ ବୋଲି ଲେଖାଯାଉଥିଲା । ଏମିତି ଅନେକ ଜାତିବର୍ଣ୍ଣର ନାମ ଭାଷା ଦୃଷ୍ଟିରୁ ତ୍ରୁଟିପୂର୍ଣ୍ଣଭାବରେ ଦର୍ଶାଯାଇଥିଲା । ଏକ ସମାନ୍ତରାଳ ଜନଗଣନା କରି ସରକାରୀ କାର୍ଯ୍ୟରେ ବାଧା ସୃଷ୍ଟିକରିବା ଅଭିଯୋଗ ମିଳିବାରୁ ସୁପରିଂଟେଣ୍ଡେଣ୍ଟ ଇଟସ୍ ଗଞ୍ଜାମ କଲେକ୍ଟର ଆର୍.ସି.ଏସ୍. ବେଲ୍ (R.C.S.Bell)ଙ୍କ ସହିତ ପାରଳାଖେମୁଣ୍ଡିରେ ପହଞ୍ଚିଲେ । ଅନେକ ଓଡିଆଭାଷୀ ମାତୃଭାଷା ଭୁଲି ଚାକିରିବାକିରି କ୍ଷେତ୍ରରେ ସୁବିଧା ସୁଯୋଗ ଉପଭୋଗ ନିମିତ୍ତ ମାତୃଭାଷା ତେଲୁଗୁ ଲେଖାଉଥାନ୍ତି । ୧୯୦୩ ମସିହାରେ ଉତ୍କଳ ସମ୍ମିଳନୀ ପ୍ରଥମେ ଭାଷା ସୂତ୍ରରେ ଓଡ଼ିଆ ପ୍ରଦେଶ ଗଠନ ଦାବି ଫଳରେ ଆନ୍ଧ୍ରମାନେ ସଚେତନ ହୋଇ ଓଡ଼ିଆଙ୍କର ସଂଖ୍ୟା ଯେ ନିୟମିତ ଭାବେ କମାଇ ଆସୁଅଛନ୍ତି, ଏହା ତାଙ୍କୁ ଜଣାଇ ଦିଆଗଲା । ଇଟସ୍‌ଙ୍କୁ ମଧ୍ୟ କିପରି ଓଡିଆଭାଷୀମାନଙ୍କୁ ତେଲୁଗୁ ବୋଲି ଗଣାଯାଉଛି, ତାହା କ୍ଷେତ୍ର ଉପରେ  ଦେଖାଇ ଦିଆଗଲା । ଧୋବାମାନଙ୍କ ପରି ଗଞ୍ଜାମ ଓ ବିଶାଖାପାଟଣା ଜିଲ୍ଲାରେ ଓଡ଼ିଆ, କୁମ୍ଭାର, ଲିଆରି, ଓଡ଼ିଆ(ଚଷା) ଜାତିଗୁଡ଼ିକ କୁମ୍ଭାର ନେଇଲୁ, ଓଡ୍‌ଡି ରୂପେ ଲେଖାଯାଇଥାନ୍ତି । ଇଟସ୍ ପ୍ରତିକାର କରିବା ଅବସ୍ଥାରେ ଥିଲେ ମାତ୍ର ସେ ଓଡ଼ିଆମାନଙ୍କର ଯୁକ୍ତି ଗ୍ରହଣ ନକରି ତାଙ୍କର ଚୂଡ଼ାନ୍ତ ସେନ୍‌ସେସ୍ ରିପୋର୍ଟରେ ଓଡ଼ିଆ ବିରୋଧୀ ମନ୍ତବ୍ୟ ଲେଖିଗଲେ । ସେତିକି ନୁହେଁ, ଓଡ଼େନେଲ୍ କମିଟି ଆଗରେ ସାକ୍ଷ୍ୟ ଦେଇ ପଣ୍ଡିତ ସତ୍ୟନାରାୟଣ ୧୫ଶ ଶତାବ୍ଦୀର ଆନ୍ଧ୍ରରୁ ପ୍ରାପ୍ତ ଗୋଟିଏ ତାମ୍ର ଅଭିଲେଖ ଶ୍ଳୋକରୁ ଉଦ୍ଧୃତ କଲେ-

"ପଶ୍ଚାତ୍ ପୁରସ୍ତାଦ୍ପ ଯଶ୍ୟ ସ୍ୟାତ୍ରେମହାରାଷ୍ଟ୍ର
କଳିଙ୍ଗ ସଞ୍ଜ୍ଞୌ
ଅବାଗୁଦକ୍ ପାଣ୍ଡ୍ୟକ କାନ୍ୟକୁବ୍‌ଜୌ ଦେଶା ସ ତତ୍ରାସ୍ତି
ତୈଲଙ୍ଗନାମା"

ଅର୍ଥାତ ଯେଉଁ ଦେଶର ପଶ୍ଚିମରେ ଓ ପୂର୍ବଭାଗରେ ଯଥାକ୍ରମେ ମହାରାଷ୍ଟ୍ର ଓ

କଳିଙ୍ଗ ଅବସ୍ଥିତ, ପୁଣି ଯେଉଁ ଦେଶର ଦକ୍ଷିଣରେ ଯଥାକ୍ରମେ ପାଣ୍ଡ୍ୟ ଓ କାନ୍ୟକୁବ୍ଜ ନାମକ ଦେଶ ଅବସ୍ଥିତ, ସେହି ମଧ୍ୟବର୍ତ୍ତୀ ରାଷ୍ଟ୍ର, ତୈଲଙ୍ଗ ନାମରେ ପରିଚିତ ବୋଲି ପ୍ରମାଣ କରି କଳିଙ୍ଗ ଆନ୍ଧ୍ର ଦେଶଠାରୁ ପୃଥକ ଥିବା ଦେଖାଇଲେ । ଇଂରେଜମାନେ ଅଧିକାର କଲାରୁ ଓ ତତ୍‌ପୂର୍ବରୁ ଏହି ଅଞ୍ଚଳ ବାହମନି ରାଜ୍ୟର ଅନ୍ତର୍ଗତ ଥିବାରୁ ବାହାରୁ ତେଲୁଗୁମାନେ ଆସି ଏଠାରେ ବାସ ଜମେଇଅଛନ୍ତି ଓ ଓଡ଼ିଆମାନଙ୍କୁ ଅନୁର୍ବର ଜଙ୍ଗଲ ଆଡ଼କୁ ତଡ଼ି ଦେଇଛନ୍ତି, ଏହା ମଧ ସାବ୍ୟସ୍ତ ହେଲା । ଗଞ୍ଜାମ ତେଲୁଗୁମାନଙ୍କ ତରଫରୁ କେ.ଭି.ଆପାରାଓ, ମ୍ୟୁନିସପାଲଟି ଚେୟାରମ୍ୟାନ, ଅଧ୍ୟାପକ ପାନ୍ନାଦି ଜଗନ୍ନାଥ ସ୍ୱାମୀ ଆଦି ଓଡ଼ିଆ ସପକ୍ଷରେ ସାକ୍ଷ୍ୟ ଦେଲେ । ଓଡ଼ନେଲ୍ କମିଟିର ତିନିଜଣ ସଭ୍ୟଙ୍କ ମଧ୍ୟରୁ ମେହେଟା ଓ ଫୁକାନ ଓଡ଼ିଶାର ଯୁକ୍ତି ଗ୍ରହଣ କଲେ । ଯେତେବେଳେ ଓଡେନେଲ୍ ଏ ଅଞ୍ଚଳ ପ୍ରସ୍ତାବିତ ଓଡ଼ିଶା ରାଜ୍ୟରେ ନ ମିଶିବାକୁ ମତ ପ୍ରକାଶ କଲେ, ସେ ଦୁହେଁ ବିରୋଧ ମତ ଦେଲେ । ଦୁଃଖର କଥା ଓଡ଼େନେଲ୍‌ଙ୍କର ମତ ଇଟସ୍‌ଙ୍କ ଦ୍ୱାରା ବିଶେଷଭାବେ ପ୍ରଭାବିତ ହୋଇଥିଲା । ଯୁକ୍ତିଯୁକ୍ତ ତଥ୍ୟ ଓ ପ୍ରମାଣ ତାଙ୍କୁ ଦର୍ଶାଯାଇଥିବା ସତ୍ତ୍ୱେ ଇଟସ୍ ଓଡ଼ିଶା ବିରୁଦ୍ଧରେ ସାକ୍ଷ୍ୟ ଦେଲେ ଓ ଦାଖଲ ମାନଚିତ୍ରକୁ ବିକୃତ କରି ଉପସ୍ଥାପିତ କଲେ । ଏହି ପରି ଜଣେ ପକ୍ଷପାତଯୁକ୍ତ ଗୋରା ସିଭିଲିଅନ୍ ନଥିଲେ, ଓଡ଼ିଆ ବାହାରେ ଭାଇଜାଗ୍ ଜିଲ୍ଲାରେ ବର୍ତ୍ତମାନ ରହିଯାଇଥିବା ଅଂଶ ଓଡିଆ ଭାଷାଭାଷୀ ଅଞ୍ଚଳଭାବେ ମାନ୍ଦ୍ରାଜ ପ୍ରଦେଶରୁ ଅଣାଯାଇ ପାରିଥାନ୍ତା । ପଣ୍ଡିତ ସତ୍ୟନାରାୟଣ ରାଜଗୁରୁଙ୍କ ଆତ୍ମଜୀବନୀ 'ମୋ ଜୀବନ ସଂଗ୍ରାମ'ରୁ ଇଟସ୍ କରିଥିବା ଚକ୍ରାନ୍ତ ସ୍ପଷ୍ଟ ଜଣାଯାଏ । ଆମ ରାଜ୍ୟର ସୌଭାଗ୍ୟ ଇଟସ୍‌ଙ୍କର କୁଚକ୍ର ପାରଳା ମହାରାଜା ଆଶିଂକଭାବରେ ପଣ୍ଡ କରିବାକୁ ପରବର୍ତ୍ତୀକାଳରେ ସକ୍ଷମ ହୋଇଥିଲେ । ପୁଲ୍ଲା ରେଡ୍ଡି ଓ ଇଟିସ୍ ମହାରାଜା କୃଷ୍ଣଚନ୍ଦ୍ରଙ୍କ ବିରାଟ ବ୍ୟକ୍ତିତ୍ୱ ଆଗରେ କ୍ଷତି କରିବାକୁ ସକ୍ଷମ ହୋଇ ନଥିଲେ ।



# କବି-କଳହଂସ ଗୋପାଳକୃଷ୍ଣ

ଅଷ୍ଟାଦଶ ଶତାବ୍ଦୀରେ ରାଧାକୃଷ୍ଣ ପ୍ରେମଲୀଳା ସଂପର୍କରେ ବହୁକବି ଅତି ଉଚ୍ଚାଙ୍ଗ ଗୀତିକାବ୍ୟ ରଚନା କରିଗଲେ । ଉତ୍କଳ-ସାହିତ୍ୟ-କୁଞ୍ଜ-କୋକିଳ କବି-କଳହଂସ ଗୋପାଳକୃଷ୍ଣ ଓଡ଼ିଶାର ବୈଷ୍ଣବ ଭକ୍ତକବିମାନଙ୍କ ମଧ୍ୟରୁ ବିଶିଷ୍ଟତମ । ଜନପ୍ରିୟତା ଦୃଷ୍ଟିରୁ ତାଙ୍କୁ ଓଡ଼ିଶାର ଅନ୍ୟତମ ଶ୍ରେଷ୍ଠ ଗୀତିକବି କହିଲେ ଅତ୍ୟୁକ୍ତି ହେବ ନାହିଁ । ଓଡ଼ିଶାର ଭକ୍ତ ଓ ବୈଷ୍ଣବ ସମାଜରେ ତାଙ୍କର ରଚନାବଳୀ ପରମ ଶ୍ରଦ୍ଧା ଓ ଆଗ୍ରହ ସହକାରେ ପରିଗୃହୀତ ହୋଇଥାଏ । ଗୋପାଳକୃଷ୍ଣ ମୁଖ୍ୟତଃ ଗୀତକାବ୍ୟ ମାଧ୍ୟମରେ ନିଜ ଭାବନାକୁ ଅଭିବ୍ୟକ୍ତ କରି ଅଛନ୍ତି । ବହୁ ଚଉତିଶା, କୋଇଲି, ବୋଲି, ବଚନିକା, ଚିଟାଉ, ଅଷ୍ଟକ ଓ ଚଉପଦୀ ରୂପରେ ତାଙ୍କର କବିତ୍ୱ ବିକଶିତ । ଭକ୍ତିମୂଳକ ଗୀତ, ଜଣାଣ, ଭଜନ, ପରଭୃତି ରଚନା କରିବାରେ ତାଙ୍କର ଅପୂର୍ବ କୃତିତ୍ୱ ରହିଛି । ଏଥି ମଧ୍ୟରେ ପ୍ରଧାନ ଜଣାଣମାନ ହେଲା :

୧ ) ଅନୁସରିତ, ପ୍ରଭୋ କାଳଯାକ ଗଲା ସରି ତ
କଣ ବିତରଣ କଲେ କେତେ ଊଣା
ହୁଅନ୍ତା କରୁଣା ସରିତ ।

୨ )ରସ ମାନସ ରାଧିକେଶ ଯାର କଥାରେ
ସେବିତ ଶୁକ ସନକ ଶେଷ ଅନିଶ ନତ ମଥାରେ ।
ଭ୍ରମନା ଭବ ରୋଗ ଲୋଭରେ ଲଭି ଧନ ପ୍ରମଦାରେ
ଭବ ସରସିଜ ଭବ ଦୁର୍ଲ୍ଲଭ ପ୍ରେମ ଭକ୍ତିଦାରେ ।

୩) ଭଜମନ ବ୍ରଜବନ ଦ୍ୱିଜରାଜଙ୍କୁ
ଅଜଶେଷ ଭବବନ୍ଦ୍ୟ ପଦକୁଞ୍ଜକୁ ।
ନେତ୍ରେ ରଞ୍ଜି ଦିବ୍ୟାଞ୍ଜନ ପ୍ରେମରେ କର ଲୋକନ
ବକ୍ତ୍ରେ ବଂଶୀ ହୃଦେ ଚାରୁ ଗୁଞ୍ଜା ସ୍ରଜକୁ ।

୪ )ବ୍ରଜବନକୁ ମନ ଯାଆ ଚାଲିରେ
ଜୟରାଧେ କୃଷ୍ଣ ବୋଲିରେ
ଭାଳନା ଏଥିରେ କିଛି ନାହିଁ ସୁଖ

ମୁରୁଖ ସବୁଟି ଦୁଃଖରେ
ନିଭୃତ କୁଞ୍ଜରେ ବିଜେ କରିଛନ୍ତି
ରହି ଦେଖ ଚନ୍ଦ୍ରମୁଖରେ ।

ଇତ୍ୟାଦି ଇତ୍ୟାଦି । ପ୍ରାକୃତିକ ଓଡ଼ିଶାର ପୁରପଲ୍ଲୀରେ ପଣ୍ଡିତ-ମୂର୍ଖ, ବୈଷ୍ଣବ-ଅବୈଷ୍ଣବ ନିର୍ବିଶେଷରେ ଏ ଗୀତଗୁଡ଼ିକ ଅଶେଷ ଜନପ୍ରିୟତା ଲାଭ କରିଛି ଓ ତାହାହିଁ ତାଙ୍କର ଓଡ଼ିଆ ସାହିତ୍ୟ ଓ ଭକ୍ତମାନଙ୍କୁ ଶ୍ରେଷ୍ଠଦାନ ।

ଦକ୍ଷିଣ ଓଡ଼ିଶାର ବିଦ୍ୟାନଗରୀ ଓ ହରି ସଂକୀର୍ତ୍ତନରେ ଉତ୍କଳର ନଦିଆ ଆଖ୍ୟାର ଅପ୍ରତିଦ୍ୱନ୍ଦ୍ୱୀ ଅଧିକାରିଣୀ, ପୁଣ୍ୟତୋୟା ମହେନ୍ଦ୍ରତନୟା ନଦୀର ଉତ୍ତର ତୀରସ୍ଥ ପାରଳାଖେମୁଣ୍ଡି ନଗରରେ ରାଜ ଅନୁଗ୍ରହପ୍ରାପ୍ତ ଏକ ସମ୍ଭ୍ରାନ୍ତ ପରିବାରରେ ପିତା ବନବାସୀ ପଟ୍ଟନାୟକଙ୍କ ଔରସରେ ମାତା ଲଳିତା ଦେବୀଙ୍କ ଗର୍ଭରୁ ୧୭୦୭ ଶକାବ୍ଦ (ଖ୍ରୀ. ୧୭୮୫) ଆଷାଢ଼ ଶୁକ୍ଳ ପ୍ରତିପଦା ତିଥିରେ ଭକ୍ତକବି ଆବିର୍ଭୂତ ହୋଇଥିଲେ । ତାଙ୍କର ପୂର୍ବପୁରୁଷ ଯାଜପୁର ନିକଟସ୍ଥ କଂସାକବାଟ ଗ୍ରାମରୁ ଗଜପତି ମହାରାଜାଙ୍କ ଗହଣରେ ପାରଳାଖେମୁଣ୍ଡିକୁ ଆସିଥିଲେ । ପିତା ବନବାସୀ ମହାରାଜାଙ୍କ ଦରବାରରେ ଜଣେ ପାଞ୍ଜିଆ ରୂପରେ ନିଯୁକ୍ତି ପାଇଥିଲେ । ପରେ ଖୁରିଗାଁ ଆଦି ୧୯ ଖଣ୍ଡ ଗ୍ରାମରେ କରଣ କାର୍ଯ୍ୟ ନିମିତ୍ତ ଜମିବାଡି ଓ ଜାଗିରି ପାଇଥିଲେ । ବନବାସୀ ଅତିଶୟ ଭକ୍ତିମାର୍ଗାବଲମ୍ବୀ ଥାଇ ରାଜକାର୍ଯ୍ୟ ସମ୍ପାଦନା ଉତ୍ତାରେ ଅବଶିଷ୍ଟ ସମୟ ହରିଚର୍ଚ୍ଚାରେ କଟାଉଥିଲେ । ମାତା ଲଳିତା ଦେବୀ ଅତିଶୟ ଧର୍ମ-ପରାୟଣା ଥାଇ ପ୍ରତ୍ୟହ ତୁଳସୀସେବା ଓ ଭାଗବତ ପାଠ ଆଦି ନିତ୍ୟକର୍ମ ଶେଷ ନ ହେଲେ ଜଳ ସ୍ପର୍ଶ କରୁ ନଥିଲେ । ଶ୍ରୀ ଗୁଣ୍ଡିଚା ଯାତ୍ରାର ଅଧିବାସ ସ୍ୱରୂପ ଆଷାଢ଼ ଶୁକ୍ଳ ପ୍ରତିପଦ, ଏହି ଦିନ ନେତ୍ରୋତ୍ସବ । ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ଏହି ଦିନ ପ୍ରଫୁଲ୍ଲ ନୟନରେ ଭକ୍ତମାନଙ୍କୁ ଦର୍ଶନ ଦେଇଥାନ୍ତି । ଧର୍ମ-ପରାୟଣ ପିତାମାତାଙ୍କର ମଙ୍ଗଳପ୍ରଦ ପୁତ୍ର ଗୋପାଳକୃଷ୍ଣ ଏହି ପବିତ୍ର ତିଥିରେ ଆବିର୍ଭୂତ ହୋଇଥିଲେ । କଥିତ ଅଛି, ତାଙ୍କର ଜନ୍ମ ସଙ୍ଗେ ସଙ୍ଗେ ସୂତୀକା ଘର ଭିତରେ ବିଦ୍ୟୁତ୍ ପରି ରଶ୍ମି ଖେଳିଯିବା ଦେଖି ପିତାମାତା ଓ ଦର୍ଶକମାନେ ବିସ୍ମୟାଭିଭୂତ ହୋଇଥିଲେ ।

ବନବାସୀଙ୍କର ତିନି ପୁତ୍ର ଓ ତିନି କନ୍ୟାଙ୍କ ମଧ୍ୟରେ ଗୋପାଳକୃଷ୍ଣ ସର୍ବ ପ୍ରଧାନ ଥିଲେ । ଅନ୍ୟ ଭାଇ ଭଉଣୀମାନେ ଅକାଳରେ ମରି ଯିବାରୁ ସେ ବାପାମାଆଙ୍କର ଅତି ଆଦରର ପାତ୍ର ଥିଲେ । ସାତ ବର୍ଷ ବୟସରେ ବିଦ୍ୟା ଆରମ୍ଭ ହୋଇଥିଲେ ମଧ୍ୟ

ଦଶ ବର୍ଷ ପର୍ଯ୍ୟନ୍ତ ସେ ବିଦ୍ୟାରେ ଆଦୌ ଶ୍ରଦ୍ଧା ନ ରଖି ଗାଈଗୋରୁଙ୍କ ସହିତ ଖେଳିବୁଲି ବାଲ୍ୟ ଚାପଲ୍ୟରେ ଦିନ କଟାଉଥିଲେ । ମାତ୍ର ଶୈଶବରୁ କଣ୍ଠରେ ତୁଳସୀମାଳା ଓ କପାଳରେ ତିଳକ ଆଦି ବୈଷ୍ଣବ ଚିହ୍ନ ଧାରଣ କରିବାକୁ ସେ ସୁଖ ପାଉଥିଲେ । ଯେଉଁଠାରେ ହରି କୀର୍ତ୍ତନ ହୁଏ ସେ ସେଠାରେ ଯୋଗଦାନ କରି ଧୀରସ୍ଥିର ଭାବରେ ଏହା ଶ୍ରବଣ କରୁଥିଲେ । ଦିନେ ତାଙ୍କ ବାସଗୃହ ସମୀପରେ ପଣ୍ଡିତମାନଙ୍କ ମଧ୍ୟରେ ବେବର୍ତ୍ତା ପଟ୍ଟନାୟକଙ୍କର ସଭା ମଣ୍ଡପରେ ଶ୍ରୀ ରୂପ ଗୋସ୍ୱାମୀଙ୍କର ପ୍ରଣୀତ ବିଦଗ୍ଧମାଧବ ନାଟକର ଚର୍ଚ୍ଚା ହେଉଥିଲା । ଗୋପାଳକୃଷ୍ଣ ସେଠାରେ ନିଜ ପିତାଙ୍କ ସମ୍ମୁଖକୁ ଗଲେ । ତାଙ୍କର ରୂପଲାବଣ୍ୟରେ ପଣ୍ଡିତମାନେ ମୁଗ୍ଧ ହୋଇଗଲେ ମାତ୍ର ସେ ବିଦ୍ୟାଧ୍ୟୟନରେ ଅମନଯୋଗୀ ଏହା ଜାଣି ସେମାନେ ଦୁଃଖିତ ହେଲେ ଓ ଗୋପାଳକୃଷ୍ଣଙ୍କୁ ଭର୍ତ୍ସନା କଲେ । ଅନ୍ୟାନ୍ୟ କେତେକ ମହାପୁରୁଷମାନଙ୍କ କ୍ଷେତ୍ରରେ ହେଲା ପରି ଏହି ଭର୍ତ୍ସନା ତାଙ୍କର ଭବିଷ୍ୟତ ମାର୍ଗ ନିର୍ଦ୍ଦେଶ କରି ତାଙ୍କୁ ଆଶୀର୍ବାଦର ଫଳ ଦେଲା । ସେ ବିଦ୍ୟାଶିକ୍ଷା ଆରମ୍ଭ କଲେ । ଅଳ୍ପ ବୟସରେ ସକଳ ଶିଶୁ ଶିକ୍ଷା ଶେଷକରି ସେ ମୁଗ୍ଧବୋଧ ବ୍ୟାକରଣ ଓ ଅମରକୋଷ ଅଭିଧାନ ପାଠ କଲେ । ପ୍ରାୟ ଦୁଇବର୍ଷ ପରେ ଆଉ ଜଣେ ପଣ୍ଡିତଙ୍କ ପାଖରେ ସେ ଜୁମର ବ୍ୟାକରଣ ଶିକ୍ଷା କଲେ । କାଳିଦାସ, ଭବଭୂତି ପ୍ରଭୃତିଙ୍କର କାବ୍ୟ ନାଟକାଦି ଆଲୋଚନାରେ ସେ ଆଗ୍ରହୀ ହୋଇ ପଡ଼ିଲେ । ଗଜପତି ମହାରାଜାଙ୍କର ସଭାର ପଣ୍ଡିତମାନଙ୍କ ସହିତ ସାଧୁ ଶାସ୍ତ୍ରାଳାପ ଦ୍ୱାରା ଦିନକୁ ଦିନ ତାଙ୍କର ବିଦ୍ୟାର ଉନ୍ନତି ହେଲା । ପିତାଙ୍କ ସହିତ ସେ ରାଜଭବନକୁ ଯାଇ ରାଜକାର୍ଯ୍ୟରେ ତାଙ୍କୁ ସାହାଯ୍ୟ ମଧ୍ୟ କରୁଥାନ୍ତି । ୨୦ବର୍ଷ ବୟସରେ ତାଙ୍କର ଶୁଭ ପରିଣୟ ହୁଏ । ତାଙ୍କ ପତ୍ନୀଙ୍କର ନାମ ହୀରାମଣି ଦେବୀ । ସେ ସର୍ବ ଶୁଭ ଲକ୍ଷଣ ସମନ୍ୱିତ ଓ ବିଷ୍ଣୁଭକ୍ତି ପରାୟଣୀ ଥିଲେ । ସ୍ୱ-ଇଷ୍ଟଦେବ ଶ୍ରୀ ରସିକରାଜଙ୍କ ଶ୍ରୀଚରଣରେ ତାଙ୍କର ପ୍ରଗାଢ଼ ଭକ୍ତି ଥିଲା । ଏହି ରସିକରାଜଙ୍କୁ ଲକ୍ଷ୍ୟ କରି ଗୋପାଳକୃଷ୍ଣ ତାଙ୍କର ରଚନାମାନ ଜନପ୍ରିୟ କରାଇଥିଲେ ।

ସେ ଯୁଗରେ ଶାସ୍ତ୍ର ସହିତ ଶରୀରଚର୍ଯ୍ୟା ମଧ୍ୟ ଲୋକପ୍ରିୟ ଥିଲା । ପନ୍ଦର ବର୍ଷଠାରୁ ପଚିଶ ବର୍ଷ ପର୍ଯ୍ୟନ୍ତ ପ୍ରତ୍ୟହ ସେ ଦେଶୀୟ ବ୍ୟାୟାମ ଶିକ୍ଷା କରୁଥାନ୍ତି । ପ୍ରତିଦିନ ସକାଳ ଚାରିଟାରେ ଶଯ୍ୟା ତ୍ୟାଗ କରି ସେ ସ୍ନାନ ତିଳକାଦି ଶେଷ କରି ପ୍ରାୟ ୬ଘଣ୍ଟା ସମୟରେ ଦେଢ଼ ସେର ଗୋ-କ୍ଷୀର ପାନ କରୁଥିଲେ । ତା'ପରେ ଶାରୀରିକ ବ୍ୟାୟାମ କରୁଥିଲେ । ତାଙ୍କର ବ୍ୟାୟାମ ସରଞ୍ଜାମ ମଧ୍ୟରୁ କେତେକ ତାଙ୍କ ଗୃହରେ

ସୁରକ୍ଷିତ ଭାବରେ ଥିଲା । ବର୍ତ୍ତମାନ ଦାଣ୍ଡି କାଟିବାର ଦୁଇଟି କାଠର ପାରାଲେଲ ବାର ଅଛି । ଆଗରୁ ଦୁଇଟି ଓଜନ ପଥର ଥିଲା । ବର୍ତ୍ତମାନ ତାହା ମିଳୁ ନାହିଁ । ପୋଡ଼ା ମାଟିଖୋଳ ମଧ୍ୟରେ ଗୋଟିଏ ବଡ଼ ଖଣ୍ଡା ଥିଲା । ତାହା ବର୍ତ୍ତମାନ ମହାରାଜାଙ୍କର କନକ ଦୁର୍ଗା ମନ୍ଦିରରେ ଅଛି । ପ୍ରାୟ ଆଠ ଘଣ୍ଟା ସମୟରେ ଘରକୁ ଫେରି ବିଶ୍ରାମ ପରେ ସେ ଭୋଜନ କରୁଥିଲେ । କାବ୍ୟ ନାଟକ ପଠନରେ ତାଙ୍କର ଅବସର ସମୟ କଟୁଥିଲା ।

ପିତାଙ୍କ ମୃତ୍ୟୁପରେ ସେ ମହାରାଜାଙ୍କର କରଣ ହେଲେ । ତତ୍କାଳୀନ ରାଜ୍ୟର ମେନେଜର ପ୍ରଥମ ମହାରାଜାଙ୍କର ଅପ୍ରିୟ ହୋଇ ବରଖାସ୍ତ ହେଲେ । ପରେ ସେ ସରକାରୀ ସାହାଯ୍ୟ ପାଇ ପୁନଃନିଯୁକ୍ତ ହେଲେ ମାତ୍ର ତାଙ୍କର ପଦଚ୍ୟୁତି ନିମିତ୍ତ ସେ କାର୍ଜୀ କରଣମାନଙ୍କ କୁମନ୍ତ୍ରଣାକୁ ଦାୟୀ କଲେ । ସେ କରଣମାନଙ୍କ ପ୍ରତି ଅତିଶୟ କ୍ଷୁବ୍ଧ ହେଲେ । ଅମଙ୍ଗଳ ଆଶଙ୍କାରେ ପ୍ରାୟ ପଚାଶ ଜଣ କରଣ ଓ କଟିକିଆ ବ୍ରାହ୍ମଣ ପାରଳା ରାଜ୍ୟ ଛାଡି ଗୁଣପୁର ଓ ଗଞ୍ଜା (ବର୍ତ୍ତମାନର ଗଞ୍ଜାମ )ଗ୍ରାମକୁ ପଳାଇ ଯାଇଥିଲେ । ଗୋପାଳକୃଷ୍ଣ ସେମାନଙ୍କ ମଧ୍ୟରୁ ଜଣେ । ଗଞ୍ଜାମରେ ଗୋପାଳକୃଷ୍ଣ ଗଞ୍ଜାର ବିଖ୍ୟାତ କରଣମାନଙ୍କ ସଂସ୍ପର୍ଶରେ ଆସିଥିଲେ । ସୁବିଖ୍ୟାତ ଆଶୁକବି କଟାକ୍ଷଶତକଂ ଓ ଗୁଣ୍ଡିଚା ଚମ୍ପୂର ଲେଖକ ବକ୍ରବାକ ଚକ୍ରପାଣି ପଟ୍ଟନାୟକ ଏହି କରଣମାନଙ୍କ ମଧ୍ୟରୁ ଅନ୍ୟତମ । ଏହି କବି ସାହଚର୍ଯ୍ୟ ସମ୍ଭବତଃ ତାହାଙ୍କୁ ଗୀତ ସାହିତ୍ୟ ରଚନା କରିବାକୁ ଅନୁପ୍ରାଣିତ କରିଥିଲା । ଦିନେ ସନ୍ଧ୍ୟା ସମୟରେ କବି ଗୋପାଳକୃଷ୍ଣ ଓ ବକ୍ରବାକ ଚକ୍ରପାଣି ଅନ୍ୟ ବନ୍ଧୁମାନଙ୍କ ସହିତ ଋଷିକୂଲ୍ୟା ନଦୀ କୂଳରେ ସୌନ୍ଦର୍ଯ୍ୟ ଉପଭୋଗ ନିମିତ୍ତ ଭ୍ରମଣ କରୁଥିଲେ । ନବ-ଯୌବନ-ସଂପନ୍ନା ନାନା ଅଳଙ୍କାର ଭୂଷିତା ସୌନ୍ଦର୍ଯ୍ୟ-ଲକ୍ଷ୍ମୀ-ସୁଶୋଭିତା ଜଣେ ବୈଶ୍ୟ (କୁମୁଟି) ଜାତିର ସ୍ତ୍ରୀ ମସ୍ତକରେ ଜଳକୁମ୍ଭ ଧରି ସ୍ୱଗୃହକୁ ଫେରୁଥିବାର ଦେଖି ଚକ୍ରପାଣି ସମସ୍ତଙ୍କୁ ଏହା ବର୍ଣ୍ଣନା କରି ଗୋଟିଏ କବିତା ରଚନା କରିବାକୁ କହିଲେ । ସେ ନିଜେ ଆଶୁକବି ଥିଲେ । ପ୍ରଥମେ ଅସାମର୍ଥ୍ୟ ପ୍ରକାଶ କଲେ ମଧ୍ୟ ଅନୁରୋଧ ଉପେକ୍ଷା କରି ନପାରି ଗୋପାଳକୃଷ୍ଣ ସେଠାରେ ନିଜର ପ୍ରଥମ କବିତା ରଚନା କଲେ । ଏହା ଆଦିରସାତ୍ମକ ମାତ୍ର ଭାବପୂର୍ଣ୍ଣ ଓ ସମୟୋଚିତ ଥିବା ଯୋଗୁଁ ଶ୍ରେଷ୍ଠ ବିବେଚିତ ହେଲା । କବିତାଟି ହେଲା;

"ସ୍ଥଳେ ଦେଇ ବନ୍ଧୁ ନ ଯାରେ
ରହ ଜିତେନ୍ଦ୍ରିୟ ଚିତ୍ତ ହଜାରେ
ଗର୍ଭାଳସୀ ହଂସୀ ଗମନା
ପୁରାତନୁ କାମ କାମନା

ପୂର୍ଣ୍ଣ ହେବ ବୋଲି ସୁମନା ଜଗିଛି ପଥ ମୃଣାଳ ଭୁଜାରେ
କରେ ଗଣ୍ଡ କରି ଆଛନ୍ନ ଧନ ନୁହରେ ଛନ୍ନ ଛନ୍ନ
ଟେକି ମୁକ ମୃଗ ଲାଞ୍ଛନ୍ନ ମୋ ମନ କରାଇଦିଅ ଓଜାରେ ।
ସରଣି ନ ଭାଙ୍ଗି ବରଜ ଲୁଆଇଁ ବଦନ ନୀରଜା
ଦରାଧର ଭିଡ଼ା ବରଜ ଅନାଥରେ ହସି ବିନା ଲଜାରେ ।
ଭାଷ ଗିର ଆନ ଧରନା ପର ବୋଲି ମତେ ଡରନା
କଂପାନା ମୁଁ ଶଂପା ବରନା ଲଭିଛି ତୋ ଭେଟ ହର ପୂଜାରେ ।
ଗୋପାଳକୃଷ୍ଣରେ ଦୂତୀକି କହିବା ଶୁଭୁଛି ଶ୍ରୁତିକି
ଗଲେ ତ ନ ରହୁ କତିକି ଅସୂୟା କାହିଁକି ଦୟା ମଜାରେ ।”

ଚକ୍ରପାଣି ତାଙ୍କୁ କବିତା ଲେଖା ନ ଛାଡିବାକୁ ଉପଦେଶ ଦେଲେ । ଏହି ସମୟରେ ସେ ବହୁତ ମୌଳିକ ପ୍ରେମାନୁଭୂତିମୂଳକ ଚଉପଦୀ ରଚନା କରିଥିଲେ । କବି ଏହା ପରେ ଖବର ପାଇଲେ ଯେ ମ୍ୟାନେଜର ତାଙ୍କର ନିର୍ଦ୍ଦୋଷତା ଓ କର୍ମକୁଶଳତାର ପ୍ରମାଣ ପାଇ ପୁନଃନିଯୁକ୍ତିର ଆଦେଶ ଦେଇ ଅଛନ୍ତି । ସେ ପାରଳାଖେମୁଣ୍ଡିକୁ ଫେରି ଆସିଲେ । ଅବସର ସମୟରେ ସେ କବିତା ଲେଖିଥାନ୍ତି । ଥରେ ଗୋଟିଏ କବିତା ଲେଖି ବୈୟାକରଣ ପୁସ୍ତକ ମଧ୍ୟରେ ତାହା ଛାଡ଼ି ଦେଇଥିଲେ । ଏହି କବିତାଟି ତାଙ୍କର ଗୁରୁ ପଣ୍ଡିତ ଓ ଭକ୍ତପ୍ରବର ଶ୍ରୀ ଦୀନବନ୍ଧୁ ପଟ୍ଟନାୟକଙ୍କର ହସ୍ତଲେଖା । ସେ କବିତାଟି ପଢ଼ିଲେ;

“ଜୀବନ ବନ୍ଧୁ ମାଗୁଣି ମାଗୁଛିରେ ଏତିକି ।
ନାହିଁ କରିବୁ ନାହିଁଟି କହିଲା ବିନତିକି ।
ନଚାଇ ଚରମେ ବେଣୀ ବଜାଇ କଟି କିଙ୍କିଣୀ
ଝୁଲାଇବୁ ବିପରୀତେ ଭୁଲାକିର ମୋତିକି ।୧।
ସ୍ତନତୁଳେ ତୋରା ହାରା ତାଟଙ୍କ ଝଳକା ଝରା
ଚଳାଇବୁ ଚାହିଁ ମୋତେ ନ ଲିଭାଇ ବତିକି ।୨।
ବିଲୋକିବି ଦରାଧର ଭିଡ଼ା ସୁଖ ସୁଧାକର
ସ୍ୱେଦ ଜରଜର ଅନମ୍ରର ଦେହ ଦ୍ୟୁତିକି ।୩।
ଭ୍ରୂଲତା ମଧ୍ୟରେ ନେଇ ଖଞ୍ଜନ ଡ଼ୋଳା ଖେଳାଇ
ଯାହା ବୋଲୁଥିବୁ ଶୁଭୁଥିବଟି ମୋ ଶ୍ରୁତିକି ।୪।
ଦୁଃଖରୁ ଉଦ୍ଧରିବାକୁ ଥିଲେ ଗୋପାଳକୃଷ୍ଣକୁ

ଅଙ୍ଗୀକାର କରି ଥରେ ପଠିଆ ଅଦୂତୀକି ।" ।୫।

କବିତାଟି ପଢ଼ି ପଣ୍ଡିତେ କହିଲେ "ଆମ ଗୋପାଳର ଆଜିଯାଏ ଶିଶୁବୁଦ୍ଧି ଛାଡି ନି ।" ସେହି ଉପଦେଶ ଫଳରେ କବି ଶୃଙ୍ଗାର ରସ କବିତା ପରିବେଷଣ ପରିତ୍ୟାଗ କଲେ । ଏହାର କେତେ ବର୍ଷ ପରେ କବି ବୈଷ୍ଣବ ଧର୍ମରେ ଦୀକ୍ଷିତ ହେଲେ । ତାଙ୍କର ଦୀକ୍ଷା ଗୁରୁ ଥିଲେ ଲୋକନାଥ ଦାସ ନାମରେ ପରିଚିତ ଗୌଡୀୟ ଧର୍ମାବଲମ୍ବୀ ବିନାୟକ ଦାସ ଗୋସ୍ୱାମୀ । ପରବର୍ତ୍ତୀ କାଳରେ ଗୋପାଳକୃଷ୍ଣଙ୍କର ରଚ଼ନାରେ ଶୃଙ୍ଗାର ରସ ପରିବର୍ତ୍ତେ ବୈଷ୍ଣବୀୟ ପ୍ରେମଲୀଳା ମୁଖ୍ୟତଃ ଅଭିବ୍ୟକ୍ତି ଲାଭ କରିଥିଲା । ପ୍ରଥମେ ଆପଣା ଇଷ୍ଟଦେବ ଶ୍ରୀ ରସିକରାଜଙ୍କ ରୂପ ବର୍ଣ୍ଣନା କରି କବି ରଚ଼ନା କଲେ ;

ଦେଖିଲେ ଦେଖିଲା ପରି ଥରେ ରସିକରାଜଙ୍କୁ
ଅଖିଳ ବ୍ରଜବାସୀଙ୍କ ଆଖିର ପୁଣ୍ୟ ପୁଞ୍ଜକୁ ।

ସୁରଭିଗଣ ପଛରେ ମୁରଳୀ ବଜାଇ ଧୀରେ
ନାଚି ଆସିବା ବେଳରେ ବଣ ବାହୁଡ଼ା ସଜକୁ ।୧।
ବିନ୍ଦୁ ବିନ୍ଦୁ ଶ୍ରମ ଝାଳ ଅଳକାବୃତ କପୋଳ
ମକର କୁଣ୍ଡଳ ଗଣ୍ଡ ଶିଖଣ୍ଡ ଚୂଳ ଧ୍ୱଜକୁ ।୨।
ନଟବର ଶିଖାମଣି ଚରମ ଦେଶର ବେଣୀ
ଚାଳିବାର ବଂଶୀରନ୍ଧ୍ରେ ଚାରୁ ଅଙ୍ଗୁଳି ବ୍ରଜକୁ ।୩।
ନାସିକାର ମୋତିବର ଧୀର ଧୀର ଚଳିବାର
ଗୁଞ୍ଜାହାର ତୁଳେ ଉର ପରମ ବନ୍ୟ ସ୍ରଜକୁ ।୪।
ଝୁମୁ ଝୁମୁ ବାଜିବାର ମଞ୍ଜୁଳ ମଣି ମଞ୍ଜୀର
ଗୋପାଳକୃଷ୍ଣ ଚିନ୍ତେ ସେ ଛନ୍ଦା ଚରଣ କଞ୍ଜକୁ ।୫।

କୁହାଯାଏ, କବି ଖାରଡ଼ା ମଠରେ ମହନ୍ତଙ୍କୁ ଶିକ୍ଷାଗୁରୁ ରୂପେ ବରଣ କରି ସେହି ମଠର ଗାଦିରେ ଗଚ୍ଛିତ ଥିବା ପୁସ୍ତକମାନ ପଢୁଥାଆନ୍ତି । ବିଶେଷ କରି ଶ୍ରୀରୂପ ଗୋସ୍ୱାମୀଙ୍କର 'ଚାଟୁ ପୁଷ୍ପାଞ୍ଜଳି' ପ୍ରତି ସେ ଆକୃଷ୍ଟ ହୋଇ ତହିଁର ତିନିଗୋଟି ଶ୍ଳୋକର ଅନୁବାଦ କଳସା, ଆଷାଢ଼ ଶୁକ୍ଳ ଓ ମଧୁଶ୍ରୀ ରାଗରେ ରଚନା କରି ସେହି ରାଧାକାନ୍ତ ମଠରେ ଶୟନ କରିଛନ୍ତି, ଏହି ସମୟରେ ସେ ସ୍ୱପ୍ନ ଦେଖିଲେ ଜଣେ ବୈଷ୍ଣବ ଚିହ୍ନଧାରୀ ବ୍ରାହ୍ମଣ ଆସି ତାଙ୍କୁ ଶୁଭ ଦର୍ଶନ ଦେଇ ଆଜ୍ଞା ଦେଲେ 'ତୁ ପୁଷ୍ପାଞ୍ଜଳି ଗୁଣିବାକୁ ଅଧିକାର ନ ପାଇ କେତେ ଗୁଣୁଅଛୁ । ଆପଣାର ଶ୍ରୀ ଗୁରୁଦେବ ପାରଳାଖେମୁଣ୍ଡି ବିଜେ କରି

ଅଛନ୍ତି, ଶୀଘ୍ର ଯାଇ ଅଧିକାର ପାଅ ।' କବି ସ୍ୱପ୍ନରେ ଉଠି ଭାବାବେଶରେ କବିତା ରଚନା କଲେ;

"ଏଡ଼େ ଭାଗ୍ୟ ମୋର ହେବ କି ?
ହେବି ବୃନ୍ଦାବନେଶ୍ୱରୀ ସେବକୀ ।
ଶ୍ରୀ ଗୁରୁଦତ୍ତ ବୀଜମନ୍ତ୍ର କଳପ ବଲ୍ଲୀରେ
ପ୍ରେମଫଳ ଫଳିବ କି ?
ଶ୍ରୀ ସ୍ୱାମିନୀଙ୍କର ଯାବତ
ଅଷ୍ଟକାଳ ସେବା ସନ୍ତତ
ଶ୍ରୀ ରୂପ ମଞ୍ଜରୀ ଆଜ୍ଞା ଶିରେ ଧରି
କରିବି ମନୋରଥ ପୂରିବ କି ? ।୧।
ବ୍ରଜରାଜ କୁଳ ଚନ୍ଦ୍ରମା
ଦୋଷ କରିବା ପାଇଁ କ୍ଷମା
ମୁଁ ଲଳିତାଙ୍କ ପଦାବ୍ଜେ ପଡ଼ି
ଜଣାଇବା ଶୁଭ ଦଶା ସମ୍ଭବ କି ? ।୨।
ଗୋଷ୍ଠେଶ୍ୱରୀ କୋଳରେ ଧରି
ବଧୂ ସଧେ ଲାଳନା କରି
ସ୍ନେହେ ଅଶ୍ରୁ ପୋଛୁ ସ୍ୱେଶ୍ୱରୀଙ୍କ ଲଜ୍ଜା
ନମ୍ରମୁଖ ବିହି ଦେଖାଇବ କି ? । ୩ ।
ରାସ ରସାମୃତାବ୍ଧି ବିଧୁ
ଅଙ୍କରେ ଜଟିଳାଙ୍କ ବଧୂ
ବିଜେ କରିବାର ଦେଖି ମୋ ଆଖିରେ
ସୁଖ ଅକୂପାର ଉଛୁଳିବ କି ? ।୪।
ହୃଦେ ଧରି ସେ ଦୁଇ ରୂପ
ଶ୍ରୀ ମଞ୍ଜରୀ ସଖି କଳାପ
ବୋଲେ ଗୋପାଳକୃଷ୍ଣ ମୁଖେ ଶ୍ରୀରାଧାକୃଷ୍ଣ
ବୋଲି ଜୀବ ବରଜିବି କି ? ।୫।

ପରଦିନ ପ୍ରାତଃକୃତ୍ୟ ଶେଷ କଲାପରେ କବି ଶୁଣି ପାରିଲେ ଯେ ତାଙ୍କର

ଦୀକ୍ଷାଗୁରୁ ପାରଳାଖେମୁଣ୍ଡିରେ ଅଛନ୍ତି । ସେ ସେଠାକୁ ଫେରିଗଲେ । ଶ୍ରୀ ଭାଗବତ ମନ୍ଦିରରେ ଗୁରୁଙ୍କ ସମୀପରେ ସାଷ୍ଟାଙ୍ଗ ପ୍ରଣିପାତ କରି ତାଙ୍କୁ ସ୍ୱପ୍ନ ବୃତ୍ତାନ୍ତ ଜଣାଇଲେ । ଗୁରୁଙ୍କର ଆନନ୍ଦର ସୀମା ରହିଲା ନାହିଁ; ସେ ତାଙ୍କୁ ମନ୍ତ୍ର ପ୍ରଦାନ କଲେ । କବି ଗୁରୁ-ଦକ୍ଷିଣା ସ୍ୱରୂପ 'ଶ୍ରୀ ଗୁରୁ ପଞ୍ଚକ' ସ୍ତୋତ୍ରଟି ରଚନା କରି ତାଙ୍କୁ ଅର୍ପଣ କଲେ ଓ ଯଥାବିଧି ଦକ୍ଷିଣା ମଧ୍ୟ ଦେଲେ । ତା' ପରଦିନ ଖାରଡ଼ା ମଠକୁ ପ୍ରତ୍ୟାବର୍ତ୍ତନ କରିବା ପୂର୍ବରୁ ଗୋପାଳକୃଷ୍ଣ ସତେଇଶଗୋଟି ସଂସ୍କୃତ ଶ୍ଳୋକ ବିଶିଷ୍ଟ 'ଶ୍ରୀ ଶ୍ରୀ ରାଧାନକ୍ଷତ୍ରମାଳା' ନାମକ ସ୍ତୋତ୍ର ସେହି ଗୁରୁଙ୍କ ନାମରେ ଭଣିତା କରି ତାଙ୍କୁ ସମର୍ପଣ କଲେ । ଯଦ୍ୟପି କବି ତାଙ୍କର କୌଣସି ରଚନାରେ ଗୁରୁଙ୍କର ନାମ ଉଲ୍ଲେଖ କରି ନାହାନ୍ତି ତଥାପି ଶ୍ରୀ ରାଧା ନକ୍ଷତ୍ରମାଳା ଅଷ୍ଟକର ଇତି ବାକ୍ୟରେ ଇତିଶ୍ରୀ ଲୋକନାଥ ଦାସ ଗୋସ୍ୱାମୀନାଂ ବିରଚିତ ଶ୍ରୀଶ୍ରୀ ରାଧା ନକ୍ଷତ୍ରମାଳା ସମାପ୍ତ' ପଦରୁ ଧରାକୋଟ ପୁଟୁ ପୀଠାଧୀଶ ଶ୍ରୀ ଲୋକନାଥ ଦାସ ଗୋସ୍ୱାମୀ ତାଙ୍କର ଦୀକ୍ଷାଗୁରୁ ବୋଲି ଅନୁମାନ କରାଯାଏ । ପରେ ପରେ ଖାରଡା ମଠରେ କବି 'ପ୍ରାର୍ଥନା ରତ୍ନାଞ୍ଜଳି', 'ଚାଟୁ ପୁଷ୍ପାଞ୍ଜଳି', 'ଶ୍ରୀ ବୃଷଭାନୁଜା ପ୍ରେମନାମାବଳୀ', 'ମୁକୁନ୍ଦ ମୁକ୍ତାବଳୀ' ଶ୍ଳୋକାନୁବାଦ, 'ରାଧାଙ୍କ ଦଶନାମ' ସ୍ତୋତ୍ର ପ୍ରଭୃତି ରଚନା କରିଥିଲେ । ଓଡ଼ିଆ, ତେଲୁଗୁ, ସଂସ୍କୃତ, ବଙ୍ଗଳା ଓ ବ୍ରଜବୋଲି ଭାଷାରେ ସେ ପ୍ରବୀଣ ଥିଲେ । ଶେଷ ଜୀବନ ପର୍ଯ୍ୟନ୍ତ ସେ ବହୁ ସଂଖ୍ୟକ ଛାନ୍ଦ, ଚଉତିଶା, ଚଉପଦୀ, ବୋଲି ପ୍ରଭୃତି ଲେଖି ଯାଇଛନ୍ତି । ଏହା ବ୍ୟତୀତ ଅତି ମଧୁମୟ ଭାଷାରେ ସେ ସଂସ୍କୃତ ସ୍ତବ ଓ ସ୍ତୋତ୍ରମାନ ମଧ ଲେଖି ଯାଇଛନ୍ତି । ରଚନାଗୁଡ଼ିକ ତାଙ୍କର ଉଚ୍ଚକୋଟୀର ପାଣ୍ଡିତ୍ୟ, ଭକ୍ତିମତ୍ତା ଓ ସଂଗୀତ ବ୍ୟୁତ୍ପତ୍ତିର ପରିଚାୟକ । ଶ୍ରୀରାଧା ଓ ଶ୍ରୀକୃଷ୍ଣ ଉଭୟ ମୂର୍ତ୍ତି ଏକାତ୍ମା ହୋଇ କଳିକଳୁଷିତ ଜୀବଗଣଙ୍କ ଉଦ୍ଧାରାର୍ଥେ ଶ୍ରୀକୃଷ୍ଣ ଚୈତନ୍ୟ ରୂପେ ଅବତୀର୍ଣ୍ଣ ହୋଇଅଛନ୍ତି । ଏହି ଭାବାମୃତ ଆବାଳ-ବୃଦ୍ଧ-ବନିତା ସବୁରି ଆସ୍ୱାଦନ ନିମିତ୍ତ କବି ସହଜ ଭାଷାରେ ଲେଖିଗଲେ;

ଶ୍ରୀ ଗୌରଚନ୍ଦ୍ର ପଦ ବନ୍ଦରେ, ମାନସ ।
ଏ ଏକା ଶ୍ରୀରାଧା ଗୋବିନ୍ଦରେ ।
ବ୍ରଜ ବିଧୁ ଶ୍ରୀମତୀ ହୋଇ ଗୋଟିଏ ମୂର୍ତ୍ତି
ଜନ୍ମିଛନ୍ତି ଶ୍ରୀ ଶଚୀ ଉଦରେ ।
ସ୍ୱ ସ୍ୱ କାନ୍ତନାବଧି ଦୟା ସଦଗୁଣ ନିଧି
ସଦା ବେଷ୍ଟିତ ଭକ୍ତ ବୃନ୍ଦରେ ।

ମହାଭାବ ଉଜ୍ଜ୍ୱଳ ରସ ପୀତ ଶ୍ୟାମଳ
ପରତତ୍ତ୍ୱ ହେଲାର ଦ୍ୱନ୍ଦ୍ୱରେ ।
ଜଗନ୍ନେତ୍ର ସମ୍ପତ୍ତି ବଦାନ୍ୟ ଚକ୍ରବର୍ତ୍ତୀ
ଯା ନାମାମୃତ ସର୍ବ ଶବ୍ଦରେ ।
ଏ କୃପା ପାରାବାର ପ୍ରତ୍ୟକ୍ଷ ହୋଇବାର
ଦେଖିଛନ୍ତି ଶ୍ରୀ ରାମାନନ୍ଦରେ ।
ଗୋପାଳକୃଷ୍ଣ ଭଣେ ଶ୍ରୀନାମ ଅନୁକ୍ଷଣେ
କୀର୍ତ୍ତନ କରୁଥା ଆନନ୍ଦରେ ।

କବିଙ୍କ ବିରଚିତ କୋଇଲି ଓ ଦୋଳି ଗୀତରୁ ବାତ୍ସଲ୍ୟ ପ୍ରେମର ପରାକାଷ୍ଠା ପରିଲକ୍ଷିତ ହୁଏ । ଭାଷା ଅତି ସରଳ ଓ ମର୍ମସ୍ପର୍ଶୀ ହୋଇଥିବାରୁ ଗୋପାଳକୃଷ୍ଣଙ୍କର ସୁଲଳିତ ପଦ୍ୟାବଳୀ ଆଜି ଉତ୍କଳର ଆବାଳ-ବୃଦ୍ଧ-ବନିତାଙ୍କର ଉପଭୋଗ୍ୟ ଓ ଆଦରର ବସ୍ତୁ ହୋଇଅଛି । କବି ନିଜର ଆରାଧ୍ୟ ଦେବତା ରସିକରାଜ କୃଷ୍ଣଚନ୍ଦ୍ରଙ୍କର ବାଲ୍ୟ, ପୌଗଣ୍ଡ ଓ କୈଶୋର ଲୀଳା ମାଧ୍ୟମରେ ଉତ୍କଳୀୟ ଗାର୍ହସ୍ଥ୍ୟ ଜୀବନର ସୁଖଦୁଃଖ, ବାତ୍ସଲ୍ୟ, ପ୍ରୀତି ଭକ୍ତି ସବୁ ପ୍ରକାଶ କରି ଅପୂର୍ବ କଳା ନୈପୁଣ୍ୟର ପରିଚୟ ଦେଇ ଯାଇଅଛନ୍ତି ।

କବିଙ୍କର ତିନି ପୁତ୍ର ଥିଲେ । ମଧ୍ୟମ ପୁତ୍ର ହରିବନ୍ଧୁ ମଧ୍ୟ ଜଣେ କବି ଥିଲେ । ତାଙ୍କର ରଚିତ କେତେକ କବିତା ବର୍ତ୍ତମାନ ମଧ୍ୟ ଶୁଣାଯାଏ । ପୁତ୍ରମାନେ ପିତାଙ୍କ ପରି ପରମାର୍ଥୀ ଥିଲେ । ପୁତ୍ରମାନଙ୍କ ହସ୍ତରେ ସଂସାରର ଗୁରୁଦାୟିତ୍ୱ ଅର୍ପଣ କରି ଭାଗବତ ସେବାରେ ନିଜକୁ ନିୟୋଜିତ କରିଥିଲେ । ପ୍ରତ୍ୟେହ ତିଳକ ଓ ଇଷ୍ଟଦେବ ପୂଜା ଉତ୍ତାରେ କବି ଶ୍ରୀ ଶ୍ରୀ ଚୈତନ୍ୟ ଚରିତାମୃତରୁ ଏକ ଅଧ୍ୟାୟ ଲେଖାଁ ପାରାୟଣ କରୁଥିଲେ । ଗୁରୁଙ୍କ ଆଦେଶମତେ କବି କେଶ, ବେଶ ଓ ନିଶ ତ୍ୟାଗ କରି ମସ୍ତକରେ ଶିଖା ଧାରଣ କରୁଥିଲେ । ଭାଗବତ ପ୍ରସାଦାନ୍ନ ବ୍ୟତୀତ ଅନ୍ୟ ଖାଦ୍ୟ ତାଙ୍କର ଅଭକ୍ଷ ଥିଲା । ଗୃହଜଞ୍ଜାଳ ପରିବେଶ କବିତା ରଚନା ପକ୍ଷରେ ଅନୁକୂଳ ନ ହେବାରୁ ସେ ବହୁ ସମୟ ଖାରଡ଼ା ମଠରେ ରହି ସେଠାରେ ବୈଷ୍ଣବ ଗ୍ରନ୍ଥ ଆଲୋଚନା କରୁଥିଲେ । ତାଙ୍କର ରଚିତ ପ୍ରୀତି ଚିନ୍ତାମଣି, ନାମ ଚିନ୍ତାମଣି, ପ୍ରେମ କଳ୍ପଲତା, ଓ ଶ୍ରୀରାଧା ଗୋବିନ୍ଦ ଲୀଳାମୃତ ପ୍ରଭୃତି ଗ୍ରନ୍ଥମାନ ପ୍ରକାଶିତ ହୋଇ ନ ଥିବାର ଆଶଙ୍କା ହୁଏ । 'ପ୍ରତିଷ୍ଠା' ସୂକରୀ ବିଷ୍ଠା ଉପାଧି ବ୍ୟାଧିରେବ ଚ' ଏହି ନୀତି ଧରି କବି ଭାବୋଦ୍ରେକ ମାତ୍ରେ ଅତି ମୂଲ୍ୟବାନ ସରସ ସୁନ୍ଦର ଶ୍ରୁତିମଧୁର ଯେଉଁ କବିତାଗୁଚ୍ଛ ଆବିଷ୍ଟ ଚିତ୍ତରେ ରଚନା କରୁଥିଲେ, ତାହା କୌଣସି

ପୁସ୍ତକ ବା ପୋଥି ଆକାରରେ ରଖିବା ତ ଦୂରର କଥା ବରଂ ନିକଟସ୍ଥ କୌଣସି ଲୋକଙ୍କୁ ଦେଇ ଦେଉଥିଲେ । ତାଙ୍କର ଅନୁଗତମାନଙ୍କ ମଧ୍ୟରୁ ହରିବନ୍ଧୁ ବେବର୍ତ୍ତା ଅତି ଅନ୍ତରଙ୍ଗ ଥିଲେ । ହରିବନ୍ଧୁ ନିଜେ ଜଣେ ଖ୍ୟାତନାମା ଗାୟକ ଓ କାବ୍ୟ ଶାସ୍ତ୍ରାନୁରାଗୀ ଭକ୍ତ ଥିଲେ । ତାଙ୍କର ଗୀତି ରଚନାମାନ ହରିବନ୍ଧୁ ଗ୍ରନ୍ଥାବଳୀ ନାମରେ ଖ୍ରୀ. ୧୯୩୩ରେ ଗଜପତି ମହାରାଜାଙ୍କ ଆନୁକୂଲ୍ୟରେ ମୁଦ୍ରିତ ଓ ପ୍ରକାଶିତ ହୋଇଅଛି । ଗୋପାଳକୃଷ୍ଣଙ୍କର ପଦାବଳୀ ସଂଗ୍ରହ ଓ ସଂରକ୍ଷଣ ତାଙ୍କର ପ୍ରଧାନ କାମ ଥିଲା । ସେ ପ୍ରତି ବର୍ଷ ଦଶହରା ଦିନ ଏ ସବୁ ବାହାର କରନ୍ତି ଓ ପୁନର୍ବାର ରଖି ଦିଅନ୍ତି । ବର୍ଷେ ଦେଖାଗଲା, ସେଥିରୁ କେତେକ କୀଟଦ୍ରଂଷ୍ଟ ହୋଇଛି । ଫଳରେ ଅନେକ ରଚନା ଚିରକାଳ ଲାଗି ଅପ୍ରକାଶିତ ରହିଗଲା । ବିଗତ ଶତାବ୍ଦୀର ଶେଷଭାଗରେ ଗୋପାଳକୃଷ୍ଣଙ୍କ କେତେକ ସଙ୍ଗୀତ ସର୍ବ ପ୍ରଥମେ ଦାମୋଦର ପଟ୍ଟନାୟକ ସଂଗ୍ରହ କରି ସେ ଗୁଡ଼ିକୁ ତାଙ୍କର ସଙ୍କଳିତ 'ସଙ୍ଗୀତ ସାଗର' ପୁସ୍ତକରେ ସନ୍ନିବେଶିତ କରିଥିଲେ । ଖ୍ରୀ. ୧୯୧୯ରେ ଗୋପାଳକୃଷ୍ଣଙ୍କର ବଂଶଧରମାନେ ପାରଳାଖେମୁଣ୍ଡି ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତିଙ୍କ ଆନୁକୂଲ୍ୟରେ ଗୋପାଳକୃଷ୍ଣ ପଦ୍ୟାବଳୀ ପ୍ରକାଶ କରିଥିଲେ । ଖ୍ରୀ. ୧୯୫୯-୬୦ରେ ବାବଜୀ ବୈଷ୍ଣବ ଚରଣ ଦାସ କବିଙ୍କର ପ୍ରାୟ ତିନିଶହରୁ ଅଧିକ ଅପ୍ରକାଶିତ ସଙ୍ଗୀତ ସଂଗ୍ରହ କରି ପ୍ରକାଶ କରିଛନ୍ତି । ଏହି ସଂଗ୍ରହଟି ଗୋପାଳକୃଷ୍ଣ ଗ୍ରନ୍ଥାବଳୀ ଓ ଗୋପାଳକୃଷ୍ଣ ପଦାବଳୀ ନାମରେ ନାମିତ ହୋଇଅଛି । ଏଥିରେ ମୋଟ ୬୧୯ ଗୋଟି ଗୀତ ସନ୍ନିବିଷ୍ଟ । ଖାରଡ଼ା ଗ୍ରାମସ୍ଥ ରାଧାକାନ୍ତ ମଠ ମହନ୍ତ ଗୋପାଳ ଦାସ ବାବାଜୀଙ୍କ ଠାରୁ ପାଇଥିବାରୁ ଏହି ରଚନାଗୁଡ଼ିକ ଯେ ଗୋପାଳକୃଷ୍ଣଙ୍କର ନିଜସ୍ୱ ରଚନା ଏ ବିଷୟରେ ସନ୍ଦେହର ଅବକାଶ ନାହିଁ । କବିଙ୍କର ଅଧିକାଂଶ ସଙ୍ଗୀତ ନିଜ ନାମରେ ଭଣିତା ହୋଇଥିଲେ ମଧ କେତେଗୋଟି ଗୀତ, ପାରଳାର ରାଜା ପ୍ରତାପରୁଦ୍ର, ଗୌରଚନ୍ଦ୍ର ଦେବ ଓ ପଦ୍ମନାଭ ଦେବଙ୍କ ନାମରେ ଭଣିତା ହୋଇଅଛି ।

କବିଙ୍କ ଶେଷ ଜୀବନ କନିଷ୍ଠ ପୁତ୍ରର ଅକାଳ ବିୟୋଗରେ ଓ ଏକମାତ୍ର କନ୍ୟାର ବୈଧବ୍ୟ ହେତୁ ଦୁଃଖମୟ ଥିଲେ ମଧ୍ୟ ସେ ପରମ ବୈଷ୍ଣବ ରୂପେ ହରି ଚିନ୍ତନରେ ମଗ୍ନ ରହି ଏ ସବୁ ପ୍ରତି ଦୃଷ୍ଟି ଦେଇ ନ ଥିଲେ । ଶ୍ରୀଗୁରୁଙ୍କୁ ମସ୍ତକ ଅର୍ପଣ କରିଥିବା ଯୋଗୁଁ ପୁତ୍ରର ମୃତ୍ୟୁଜନିତ ଅଶୌଚାଦି ମଧ ପାଳନ କରି ନ ଥିଲେ । ୭୮ ବର୍ଷ ବୟସରେ ୧୮୬୨ ଖ୍ରୀଷ୍ଟାବ୍ଦ ଫାଲଗୁନ ଶୁକ୍ଳ ଦ୍ୱିତୀୟାର ପୁର୍ବାହ୍ନରେ ତିଳକ ଶେଷ

କରି ଜୀବନର ଶେଷ ମୁହୂର୍ତ୍ତରେ ସେ ଖଡ଼ି ଖଣ୍ଡିକରେ ନିଜ ଶଯ୍ୟା ପାଖ କାନ୍ଥରେ ଲେଖିଦେଲେ ;

"ଜୀବ ଯିବାକୁ ହୋଇଲା ସଜ
ମନରେ ! ରାଧା ଗୋବିନ୍ଦ ଭଜ ।"

ତାହା ପରେ ସେ ପଦ୍ମାସନରେ ଉପବେଶନ କରି ନଶ୍ୱର ଶରୀର ତ୍ୟାଗ କଲେ । ମରଣ ପୂର୍ବରୁ କର୍ମକାଣ୍ଡମତେ ତାଙ୍କର ପ୍ରେତକ୍ରିୟାଦି ନ କରିବାକୁ ସେ ପୁତ୍ରମାନଙ୍କୁ ଉପଦେଶ ଦେଇ ଯାଇଥିଲେ । ବୈଷ୍ଣବାଚାର ମତେ ୧୨ଶ ଦିବସରେ ତାଙ୍କର ମହୋତ୍ସବ ଖାରଡ଼ା ମଠରେ ହୋଇଥିଲା ।

କବିଙ୍କ ବଂଶଧରମାନେ ପାରଳାଖେମୁଣ୍ଡି କରଣ ସାହିରେ ଗୋପାଳକୃଷ୍ଣ କୁଟୀରରେ ତାଙ୍କର ସ୍ମୃତି ବର୍ତ୍ତମାନ ଜାଗରୂକ ରଖି ଅଛନ୍ତି ; ପାରଳାଖେମୁଣ୍ଡି ଓ ଗୁଣପୁର ନଗର ପରିଷଦ ତାଙ୍କ ନାମରେ ପ୍ରତ୍ୟେକ ଏକ ପାଠାଗାର ପ୍ରତିଷ୍ଠା କରି ଏହାକୁ ପରିଚାଳନା କରୁଅଛନ୍ତି ଓ ପାରଳାଖେମୁଣ୍ଡି ଗୋପାଳକୃଷ୍ଣ ପାର୍କ ମଧ୍ୟରେ କବିଙ୍କର ସୁଦୃଶ୍ୟ ବିଗ୍ରହ ମଧ୍ୟ ବର୍ତ୍ତମାନ ବିଦ୍ୟମାନ

---

ପାଠକଙ୍କ ଆଗ୍ରହ ବୃଦ୍ଧି ନିମିତ୍ତ ପ୍ରଦତ୍ତ ଗୀତଗୁଡ଼ିକ ୧୯୩୫ମସିହା ପାରଳାଖେମୁଣ୍ଡି ଶ୍ରୀ ଗଜପତି ପ୍ରେସରେ ମୁଦ୍ରିତ ଗୋପାଳକୃଷ୍ଣ ପଦ୍ୟାବଳୀ ୩ୟ ସଂସ୍କରଣରୁ ଗୃହୀତ ।



# ଭାଷାବିଜ୍ଞାନୀ ପଣ୍ଡିତ ଗୋପୀନାଥ ନନ୍ଦ

ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ୧୮୬୯ ମସିହା ଅଗଷ୍ଟ ମାସ ୨୧ ତାରିଖରେ ଗଞ୍ଜାମ ଜିଲ୍ଲାର ପାରଳାଖେମୁଣ୍ଡି ସହରରେ ଓଡ଼ିଶାର ବିଖ୍ୟାତ ପଣ୍ଡିତ, ସମାଲୋଚକ ଓ ଭାଷାବିଜ୍ଞାନୀ ପଣ୍ଡିତ ଗୋପୀନାଥ ଜନ୍ମ ଗ୍ରହଣ କରିଥିଲେ । ନନ୍ଦେ ଉତ୍କଳୀୟ ଶ୍ରେଣୀର ବ୍ରାହ୍ମଣ । ପ୍ରାୟ ୧୫୦ ବର୍ଷ ତଳେ ପାରଳାଖେମୁଣ୍ଡିର ରାଜା ନନ୍ଦଙ୍କ ପୁର୍ବପୁରୁଷଙ୍କୁ ପୁରୀ ନିକଟସ୍ଥ ବୀରବଳଭଦ୍ରପୁର ଶାସନରୁ ନେଇ ପାରଳାରେ ରଖାଇଥିଲେ । ପ୍ରାୟ ସେହି ସମୟକୁ ବା ତାହାର ଅଳ୍ପଦିନ ପରେ ଗଞ୍ଜାମ ଉତ୍ତର ସରକାର ସଙ୍ଗେ ଇଂରେଜ ଶାସିତ ମାନ୍ଦ୍ରାଜ ପ୍ରେସିଡେନ୍ସ୍ ଅନ୍ତର୍ଗତ ହେଲା ଏବଂ ବିଦେଶୀ ଇଂରେଜମାନଙ୍କ ପାଖରେ ତେଲେଙ୍ଗା ଦେଶରେ ପରିଣତ ହେଲା । ଗୋପୀନାଥଙ୍କର ପିତା ରଘୁନାଥ ନନ୍ଦଶର୍ମା ବୈଦ୍ୟଶାସ୍ତ୍ରରେ ପଣ୍ଡିତ ଥିଲେ । ଗୋପୀନାଥ ପ୍ରଥମେ ନିଜ ପିତାଙ୍କ ନିକଟରେ ଅମରକୋଷ ଅଭିଧାନ ପଢ଼ିଲେ । ତା'ପରେ ସେ ବୈଦ୍ୟଶାସ୍ତ୍ର ଅଧ୍ୟୟନ କଲେ । ସେତେବେଳେ ଚାଟଶାଳୀମାନଙ୍କରେ ଓଡ଼ିଆ ସଙ୍ଗେ ଲେତେଙ୍ଗା ଭାଷା ମଧ୍ୟ ଶିକ୍ଷା ଦିଆଯାଉଥିଲା । ତେଣୁ ଗୋପୀନାଥ ଓଡ଼ିଆ ଓ ତେଲୁଗୁ ଉଭୟ ଶିକ୍ଷା କଲେ । ବର୍ତ୍ତମାନର ମହାରାଜା କଲେଜ ସେ ସମୟକୁ ମାତ୍ର ମଧ୍ୟ ଇଂରାଜି ବିଦ୍ୟାଳୟ ଥିଲା । ୧୮୮୨ ମସିହାରୁ ୧୮୮୭ ମସିହା ପର୍ଯ୍ୟନ୍ତ ଗୋପୀନାଥ ସେଠାରେ ପଢି ସାମାନ୍ୟ ଇଂରାଜୀ ଶିକ୍ଷା ଲାଭ କରିବାର ସୁଯୋଗ ମଧ୍ୟ ପାଇ ପାରିଥିଲେ । ଇଂରଜୀରେ ୩ୟ ଫରମ ଶିକ୍ଷାକରି ସେ ବିଦ୍ୟାଳୟ ତ୍ୟାଗ କଲେ । ପରେ ଓଡ଼ିଆ ଭାଷାରେ ଲୋଅର ସେକେଣ୍ଡାରୀ ପରୀକ୍ଷାରେ ସେ ଉତ୍ତୀର୍ଣ୍ଣ ହୋଇଥିଲେ ।

ବିଦେଶୀ ଭାଷାମାନଙ୍କର ନିଷ୍ପେଷଣ ମଧ୍ୟରେ ଜାତୀୟ ଆତ୍ମଜ୍ଞାନ ତାଙ୍କର ସବୁବେଳେ ଉଦ୍‌ବୁଦ୍ଧ ଥିଲା । ଫଳତଃ ମାତୃଭାଷା ପ୍ରତି ତାଙ୍କର ଶ୍ରଦ୍ଧା ଓ ଆଦର ବଢୁଥାଏ । ସେ ସାମାଜିକ ଭାବରେ ଗୌଡ଼ୀୟ ବୈଷ୍ଣବ ଥିଲେ । ପାରଳାଖେମୁଣ୍ଡିରେ ଗୌଡୀୟ ବୈଷ୍ଣବ ଧର୍ମର ଖୁବ ପ୍ରଭାବ ଥିଲା । ଓଡ଼ିଆରେ ଗୌଡୀୟ ବୈଷ୍ଣବ ଭଜନମାନ ତାଙ୍କୁ ଖୁବ୍ ଆନନ୍ଦ ଦେଉଥିଲା । କ୍ରମେ ସେ ବୈଷ୍ଣବ ଧର୍ମ ପ୍ରତି ବିଶେଷ ଭାବରେ ଆକୃଷ୍ଟ ହେଲେ । ଦିନେ ସେ ପିତାଙ୍କ ଅନୁପସ୍ଥିତିରେ ମାତା ଓ ଜ୍ୟେଷ୍ଠ ଭ୍ରାତାଙ୍କୁ ନଜଣାଇ ବୃନ୍ଦାବନ ଯାତ୍ରା ଉଦ୍ଦେଶ୍ୟରେ ଘରୁ ବାହାରିଗଲେ । ପିତା ଘରକୁ

ଫେରି ସମ୍ବାଦ ପାଇଲେ । ଖୋଜି ଖୋଜି ଆସି କଟକରେ ପହଞ୍ଚି ସେଇଠାରୁ ତାଙ୍କୁ ଫେରାଇ ନେଲେ । ତାଙ୍କର ପାଠ ପଢ଼ା ସେତିକିରେ ପରିସମାପ୍ତି ହୁଏ । ତାଙ୍କ ଜୀବନର ଅଧିକାଂଶ ସମୟ ପାରଳାଖେମୁଣ୍ଡି ସହରରେ ହିଁ କଟିଥିଲା । ସ୍ଥାନୀୟ ମହାରାଜାଙ୍କ ହାଇସ୍କୁଲ ଓ କଲେଜରେ ସେ ସଂସ୍କୃତ ଅଧ୍ୟାପକ ରୂପେ ଜୀବନ କଟାଇଥିଲେ । ଅଧ୍ୟୟନ ଓ ଅଧ୍ୟାପନା ତାଙ୍କର ଦୈନନ୍ଦିନ କର୍ମ ଥିଲା । ଅବସର କାଳରେ ଅନୁବାଦ, ସମାଲୋଚ଼ନା ଓ ଭାଷତତ୍ତ୍ୱର ଆଲୋଚ଼ନା କରି ପରେ ପରେ ସେ ଓଡ଼ିଆରେ ପ୍ରତି କ୍ଷେତ୍ରରେ ଶକ୍ତିଶାଳୀ ପୁସ୍ତକମାନ ଲେଖି ଚ଼ାଲିଥିଲେ । ଜୀବନ ସଂଗ୍ରାମର ନାନା ଘାତ ପ୍ରତିଘାତ ତାଙ୍କୁ ଏହି ପଥରୁ ବିଚ୍ୟୁତ କରି ପାରି ନ ଥିଲା ।

ଗୌଡ଼ୀୟ ବୈଷ୍ଣବ ଦୀକ୍ଷା ତେଲେଙ୍ଗାଙ୍କର ସାମାଜିକ ଭାବ ନୁହେଁ । ଅଥଚ ଓଡ଼ିଆ ଭାଷା, ସାହିତ୍ୟ ଓ ଭାବ ସେଥିରେ ସର୍ବଦା ପ୍ରଭାବିତ ଓ ଜଡ଼ିତ । ତେଣୁ ଏହି ଗୌଡ଼ୀୟ ବୈଷ୍ଣବ ଭାବରେ ପ୍ରଭାବ ଗୋପୀନାଥଙ୍କର ଓଡ଼ିଆ ଭାବକୁ କିପରି ଜୀବନ୍ତ ଓ ଶକ୍ତିମାନ ରଖିଥିଲା ତାହା ସମସ୍ତେ ଅନୁମାନ କରି ପାରିବେ । ଓଡ଼ିଆରେ ପୁରାଣ ଓ ବୈଷ୍ଣବ ଧର୍ମଗ୍ରନ୍ଥମାନ ପାଠ କରିବା ବହୁତ ଦିନରୁ ତାଙ୍କର ଅଭ୍ୟାସ ହୋଇ ସାରିଥିଲା । ତା ପରେ ସେ ପ୍ରାଚୀନ ଓଡ଼ିଆ କାବ୍ୟ ଗ୍ରନ୍ଥମାନଙ୍କର ପରିଶୀଳନ କଲେ । ଓଡ଼ିଆ ଭାଷା ପ୍ରତି ତାଙ୍କର ସମଧିକ ଆଦର ଓ ପ୍ରୀତି । ତହିଁରେ ପୁଣି ସଂପୂର୍ଣ୍ଣ ଭିନ୍ନ ପ୍ରାକୃତିକ ତେଲେଙ୍ଗା ଭାଷାର ନସ୍ତେଷଣରେ ଜୀବନ୍ତ ଆତ୍ମଜ୍ଞାନ ଉପରେ ଆଘାତ । ବଙ୍ଗଳା ହିନ୍ଦି ପରି ତେଲେଙ୍ଗା ଭାଷାର ପ୍ରଭାବ ଓଡ଼ିଆ ଭାଷା ଉପରେ ପଡ଼ିବା ସମ୍ଭବ ନୁହେଁ । ପଣ୍ଡିତ ନୀଳକଣ୍ଠଙ୍କ ମତରେ ସେଥିପାଇଁ ଏତେ ଦିନ ପରେ ମଧ୍ୟ ଗଞ୍ଜାମର ଘୁମୁସରରେ ବିଶୁଦ୍ଧ ଓଡ଼ିଆ ଦେଖିବାକୁ ମିଳେ । ଗୋପୀନାଥ ସେହି ବିଶୁଦ୍ଧ ଓଡ଼ିଆର ଉପାସକ ଥିଲେ । ଅନ୍ୟ ଭାଷାର ବିବ୍ରତ ହୋଇ ଆଲୋଚ଼ନାରେ ପଥଭ୍ରଷ୍ଟ ହେବା ତାଙ୍କ ପକ୍ଷରେ ସମ୍ଭବ ନଥିଲା । ସାରଳା ଦାସଙ୍କ ମହାଭାରତ, ବଳରାମଦାସଙ୍କ ରାମାୟଣ ପ୍ରଭୃତିରେ ବିଶୁଦ୍ଧ ଭାଷା ପ୍ରୟୋଗ ତଥା କାବ୍ୟମାନଙ୍କରେ ସଂସ୍କୃତ ବ୍ୟାକରଣର ନିୟମ ଦୃଷ୍ଟିରେ ବେଳେ ବେଳେ ଘୋର ସ୍ୱାତନ୍ତ୍ର୍ୟମାନ ଦେଖି ଭାଷାର ଅଭ୍ୟନ୍ତର ଦେଖିବାପାଇଁ ଗୋପୀନାଥଙ୍କର ମନ ବଳିଲା । ସେ ଗଭୀର ମମତା, ଆଦର ଓ ଅନୁସନ୍ଧିତ୍ସାର ସହିତ ପ୍ରାକୃତ ଓ ସଂସ୍କୃତ ବ୍ୟାକରଣାଦିର ଚର୍ଚ୍ଚାରେ ମନ ଦେଲେ । ସଂସ୍କୃତରେ ବ୍ୟୁତ୍ପତ୍ତି ବିନା ପ୍ରାକୃତର ଆଲୋଚନା ସହଜ ନୁହେଁ ଜାଣି ସେ ସଂସ୍କୃତ ବ୍ୟାକରଣ ଓ ନାଟକମାନ ଭଲ କରି ପଢ଼ି ସାରିବା ପରେ ପାଲି ଓ ପ୍ରାକୃତର ବ୍ୟାକରଣ ତଥା କାବ୍ୟମାନ ଚ଼ର୍ଚ୍ଚା କଲେ

ତାହା ସହିତ ଶବ୍ଦ ଓ ବ୍ୟାକରଣ ତତ୍ତ୍ୱର ଅନୁସନ୍ଧାନ ତାଙ୍କର ଏକ ପ୍ରକାର ବ୍ରତ ହୋଇ ପଡ଼ିଲା । ଓଡ଼ିଆ ଛାନ୍ଦର ବିଶେଷତ୍ୱ ମଧ୍ୟ ତାଙ୍କର ଦୃଷ୍ଟି ଆକର୍ଷଣ କଲା । ପ୍ରଥମେ ସେ ଓଡ଼ିଆରେ କ୍ଷୁଦ୍ର କ୍ଷୁଦ୍ର କବିତାମାନ ଲେଖି ସଂସ୍କୃତର ବହୁତ କାବ୍ୟ ଗ୍ରନ୍ଥ ଅନୁବାଦ କଲେ । ସଙ୍ଗୀତ କବିତାର ଗୋଟିଏ ଅଙ୍ଗ । ସ୍ୱର ନିୟମରେ ଅକ୍ଷର ବିନ୍ୟାସ ନ ହେଲେ କବିତା ବ୍ୟଙ୍ଗ ହୁଏ । କବିତାର ଛନ୍ଦକୁ ସାର୍ବଜନୀନ କରିବାପାଇଁ ସଂସ୍କୃତ ଗୁରୁ ଲଘୁ ସମ୍ୱଳିତ ଗଣ ଓ ମାତ୍ରା ନିୟମକୁ ଓଡ଼ିଆରେ ଭର୍ତ୍ତି କରିବାର ସେ ପ୍ରୟାସ କଲେ ।

ତାଙ୍କୁ ଯେତେବେଳେ ୩୫ ବର୍ଷ, ସେତେବେଳେ ୧୯୦୪ ମସିହାରେ କଟକରେ ଅନୁଷ୍ଠିତ ଉତ୍କଳ ସମାଜର ପ୍ରଥମ ଅଧିବେଶନରେ, ଓଡିଆରେ ଖଣ୍ଡିଏ ବିଶୁଦ୍ଧ ଅଭିଧାନ, ପୂର୍ଣ୍ଣାଙ୍ଗ ବ୍ୟାକରଣ ଓ ଭାଷା ସାହିତ୍ୟର ଇତିହାସ ଏହିପରି ତିନିଖଣ୍ଡ ଗ୍ରନ୍ଥ ପ୍ରକାଶ କରିବା ନିତାନ୍ତ ଆବଶ୍ୟକ ବୋଲି ସଂକଳ୍ପ କରି ଏକ ପ୍ରସ୍ତାବ ଗୃହୀତ ହୋଇଥିଲା । ପଣ୍ଡିତ ଗୋପୀନାଥ ଏହା ପୂର୍ବରୁ ଦୀର୍ଘ ୭ବର୍ଷ କାଳ ଦୈନିକ ଅନ୍ୟୁନ ଦଶ ଘଣ୍ଟା ପରିଶ୍ରମ କରି 'ଶବ୍ଦତତ୍ତ୍ୱ ବୋଧ ଅଭିଧାନ' ପ୍ରଣୟନ କରି ସାରିଥିଲେ । ଏହା ୧୯୦୩ ମସିହାରେ ଲେଖା ସରିଥିଲା । ୧୯୦୫ ମସିହାରେ ଉତ୍କଳ ସାହିତ୍ୟ ସମାଜ ଅଧିବେଶନରେ ଏହି ଗ୍ରନ୍ଥ ସମାଦୃତ ହୋଇଥିଲା ଓ ସାହିତ୍ୟ ସମାଜର ସଭାପତି ଭକ୍ତକବି ମଧୁସୂଦନ ଏଥିପାଇଁ ଗ୍ରନ୍ଥକାର ପ୍ରଶଂସାହ ବୋଲି ତା ୧୩.୧୧.୧୯୦୫ରିଖରେ ଏକ କ୍ଷୁଦ୍ର ପତ୍ର ଦ୍ୱାରା ପଣ୍ଡିତ ମହାଶୟଙ୍କୁ ଜଣାଇ ଦେଇଥିଲେ । ଏହା ପୂର୍ବରୁ ଓଡ଼ିଆ ଅଭିଧାନ କହିଲେ ସଂସ୍କୃତ ଓ ତଦ୍‌ଭବ ଶବ୍ଦମାନଙ୍କର ଗୋଟିଏ ବିରାଟ ତାଲିକାକୁ ବୁଝାଉଥିଲା । ମାତ୍ର ପଣ୍ଡିତ ଗୋପୀନାଥ ପ୍ରଥମେ ଓଡ଼ିଆ ସାହିତ୍ୟର ବିଭିନ୍ନ ପ୍ରକାଶିତ ଓ ଅପ୍ରକାଶିତ ଗ୍ରନ୍ଥ, ବିଭିନ୍ନ ଜିଲ୍ଲାରେ ବ୍ୟବହୃତ ଭାଷା ଓ ଶବ୍ଦ ଆଲୋଚନା କରି ଦେଶଜ ଶବ୍ଦମାନଙ୍କର ବ୍ୟୁତ୍ପତ୍ତି ଓ ବ୍ୟବହାର ଲୋକପ୍ରିୟ କରାଇବାକୁ ଉଦ୍ୟମ କରିଥିଲେ । ଏହି ଗ୍ରନ୍ଥ ପ୍ରଣୟନ ସେ ଅସାଧାରଣ ଧୈର୍ଯ୍ୟ, ଅଧ୍ୟବସାୟ ଓ ଗବେଷଣାତ୍ମକ ଚିନ୍ତା ନିୟୋଗ କରିଥିଲେ । ଏଥିପାଇଁ ତାଙ୍କୁ ଓଡ଼ିଶାର ସବୁ ପ୍ରକାର ପୁରାଣ, ରାମାୟଣ, ମହାଭାରତକ ଓ ସମକାଳୀନ ରଚନାମାନଙ୍କୁ ବାରମ୍ୱାର ପଢ଼ିବାକୁ ପଡ଼ିଥିଲା । ନାନା ସଂସାର-ଜଞ୍ଜାଳ ମଧରେ ଶିକ୍ଷାଦାନ କାର୍ଯ୍ୟ ଅବ୍ୟାହତ ରଖି ଗ୍ରନ୍ଥକାର ଯେ ଏହା କରି ପାରିଥିଲେ ଏହା ତାଙ୍କର ଅସାଧାରଣ ଧୀମତ୍ତା ଓ ବିଚକ୍ଷଣ ବୁଦ୍ଧିର ପ୍ରମାଣ ଦିଏ । ସାମାନ୍ୟ ଆଲୋଚନା ନିମିତ୍ତ ଏହି ବିରାଟ ଅଭିଧାନରୁ କେତେଗୋଟି ପ୍ରତିନିଧିମୂଳକ ଶବ୍ଦ ନିଆଯାଉ । ସବୁ ଶ୍ରେଣୀର ସବୁ ଅଞ୍ଚଳର ଲୋକ ବ୍ୟବହୃତ ବିଭିନ୍ନ

ପ୍ରକାରର ଶବ୍ଦ ଏଥିରେ ସ୍ଥାନ ପାଇଥିଲା

କ)ଓଳିଆ-ଯେଉଁଥିରେ ଶସ୍ୟ ଇତ୍ୟାଦି ପାଳ ଗୁଡ଼ାଇ ବାନ୍ଧି ରଖନ୍ତି । (ଦେଶଜ)

ଯଥା-ଯେଉଁମାନେ ତହିଁ କର୍ପୂର ମାଳିଆ
ବଢ଼ିଛି ତାଙ୍କର ଗଣ୍ଡି ଯେସନ ଓଳିଆ ।
(ମହାଭାରତ କୃଷ୍ଣସିଂହ ଆଦ୍ୟପର୍ବ)

ଖ)ମହାକୁଡ଼ ମହାଖୁଡ଼- ଗାଈମାନଙ୍କର ସଂଖ୍ୟା ବିଶେଷ । ଯଥା:

ସହସ୍ରେକ ଗାଈ ହେଲେ ଗୋ ଗୋଷ୍ଠେକ ବୋଲି
ସହସ୍ରେ ଗୋଷ୍ଠି ହୋଇଲେ ହୁଏ ଏକ ପଲି,
ଶତେ ପଲିରେ ଏକ ଲଉଡ଼ିଏ ଜାଣି,
ଶତେ ଲଉଡ଼ିରେ ଏକ ମହାଖୁଡ଼ ଗଣି ।
(ସାରଳା ମହାଭାରତ-ଆଦ୍ୟପର୍ବ)

ଗ)ବେରଣ୍ଡ (ଭରଣ୍ଡ)ଦେଶଜ- ମୁଖରେ ବାହାରିଥିବା ବ୍ରଣ ବିଶେଷ ।

ଯଥା-ପିଠିରେ ତିନି କୁଜ ବେକରେ ଗଳଗଣ୍ଡ,
ପେଟରେ ପିଳୋହି ପୁଣି ମୁଖରେ ବେରଣ୍ଡ
(ନୃସିଂହ ପୁରାଣ, ପଞ୍ଚମ ତରଙ୍ଗ)

ଘ)ବୋଳ-ତାମ୍ବୁଳରସ

ଯଥା- 'ତାମ୍ବୁଳ ବୋଳରେ ଜର ଜର ଅଧର ।'
(କୋଟି ବ୍ରାହ୍ମାଣ୍ଡ ସୁନ୍ଦରୀ)

ଚାଉଳ ପ୍ରଭୃତିରେ ଥିବା ଅତି ସୂକ୍ଷ୍ମ କୁଣ୍ଡା ଲେପ
'ଶିର ସୁନ୍ଦର ଦିଶେ ଯାବକ ବୋଳେ
ଶରଣ ବୋଲି ପଡ଼ିଲା ।'
(କିଶୋର ଚନ୍ଦ୍ରାନନ୍ଦ ଚଂପୂ)

ଙ)ସରା, ଶରା-ଶରାବ ଶବ୍ଦର ଅପଭ୍ରଂଶ, ମୃତ୍‌ପାତ୍ର ବିଶେଷ ।

'ଅଜ୍ଞାନେ ଧରାକୁ କର ଶରା ଜ୍ଞାନ'
(ରାଧାନାଥ-ଦରବାର)

ଚ)ତୋରାଣି ବା ତୋଡ଼ାଣି ବା ତୁଡ଼ାଣି-(ଦେଶଜ ବା ତୋୟାନ୍ନ ଶବ୍ଦଜ)
ଅନ୍ନରେ ମିଶିଥିବା ପର୍ଯ୍ୟୁଷିତ ପାଣି ।

ଯଥା-ଆଣି ପାର ଯେବେ କାଞ୍ଜି ତୋରାଣି
ପିଇଲେ ଆରୋଗ୍ୟ ହୋଇବି ପୁଣି ।

ଛ) ବଗଚର ବା ବଗତରା-ସଡ଼କ ବା ରାସ୍ତା ପାର୍ଶ୍ୱରେ ଯେଉଁ ସ୍ଥାନରୁ ମାଟି ଖୋଳା ହୋଇ ସଡ଼କରେ ପଡ଼େ, ସାଧାରଣତଃ ସେଠାରେ ଖାଲ ହେବାରୁ ଅଳ୍ପ ଅଳ୍ପ ପାଣି ରହେ ଏବଂ ମାଛ ଗେଣ୍ଡା ଖୋଜିବା ଉଦ୍ଦେଶ୍ୟରେ ସେଠାରେ ବଗମାନେ ବସନ୍ତି, ଏଥିଯୋଗୁଁ ତାକୁ ବଗଚର ବା ବଗଚ଼ରା ବୋଲାଯାଏ ।

ଜ)ଚ଼ତୁଃସମ- ଚନ୍ଦନ, ଅଗୁରୁ,କସ୍ତୁରୀ, କୁଙ୍କୁମ ଏହି ଚ଼ାରି ଦ୍ରବ୍ୟ;
ଲବଙ୍ଗ, ସୈନ୍ଧବ, ହରିତକୀ, ଜୁଆଣି ଏହି ଚାରି ଦ୍ରବ୍ୟ ।

ଝ)ମଢ଼ିଆଳ-ପାଳଟଲୁଗା, ମଳିଆ ଲୁଗା । (ଦେଶଜ)

ଯଥା-ବୋଲନ୍ତି ମଢ଼ିଆଳ ଦିଅ ତୁ ଦୁଇ ଖଣ୍ଡ
ପିନ୍ଧିଣ ଦୁଇ ଭାଇ ବୋଲିବୁ ରାଜଦାଣ୍ଡ ।
(ନୃସିଂହ ପୁରାଣ, ସପ୍ତମ ତରଙ୍ଗ)

ଞ)ମହାକ୍ଷତ୍ରୀୟ- ଏହା ସଂସ୍କୃତ ଶବ୍ଦ କିନ୍ତୁ ଭିନ୍ନାର୍ଥରେ ଦେଶଜ ପ୍ରାୟ ।
ବୃହତବ୍ୟାଘ୍ର, ଅତି ବଡ଼ ବାଘ ।

ଅର୍ଥାଭାବରୁ ବହୁ ଦିନ ଧରି ଅଭିଧାନ ଅପ୍ରକାଶିତ ଥିଲା । ଉତ୍କଳ ସାହିତ୍ୟ ସମାଜ ଉଦ୍ୟମରେ କେବଳ ବାମଣ୍ଡା ରାଜାଙ୍କ ପାଖରୁ ଶହେ ଟଙ୍କା ଓ ଖଡ଼ିଆଳ ରାଜାଙ୍କ ପାଖରୁ ପଚ଼ାଶ ଟଙ୍କା ସାହାଯ୍ୟ ମିଳିଥିଲା । ସେଥିରେ ଗ୍ରନ୍ଥ ପ୍ରକାଶ ଅସମ୍ଭବ ଜାଣି ସାହିତ୍ୟ ସମାଜର କର୍ମକର୍ତ୍ତାମାନେ ଗ୍ରନ୍ଥାକାରଙ୍କୁ ଗ୍ରାହକ ଖୋଜିବାକୁ କହିଲେ । ପଣ୍ଡିତ ଗୋପୀନାଥ ନିଜ ବ୍ୟୟରେ ବହୁସ୍ଥାନ ଭ୍ରମଣ କରି ତିନି ଶହ ଗ୍ରାହକ ଠିକ କଲେ ମାତ୍ର ତଥାପି ଗ୍ରନ୍ଥ ମୁଦ୍ରଣ ହୋଇ ପାରିଲା ନାହିଁ । ଏହି ସମୟରେ ଧରାକୋଟ ରାଜା ମାନ୍ୟବର ମଦନ ମୋହନ ସିଂହଦେଓ ଓ ଗଞ୍ଜାମ-ମଧୁ ହରିହର ପଣ୍ଡାଙ୍କ ଉଦ୍ୟମରେ ମାନ୍ଦ୍ରାଜ ସରକାର ପୁସ୍ତକ ଛପା ସରିଗଲେ ପଚାଶ ଖଣ୍ଡ ଓ ବିହାର-ଓଡ଼ିଶା ସରକାର ଶହେ ଖଣ୍ଡ କିଣି ନେବାର ପ୍ରତିଶ୍ରୁତି ଦେଇ ଯଥାକ୍ରମେ ଏକ ହଜାର ଓ ଦୁଇହଜାର ଟଙ୍କା ଅନୁଦାନର ଘୋଷଣା କଲେ । ଧରାକୋଟ ରାଜା ନିଜେ ଦୁଇ ଶହ ଟଙ୍କା ସାହାଯ୍ୟ ଦେଲେ । ଏହା ଉତ୍ତାରେ ପାରଳାଖେମୁଣ୍ଡି ମହାରାଜା ଗ୍ରନ୍ଥ ପ୍ରକାଶ ନିମିତ୍ତ ତିନି ହଜାର ଟଙ୍କା ଓ ଗ୍ରନ୍ଥର ଅବିକୃତ ପାଣ୍ଡୁଲିପି ଲେଖନ ନିମିତ୍ତ ଗ୍ରନ୍ଥାକାରଙ୍କୁ ଛଅ ମାସ ସବେତନ ଛୁଟି ଦେବା ଫଳରେ ୧୯୧୬ ମସିହାରେ ଗ୍ରନ୍ଥ ପ୍ରକାଶ ସମ୍ଭବ ହୋଇ ପାରିଥିଲା । ପାରଳାଖେମୁଣ୍ଡିର

ମହାରାଜା ଏହି ପ୍ରକାଣ୍ଡ ଗ୍ରନ୍ଥର ପରିପୋଷକ ଓ ଜୀବନଦାତା ଅଟନ୍ତି ।

ବ୍ୟାକରଣ ପ୍ରଣୟନ ଉଦ୍ଦେଶ୍ୟରେ ଆଠ ବର୍ଷ କଠିନ ପରିଶ୍ରମ କରି ଗୋପୀନାଥ ଓଡ଼ିଆ ଭାଷାର ସମଗ୍ର ତତ୍ତ୍ୱ ସମ୍ୱଳିତ ଖଣ୍ଡିଏ ବୃହତ ବ୍ୟାକରଣ କ୍ରମଶଃ ଲେଖି ଉତ୍କଳ ସାହିତ୍ୟ ଓ ମୁକୁରରେ ପ୍ରକାଶ କରିଥିଲେ । ଏହା ସମ୍ପୂର୍ଣ୍ଣ କରିବାର ଯୋଜନା ଥିଲା ବୋଲି ସେ ଅଭିଧାନ ମୁଦ୍ରଣ ସମୟରେ ନିଜେ ପ୍ରକାଶ କରିଥିଲେ ।

ଓଡ଼ିଆ ଭାଷାତତ୍ତ୍ୱ ତାଙ୍କର ଅନ୍ୟ ଏକ ବିରାଟ କୃତି । ଅଣ-ଓଡ଼ିଆ ଭାଷା-ବିଜ୍ଞାନୀମାନେ ଇଂରେଜି ବା ଅନ୍ୟ କୌଣସି ଇଉରୋପୀୟ ଭାଷା ଅନଭିଜ୍ଞ ଏହି ପଣ୍ଡିତ ଜଣକ ପ୍ରାୟ ସତୁରୀ ବର୍ଷ ପୂର୍ବେ କିପରି ଏ ପ୍ରକାର ବିରାଟ ଗବେଷଣା-ମୂଳକ ଗ୍ରନ୍ଥ ପ୍ରଣୟନ କରିବାକୁ ସକ୍ଷମ ହେଲେ ସେ ବିଷୟରେ ବିସ୍ମୟ ପ୍ରକାଶକରି ଅଛନ୍ତି । ସଂସ୍କୃତରେ ପଣ୍ଡିତ ଥାଇ ପ୍ରାକୃତ ଓଡ଼ିଆର ଆଲୋଚନାରେ ସେ ଯେଉଁ ମୌଳିକ ସ୍ୱାଧୀନତା ଦେଖାଇ ଅଛନ୍ତି, ତାହା ତାଙ୍କର ଅନନ୍ୟ ସାଧାରଣ ପ୍ରତିଭା ଓ ସାହସର ପରିଚାୟକ । ଏକ ହଜାର ପୃଷ୍ଠାର ଏହି ବିରାଟ ଗ୍ରନ୍ଥରେ ଓଡ଼ିଆ ଭାଷା ଓ ବ୍ୟାକରଣର ପ୍ରକୃତି ତନ୍ନ ତନ୍ନ କରି ସେ ପର୍ଯ୍ୟାଲୋଚନା କରି ଅଛନ୍ତି । ପଣ୍ଡିତ ନୀଳକଣ୍ଠ କହନ୍ତି, ଅଭିଧାନ ଶେଷ କରିବାର ଠିକ ପରେ ପରେ ସେ ବ୍ୟାକରଣ ସମ୍ୱନ୍ଧୀୟ ଭାଷାତତ୍ତ୍ୱର ଆଲୋଚନାରେ ଲାଗିଲେ । ଆଲୋଚନାତ୍ମକ ପ୍ରବନ୍ଧମାନ ଭିନ୍ନ ଭିନ୍ନ ମାସିକ ପତ୍ରିକାରେ ପ୍ରକାଶ କଲେ । ପ୍ରତିବାଦମାନ ହେଲା । ପଣ୍ଡିତ ଗୋପୀନାଥ ଆଦର୍ଶରେ ଦୃଢ଼ ରହି କ୍ରମେ ନୀତି ପାଠରେ ଦଣ୍ଡାୟମାନ ହୋଇ ପ୍ରତିବାଦମାନଙ୍କର ଉତ୍ତର ଦେଲେ । ଦେଶର ସାହିତ୍ୟ ସେତେବେଳେ ଯେ ଦଶାରେ ଥିଲା ସେଥିରେ ସାହିତ୍ୟସେବୀ ବୋଲି ଯେଉଁମାନେ ପରିଚିତ ଥିଲେ ସେମାନଙ୍କ ମଧ୍ୟରୁ ଅଧିକାଂଶ ପଣ୍ଡିତଙ୍କର ଯୁକ୍ତିର ଗଭୀରତା ଓ ମୌଳିକତା ବୁଝିବାକୁ ସମର୍ଥ ନ ଥିଲେ ସତ ମାତ୍ର କେହି କେହି ପୁରୋଦୃଷ୍ଟି-ସମ୍ପନ୍ନ ଅନୁଶୀଳନେଚ୍ଛୁ ତାଙ୍କର ଏକାବେଳେ ଭକ୍ତ ପରି ହୋଇ ପଡ଼ିଲେ । ୧୯୨୭ ମସିହାରେ ପଣ୍ଡିତ ଗୋପୀନାଥଙ୍କର ଓଡ଼ିଆ ଭାଷାତତ୍ତ୍ୱ ଗ୍ରନ୍ଥର ପାଣ୍ଡିତ୍ୟପୂର୍ଣ୍ଣ ଗ୍ରନ୍ଥ ପ୍ରବେଶରେ ମନୀଷୀ ନୀଳକଣ୍ଠ ଏହା ଉଲ୍ଲେଖ କରି ଅଛନ୍ତି । ପଣ୍ଡିତ ଗୋପୀନାଥଙ୍କର ଓଡ଼ିଆ ଭାଷାତତ୍ତ୍ୱ ଏକା ଓଡ଼ିଆରେ କାହିଁକି ଭାରତର ପ୍ରଚଳିତ ଭାଷାରେ ଗୋଟିଏ ନୂତନ ଗ୍ରନ୍ଥ । ଜୀବନ୍ତ ଚଳିତ ଭାଷାର ଶକ୍ତି ଓ ଅଭିବୃଦ୍ଧି ଉପରେ ଶିକ୍ଷାର ଓ ସଭ୍ୟତାର ପ୍ରକୃତି ଓ ପ୍ରସାର ନିର୍ଭର କରେ । ଭାଷାତତ୍ତ୍ୱର ଅନୁସନ୍ଧାନ ଓ ପ୍ରଚାରରେ ଭାଷା ସାର୍ବଜନୀନ ଓ ବିଦେଶୀ ପକ୍ଷରେ ସୁଖସେବ୍ୟ ଓ ସୁଶିକ୍ଷଣୀୟ ହୁଏ । ମାତ୍ର ଭାଷାଚର୍ଚ୍ଚା ସେ ପର୍ଯ୍ୟନ୍ତ ଅବହେଳିତ ହୋଇଥିଲା । ଶୃଙ୍ଖଳାବଦ୍ଧ ଭାବରେ ପଣ୍ଡିତ ଗୋପୀନାଥ ଭାଷାତତ୍ତ୍ୱ

ଗ୍ରନ୍ଥ ଆରମ୍ଭ କଲେ । ଗ୍ରନ୍ଥର କ୍ରିୟାଭାଗ ଶେଷ ହେବା ପୂର୍ବରୁ ତାଙ୍କର ଇହଲୀଳା ସମ୍ବରଣ ହୁଏ । ଗ୍ରନ୍ଥଟି ମୃତ୍ୟୁର ତିନି ବର୍ଷପରେ ପ୍ରକାଶିତ ହୁଏ ।

୧୯୦୬ ମସିହାରେ ରମ୍ଭାରୁ ପ୍ରକାଶିତ ପ୍ରଜାବନ୍ଧୁ ପତ୍ରିକାରେ 'ଗଞ୍ଜାମ ଭ୍ରମଣ' ପଦ୍ୟରେ କବି-ଶେଖର ଚିନ୍ତାମଣି ପଣ୍ଡିତ ଗୋପୀନାଥଙ୍କୁ ଲକ୍ଷ୍ୟ କରି ଲେଖିଥିଲେ ;

"ସାହିତ୍ୟ ସେବକ ଆହେ ଗୋପୀନାଥ ନନ୍ଦ
ଛପା ହେଲା ନାହିଁ ପୋଥି ନୁହଁ ନିରାନନ୍ଦ ।
ଲେଖିଯାଅ ଉତ୍ସାହରେ ଦିଅ ନାହିଁ ଚାପା
ଲେଖାଥିଲେ କେବେହେଲେ ହୋଇପାରେ ଛାପା ।
ଉପଇନ୍ଦ୍ର କବିସୂର୍ଯ୍ୟ ସାହିତ୍ୟ ସୁରଥୀ
ଛାପି ଯାଇଥିଲେ ନାହିଁ ନିଜ କୃତ ପୋଥି ।
ପ୍ରାକୃତ ଶବଦ ସଂଗ୍ରହେ ଦେଇଅଛ ହାତ
ସାମାନ୍ୟ କଠିନ କାର୍ଯ୍ୟ ନୁହଁଇ ଏହା ତ ।
ସେଥିପାଇଁ ଧନ୍ୟବାଦ କରୁଛି ଅର୍ପଣ
ସେହି ମହାଗ୍ରନ୍ଥ କର ସମାପନ ।"

ପଣ୍ଡିତ ଗୋପୀନାଥ ସଂସ୍କୃତ ପଣ୍ଡିତ ଥିଲେ । ତାଙ୍କ ପୂର୍ବରୁ ସଂସ୍କୃତ ପଣ୍ଡିତମାନେ ସାରଳା ଦାସଙ୍କ ମହାଭାରତକୁ ଘୃଣା ଦୃଷ୍ଟିରେ ଦେଖୁଥିଲେ । ଏହା ବ୍ରାହ୍ମଣମାନଙ୍କର ଅସ୍ପୃଶ୍ୟ ଥିଲା, ମାତ୍ର ପଣ୍ଡିତ ନନ୍ଦ ଏହା ଆଲୋଚ଼ନା କରି କବିଙ୍କ ପରିଚ଼ୟ, ମହାଭାରତ ଯୁଦ୍ଧର ସମୟ ନିର୍ଣ୍ଣୟ, ବିଷୟ ଓ ତଦୀୟ ବୈଷମ୍ୟ, ଭାଷା ଓ ସାହିତ୍ୟ, ଛନ୍ଦୋନିୟମ, ମିତ୍ରାକ୍ଷର ମିଳନ ଆଦି ପ୍ରବନ୍ଧମାନଙ୍କରେ ନିଜର ଗଭୀର ପାଣ୍ଡିତ୍ୟ ଓ ଅନୁଶୀଳନ ପ୍ରତିପାଦନ କରି ଅଛନ୍ତି । "ବିଷୟ ଓ ବୈଷମ୍ୟ ବିଚାର ପ୍ରବନ୍ଧରେ ଗ୍ରନ୍ଥାକାର ସାରଳା ଦାସଙ୍କର ପ୍ରକାଣ୍ଡ ଗ୍ରନ୍ଥକୁ ମୁଦ୍ରିତ ପୁସ୍ତକ ଓ ବିଭିନ୍ନ ତାଳପତ୍ର ପୋଥି ସହ ମିଳାଇ ମୂଳ ସଂସ୍କୃତ, ହିନ୍ଦୀ, ବଙ୍ଗଳା ତଥା ତେଲୁଗୁ ଭାଷାର ମହାଭାରତ ସଙ୍ଗେ ତୁଳନା କରି ଚ଼ରିତ୍ରର ଅସାମଞ୍ଜସ୍ୟ, ଅସଂଲଗ୍ନତା ଓ ଅସଂଗତି ପ୍ରଭୃତି ନିର୍ଦ୍ଧାରଣ କରି ଏପରି କି ମୂଳ ଓ ସାରଳା ଦାସଙ୍କ ମହାଭାରତରେ ପ୍ରତିପାଦନ ବିଷୟ ସମୂହର ସୂଚନା ଆଉ ସାରଳା ମହାଭାରତରେ ଯାହା ପରିତ୍ୟକ୍ତ, ପ୍ରକ୍ଷିପ୍ତ, ସଂକ୍ଷିପ୍ତ, ସ୍ଥାନଭ୍ରଷ୍ଟ ଏବଂ ଅଯଥା ବିସ୍ତୃତ ଓ ଅନ୍ୟଥାକୃତ ହୋଇଅଛି ସେ ସମସ୍ତର ବିଶଦୀକରଣ ପୂର୍ବକ ସନ୍ଦର୍ଭା ସନ୍ଦର୍ଭର ବିଚାର କରି ଅଛନ୍ତି ।" ପ୍ରାୟ ଅର୍ଦ୍ଧ ଶତାବ୍ଦୀ ଗତ ହୋଇ ଯାଇଥିଲେ ମଧ ତାଙ୍କର ଏ କ୍ଷେତ୍ରରେ

ଅବଦାନ ଏ ପର୍ଯ୍ୟନ୍ତ ଅତୁଳନୀୟ ହୋଇ ରହିଛି ।

ଗ୍ରନ୍ଥକାରଙ୍କ ମୃତ୍ୟୁ ପରେ ଏହି ପ୍ରବନ୍ଧଗୁଡିକ ୧୯୨୮ ଖ୍ରୀଷ୍ଟାବ୍ଦରେ ପୁସ୍ତକାକାରରେ 'ଶ୍ରୀ ଭାରତ ଦର୍ପଣ' ରୂପେ ପ୍ରକାଶିତ ହୋଇଥିଲା । ୧୯୬୪ ଖ୍ରୀଷ୍ଟାବ୍ଦରେ ଓଡିଆ ସାହିତ୍ୟ ଏକାଡେମୀ ପକ୍ଷରୁ ଏହାର ପୁନଃ ମୁଦ୍ରଣ ପ୍ରକାଶିତ ହୋଇଅଛି ।

ଜଗନ୍ନାଥ ଦାସଙ୍କ ଭାଗବତ ଓ ଦାଣ୍ଡୀ ରାମାୟଣ ଉପରେ ତାଙ୍କର ଏ ପ୍ରକାର ଆଲୋଚନାମୂଳକ ପ୍ରବନ୍ଧମାନ ଏ ପର୍ଯ୍ୟନ୍ତ ଅପ୍ରକାଶିତ ଥିବା ଅତିଶୟ କ୍ଷୋଭର ବିଷୟ । ଏହା ବ୍ୟତୀତ ଜାନକୀ ପରିଣୟ, ସୀତା ବନବାସ ନାଟକ (୧୯୦୭), ଦ୍ରୌପଦୀ ବସ୍ତ୍ର ହରଣ ନାଟକ (୧୯୦୮), ବିଲହଣୀୟ କାବ୍ୟ (୧୯୧୮), ରାମାଶ୍ୱମେଧ ନାଟକ, ବିକ୍ରମୋର୍ବଶୀ ନାଟକ, ଉତ୍ତରରାଘବ ନାଟକ, ପୀୟୂଷଧାରା (ଛାନ୍ଦ) ଆଦି ଗ୍ରନ୍ଥ ସେ ରଚନା କରିଥିଲେ । ଏ ଗୁଡ଼ିକ ଅଧୁନା ଦୁଷ୍ପ୍ରାପ୍ୟ । ସଂସ୍କୃତ କବିତାର ଗୁରୁଲଘୁ ନିୟମ ରକ୍ଷାକରି ସେ ଓଡ଼ିଆ କବିତା ଲେଖିବାର ପ୍ରଥମ ପ୍ରୟାସ କରିଥିଲେ । ତାଙ୍କର ନିଷ୍ଠାପର ସାହିତ୍ୟ ସେବା ଉତ୍କଳର ତତ୍କାଳୀନ କୃତୀ ସନ୍ତାନମାନଙ୍କୁ ଅଭିଭୂତ କରିଥିଲା ।

ସତ୍ୟବାଦୀ ମାସିକ ପତ୍ରିକାର ପ୍ରଥମ ଭାଗ ୮ମ ଓ ୯ମ ମିଶ୍ରିତ ସଂଖ୍ୟାରେ ସଂପାଦକ ପଣ୍ଡିତ ଗୋପବନ୍ଧୁ ଲେଖିଥିଲେ -

"ନାମରେ ପ୍ରୟାସ ନାହିଁ, ଅର୍ଥରେ ପିପାସା ନାହିଁ, ନିନ୍ଦାସ୍ତୁତି ପ୍ରତି ଭ୍ରୂକ୍ଷେପ ନାହିଁ, ଅନନ୍ୟ ଚିତ୍ତରେ କେବଳ ସାହିତ୍ୟ ନିମନ୍ତେ ସାହିତ୍ୟର ଅନୁଶୀଳନ ନନ୍ଦ ମହାଶୟଙ୍କର ବ୍ରତ ହୋଇଅଛି ।" ପୁଣି ତା ୩.୩.୧୯୧୫ର ଏକ ପତ୍ରରେ ପଣ୍ଡିତ ଗୋପବନ୍ଧୁ ତାଙ୍କୁ ଲେଖିଥିଲେ, "ଆପଣଙ୍କୁ କହିବାର ସଙ୍ଗତ ନୁହେଁ କିନ୍ତୁ ଏହା ଯଥାର୍ଥରେ ପ୍ରାଣର କଥା ଯେ, ଯେତେବେଳେ ଓଡ଼ିଶାର ଚାରିଆଡ଼କୁ ଚାହୁଁ ସାହିତ୍ୟ କ୍ଷେତ୍ରରେ ଏକମାତ୍ର ନୀରବ ସାଧକ ବୋଲି ଆପଣଙ୍କର ଉପରେ ଆଖି ପଡ଼େ । ଦୂରରୁ ମନେ ମନେ ଆମ୍ଭେମାନେ ନମସ୍କାର କରୁ । ଆପଣଙ୍କର ନିଷ୍ଠା ଓ ନିରଭିମାନତା ଆମ୍ଭମାନଙ୍କର ନିତ୍ୟ ସ୍ମରଣୀୟ ।" ଜାତୀୟ ସାହିତ୍ୟ ଏକାଡ଼େମୀ ଆନୁକୂଲ୍ୟରେ ପ୍ରକାଶିତ ଓଡ଼ିଆ ସାହିତ୍ୟର ଇତିହାସରେ ଡକ୍ଟର ମାନସିଂହ ଲେଖିଛନ୍ତି- "ଆଧୁନିକ ଯୁଗରେ ଫକୀର ମୋହନଙ୍କ ପରେ ସାହିତ୍ୟ ସେବା ନିମିତ୍ତ ଜାତିର ଅଯାଚିତ ସମ୍ମାନ ଓ ଅକୃତ୍ରିମ ଭକ୍ତି ପାଇବାକୁ ଯୋଗ୍ୟ ହେଉଛନ୍ତି ପାରଳାଖେମୁଣ୍ଡିର ପଣ୍ଡିତ ଗୋପୀନାଥ ନନ୍ଦ ଶର୍ମା ।"

ଅପେକ୍ଷାକୃତ ଅଳ୍ପ ବୟସରେ ୧୯୨୪ ଖ୍ରୀଷ୍ଟାବ୍ଦ ଜାନୁଆରୀ ୧୪ ତାରିଖରେ

ଏହି ବିଖ୍ୟାତ ପଣ୍ଡିତ ଇହଧାମ ତ୍ୟାଗ କଲେ । ଡକ୍ଟର ମାନସିଂହଙ୍କ ଭାଷାରେ ସେ ଦରିଦ୍ର ମାତ୍ର ସମ୍ମାନିତ ବ୍ୟକ୍ତିରୂପେ ପ୍ରାଣତ୍ୟାଗ କଲେ ।

ଓଡ଼ିଶାର ବୁଦ୍ଧିଜୀବୀମାନେ ଅତି ବିଳମ୍ବରେ ତାଙ୍କ ପ୍ରତିଭାର ସନ୍ଧାନ ପାଇଥିଲେ । ଏହାଠାରୁ ଅଧିକ କ୍ଷୋଭ ଓ ପରିତାପର ବିଷୟ ସେମାନେ ତାଙ୍କୁ ସ୍ମରଣ କରିବାକୁ ଭୁଲି ଯାଉଛନ୍ତି । ପାରଳାଖେମୁଣ୍ଡି ନଗର ପରିଷଦ ତାଙ୍କ ନାମାନୁସାରେ ଏକ ଉଚ୍ଚ ପ୍ରାଥମିକ ସ୍କୁଲର ନାମକରଣ କରି ଅଛନ୍ତି । ତାଙ୍କ ନିଜ ସାହିରେ ଗୋପୀନାଥ ପାଠାଗାର ସ୍ଥାପିତ ହୋଇ ପ୍ରତି ବର୍ଷ ସେଠାରେ ତାଙ୍କର ସ୍ମୃତିପୂଜା ହେଉଛି । ଓଡ଼ିଶାର ରାଜଧାନୀରେ ଭାଷାବିଜ୍ଞାନ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା କରାଯାଇ ଏହା ଗୋପୀନାଥ ନନ୍ଦଙ୍କ ନାମରେ ନାମିତ ହେଲେ ତାଙ୍କ ସ୍ମୃତି ପ୍ରତି ଯଥୋଚିତ ସମ୍ମାନ ପ୍ରଦର୍ଶିତ ହେବ ।



# ପ୍ରାବନ୍ଧିକ ଶ୍ୟାମସୁନ୍ଦର ରାଜଗୁରୁ

ବିଖ୍ୟାତ ଉତ୍କଳ ହିତୈଷିଣୀ ସମାଜର ପ୍ରତିଷ୍ଠାତା, ଗଞ୍ଜାମର ପ୍ରଥମ ଓଡ଼ିଆ ଗ୍ରାଜୁଏଟ୍, ଓଡ଼ିଶାର ଜଣେ ପ୍ରସିଦ୍ଧ ପ୍ରାବନ୍ଧିକ ଓ ଗବେଷକ ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁ ୧୮୬୬ ମସିହାରେ ପାରଳାଖେମୁଣ୍ଡିର ଚିତ୍ରକାର ସାହିରେ ସ୍ୱନାମ ଧନ୍ୟ ରାଜଗୁରୁ ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ବାଲ୍ୟକାଳରେ ପ୍ରାଥମିକ ଶିକ୍ଷା ଶେଷ କରି ସେ କିଶୋର ବୟସରେ ସଂସ୍କୃତ ଓ ପରମ୍ପରା ଅନୁସାରେ ବୈଦିକ କର୍ମକାଣ୍ଡ ଅଧ୍ୟୟନ କରିଥିଲେ । ମାତ୍ର ଇଂରେଜି ଶିକ୍ଷା ପ୍ରତି ବିଶେଷ ଆକୃଷ୍ଟ ହୋଇ ସେ ୧୮୮୨ ମସିହାରେ ଇଂରେଜି ଶିକ୍ଷା ଆରମ୍ଭ କଲେ । ୧୮୮୭ ମସିହାରେ ସେ ପାରଳାଖେମୁଣ୍ଡି ହାଇସ୍କୁଲରୁ ପ୍ରବେଶିକା ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ଉତୀର୍ଣ୍ଣ ହୋଇଥିଲେ । ୧୮୯୦ ମସିହାରେ ସେ ବ୍ରହ୍ମପୁର ଖଲିକୋଟ କଲେଜରୁ ଏଫ୍.ଏ ଓ ୧୮୯୨ ମସିହାରେ ରାଜମହେନ୍ଦ୍ରୀ ସରକାରୀ କଲେଜରୁ ବିଏ.ପାସ୍ କରିଥିଲେ । ପାରଳାଖେମୁଣ୍ଡି କଲେଜର ଅବସର ପ୍ରାପ୍ତ ଅଧକ୍ଷ ପାନ୍ନାଦି ଜଗନ୍ନାଥ ସ୍ୱାମୀ (ମୃତ୍ୟୁ ତା ୧୭.୧.୧୯୬୮), ଡକ୍ଟର ସର୍ବପଲ୍ଲୀ ରାଧାକୃଷ୍ଣନ୍‌ଙ୍କର ସହାଧ୍ୟାୟୀ । ତାଙ୍କର ମତରେ ସରକାରୀ ଚାକିରରେ ଯୋଗଦାନ ନ କରି ରାଜଗୁରୁଙ୍କର ପାରଳାଖେମୁଣ୍ଡି ସହରରେ ଅବସ୍ଥାନ ରାଜ ପରିବାର ଓ ପାରଳାଖେମୁଣ୍ଡି ନାଗରିକମାନଙ୍କ ପକ୍ଷରେ ଏକ ସୌଭଗ୍ୟରେ ପରିଣତ ହେଲା ! ତତ୍‌କାଳୀନ ରାଜା ଶ୍ରୀଶ୍ରୀଶ୍ରୀ ଗୌରଚ଼ନ୍ଦ୍ର ଗଜପତି ଦେବ ଓ ତାଙ୍କର ସାନଭାଇ ପଦ୍ମନାଭ ନାରାୟଣ ଦେବଙ୍କର ଘନିଷ୍ଠ ସଂପର୍କରେ ଆସି ସେ ସେମାନଙ୍କର ବନ୍ଧୁ, ଦାର୍ଶନିକ ଓ ମାର୍ଗ ନିର୍ଦ୍ଦେଶକ ହୋଇ ରହିଲେ । ପଦ୍ମନାଭ ଗଜପତି ବା ଚ଼ନ୍ଦ୍ର ମହାରାଜାଙ୍କର ଗୃହଶିକ୍ଷକ କାର୍ଯ୍ୟରେ ସେ ୧୮୯୨ ମସିହା ମାର୍ଚ୍ଚ ୫ତାରିଖରେ ନିଯୁକ୍ତ ହୋଇ ନିଜକୁ ସମ୍ମାନିତ ମନେ କରିଥିଲେ ।

ଛାତ୍ରାବସ୍ଥାରୁ ଶ୍ୟାମସୁନ୍ଦରଙ୍କର ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରତି ଗଭୀର ଅନୁରାଗ ଥିଲା । ଓଡ଼ିଆ ଭାଷାର ଉନ୍ନତି ତାଙ୍କ ଜୀବନର କାମ୍ୟ ଥିଲା । ସେତେବେଳେ ଗଞ୍ଜାମ ଜିଲ୍ଲା ମାନ୍ଦ୍ରାଜ ପ୍ରେସିଡେ଼ନ୍‌ସିର ଅଙ୍ଗୀଭୂତ । କୋର୍ଟ କଚେ଼ରୀରେ ଓଡ଼ିଆ ଭାଷାର ପ୍ରଚ଼ଳନ ନିମିତ୍ତ ଅନେକ ଲୋକ ଉଦ୍ୟମ କରୁଥାନ୍ତି । କଲେଜରେ ପଢୁଥିବା ସମୟରେ ଶ୍ୟାମସୁନ୍ଦର ସେଥିରେ ଯୋଗଦାନ କରି ସମୟର ସଦ୍‌ବ୍ୟବହାର କରୁଥାଆନ୍ତି । ୧୮୮୫ ମସିହା

ସେହି ପରିସ୍ଥିତିରେ ସେ ଗଙ୍ଗାଧର ଖାଡ଼ଙ୍ଗା ଓ ଦ୍ୱୈପାୟନ ରାଓଙ୍କ ସହଯୋଗରେ ପାରଳାଖେମୁଣ୍ଡିରେ ଉତ୍କଳ ହିତୈଷିଣୀ ସଭା ସ୍ଥାପନ କରିଥିଲେ ଓ ଆଜୀବନ ଏହାର ସଭାପତି ଥାଇ ଏହି ଅନୁଷ୍ଠାନର ଉତ୍ତରୋତ୍ତର ଶ୍ରୀବୃଦ୍ଧି ସାଧନ କରୁଥିଲେ । (ଆପନ୍ନା ପଣ୍ଡାଙ୍କକୃତ "ନବ ଗଞ୍ଜାମ" ପ୍ରକାରେ ଆପନ୍ନା ପଣ୍ଡା ନିଜେ ଏହାର ପ୍ରତିଷ୍ଠତା ) ଗଞ୍ଜାମର ଓଡ଼ିଆମାନଙ୍କର ସ୍ୱାର୍ଥରକ୍ଷା ନିମିତ୍ତ ଗଠିତ ଏହି ଅଭିନବ ସମାଜର ରାଧାଚରଣ ଅଧିକାରୀ ସହକାରୀ ସଭାପତି, ବୃନ୍ଦାବନ ଦାସ କୋଷାଧ୍ୟକ୍ଷ ଓ ଗୋବିନ୍ଦ ପଣ୍ଡା, ନୀଳମଣି ପରିଚ୍ଛା, ନରସିଂହ ନାୟକ, ବୃନ୍ଦାବନ ଚନ୍ଦ୍ର ପାଣିଗ୍ରାହୀ, ଆନାମ ପାଣିଗ୍ରହୀ, ବଳଭଦ୍ର ମହାପାତ୍ର, ଜଗନମୋହନ ଦାସ ପ୍ରଭୃତି ବିଶିଷ୍ଟ ଭଦ୍ରବ୍ୟକ୍ତିମାନେ ସଭ୍ୟ ପଦରେ ନିଯୁକ୍ତ ଥିଲେ । ତତ୍ପରେ ପାରଳା ନରପତି ଶ୍ରୀ ଗୌରଚନ୍ଦ୍ର ଦେବ, ବିଶାଖାପାଟଣା ରାଜା ବିକ୍ରମ ଦେବ (ପରେ ଜୟପୁର ମହାରାଜା ଓ ଉତ୍କଳ ସମ୍ମିଳନୀ ସଭାପତି) ଗୁମ୍ମା, ସେରଙ୍ଗ, ଜିରାଙ୍ଗ, ରାଇଗଡ଼ ପ୍ରଭୃତି ବିଷୟୀମାନେ ରାଇଲା ଓ ସିପାହିପାଲିର ମଖସାଦାର ପ୍ରଭୃତି ଏହାର ପୃଷ୍ଠପୋଷକ ହୋଇଥିଲେ । ୧୮୮୬ମସିହାରେ ଆପନ୍ନା ପଣ୍ଡା ଏଥିରେ ନିମ୍ନ ମର୍ମରେ ଗୋଟିଏ ପ୍ରସ୍ତାବ ଉତ୍ଥାପନ କଲେ । "ଗଞ୍ଜାମ ଜିଲ୍ଲାର ପ୍ରତି ଗଭର୍ଣ୍ଣମେଣ୍ଟ ଅଫିସରେ ଭାଷା ପରି ଓଡ଼ିଆ ଭାଷା ବ୍ୟବହୃତ ହେବା ସକାଶେ ଜିଲ୍ଲାର ଉତ୍କଳୀୟ ରାଜା ପ୍ରଜା ସମସ୍ତଙ୍କଠାରୁ ଏକ ଲକ୍ଷ  ସ୍ୱାକ୍ଷର ସଂଗ୍ରହ କରି ମାନ୍ଦ୍ରାଜ ଗଭର୍ଣ୍ଣମେଣ୍ଟକୁ ଗୋଟିଏ ଆବେଦନ ପତ୍ର ପ୍ରଦାନ କରାଯାଉ ।" ପ୍ରସ୍ତାବଟି ଗୃହୀତ ହେଲା ଓ ଏହାକୁ କାର୍ଯ୍ୟରେ ପରିଣତ କରିବାକୁ ଚାନ୍ଦା ଧନ ସଂଗ୍ରହ କରାଗଲା । ଆବେଦନ ପତ୍ର ଇଂରେଜିରେ ଲେଖାଯାଇ କଟକରେ ମୁଦ୍ରଣ କରାଗଲା । କର୍ମୀ ନିଯୁକ୍ତି କରାଯାଇ ସ୍ୱାକ୍ଷର ସଂଗ୍ରହ କରାଗଲା ଓ ଏଥିପାଇଁ ତିନି ବର୍ଷ ସମୟ ଲାଗିଲା । ଚାନ୍ଦା ଧନ ବ୍ୟତୀତ ରାଜାଜମିଦାରମାନେ ଅଧିକ ଧନ ମଧ୍ୟ ସାହାଯ୍ୟ କଲେ । ୧୮୮୯ ମସିହାରେ ମାନ୍ଦ୍ରାଜର ଗଭର୍ଣ୍ଣର ଲର୍ଡ କାନମୋରା କାଞ୍ଚିଲି (ସୋମପେଣ୍ଠ) ଠାରେ ଦରବାର କରିଥିଲେ । ଗଞ୍ଜାମର କଲେକ୍ଟର ମି:ହରସ ପାଲ ମଧ୍ୟ ସେଠାରେ ଉପସ୍ଥିତ ଥିଲେ । ଶ୍ୟାମସୁନ୍ଦର ସେଠାରେ ଆବେଦନ ପତ୍ରଟି ଗଭର୍ଣ୍ଣରଙ୍କ ହସ୍ତରେ ଅର୍ପଣ କଲେ । ଏହା ଫଳରେ ୧୮୯୦ ମସିହା ଜାନୁଆରୀ ମାସରେ ଜିଲ୍ଲାର ସମସ୍ତ ଗଭର୍ଣ୍ଣମେଣ୍ଟ ଅଫିସ ଓଡ଼ିଆ ଭାଷାର ପ୍ରଚଳନ ହେଲା । ମାତ୍ର ଶ୍ରୀକାକୁଲମ ଅଞ୍ଚଳରେ ଆଦେଶଟି କାର୍ଯ୍ୟରେ ପରିଣତ ହୋଇପାରି ନଥିଲା । ଓଡ଼ିଆ ଭାଷା ଜାଣିଥିବା କର୍ମଚାରୀ ନିଯୁକ୍ତି ନିମିତ୍ତ ସରକାର ପଦକ୍ଷେପ ନେଲେ । ବ୍ରହ୍ମପୁର ଅଞ୍ଚଳରେ ଅଧେ, ରସୁଲକୋଣ୍ଡା (ଘୁମୁସର) ଅଞ୍ଚଳରେ

୩/୪ ଅଂଶ, ଶ୍ରୀକାକୁଲମ ଅଞ୍ଚଳରେ ଅଧେ ଓଡ଼ିଆ ନିଯୁକ୍ତି ହେବାର ଓ ମୁନସଫ୍ ସବ୍ ମାଜିଷ୍ଟ୍ରେଟ୍ ପ୍ରଭୃତି କର୍ମଚାରୀମାନେ ଓଡ଼ିଆ ଭାଷା ଜାଣିବାର ବ୍ୟବସ୍ଥା ହେଲା । ସମୟ ଥିଲା ଯେତେବେଳେ ବିଲାତରେ ଭାରତ ମନ୍ତ୍ରୀ ଗଞ୍ଜାମର ଓଡ଼ିଆ ସ୍ୱାର୍ଥ ସଂରକ୍ଷଣ କାର୍ଯ୍ୟ କହିଲେ ପାରଳାଖେମୁଣ୍ଡିର ଏହି ସଭାକୁ କେବଳ ବୁଝୁଥିଲେ । ପାରଳାଖେମୁଣ୍ଡି ମ୍ୟୁନିସିପାଲିଟି ୧୮୮୬ ମସିହାରେ ସ୍ଥାପିତ ହୋଇଥିଲା । ଓଡ଼ିଶାର ଏହା ଏକ ପୁରାତନ ପୌରସଂସ୍ଥା । ପ୍ରଥମରେ ମନୋନୀତ ସରକାରୀ କର୍ମକର୍ତ୍ତା ଏହାର ଦାୟିତ୍ୱରେ ରହୁଥିଲେ । ମାତ୍ର ୧୮୯୪ ମସିହା ଅକ୍ଟୋବର ମାସରେ ଶ୍ୟାମ ସୁନ୍ଦର ଏହାର ପ୍ରଥମ ବେସରକାରୀ ଚେୟାରମ୍ୟାନ ହେଲେ । ନିଜର ପ୍ରତିଭା ଓ କଠିନ ପରିଶ୍ରମ ଫଳରେ ନିଜର ମୃତ୍ୟୁ ପର୍ଯ୍ୟନ୍ତ ଦୀର୍ଘ ୧୫ ବର୍ଷ କାଳ ସେ ଏହାର ଚେୟାରମ୍ୟାନ ଥାଇ ସହରର ବହୁବିଧ ଉନ୍ନତି ସାଧନ କରିବାରେ ସକ୍ଷମ ହୋଇ ପାରିଥିଲେ । କିଛିକାଳ ସେ ଗଞ୍ଜାମ ଜିଲ୍ଲା ବୋର୍ଡ଼ ଓ ଜିଲ୍ଲାର ଶ୍ରୀକାକୁଲମ ତାଲୁକା ବୋର୍ଡ଼ର ମଧ୍ୟ ସଭ୍ୟ ଥିଲେ । ସେଠାରେ ମଧ୍ୟ ସେ ନିଜର କର୍ମଦକ୍ଷତା ପ୍ରତିପାଦନ କରି ପାରିଥିଲେ ସ୍ଥାନୀୟ ଶ୍ରୀ ପଦ୍ମନାଭ ରଙ୍ଗାଳୟ ଓଡ଼ିଶାର ପ୍ରଥମ ସ୍ଥାୟୀ ରଙ୍ଗମଞ୍ଚ ଥିଲା ଓ ଶ୍ୟାମ ସୁନ୍ଦର, ଅପନ୍ନା ପରିଚ୍ଛା ଓ ନୀଳମଣି ପରିଚ୍ଛାଙ୍କ ସହିତ ଏହାର ପରିଚାଳକ ଥାଇ ତହିଁରେ ସକଳ ପ୍ରକାର କାର୍ଯ୍ୟ ସୁଚାରୁରୂପେ ନିର୍ବାହ କରୁଥିଲେ । ସେ ସମୟରେ ବାଳକ ଥିବା ଅଧ୍ୟକ୍ଷ ଜଗନ୍ନାଥ ସ୍ୱାମୀ କହନ୍ତି ଆଗର ଚୋଳଟ୍ରି (ଧର୍ମଶାଳା) ବର୍ତ୍ତମାନ RCMS ଅଫିସରେ ପରିଣତ ହୋଇଛି । ଚୋଳଟ୍ରି ଅଧୀନରେ କେତେକ ଖାଲି ଜାଗା ଥିଲା । ସେଠାରେ ଚାଳ ଛପର ତିଆରି କରାଯାଇ ନିୟମିତଭାବରେ ନାଟକମାନ ପ୍ରଦର୍ଶନ କରା ଯାଉଥିଲା । ପଦ୍ମନାଭ ଗଜପତି ନିଜେ ନାଟକ ଲେଖୁଥିଲେ ଓ ତାଙ୍କ ଲିଖିତ ଓଡ଼ିଆ ନାଟକ ଧ୍ରୁବର ଅଭିନୟ ଏପରି ମର୍ମସ୍ପର୍ଶୀ ହୋଇଥିଲା ଯେ, ଜଗନ୍ନାଥ ସ୍ୱାମୀ ବାର୍ଦ୍ଧକ୍ୟରେ ମଧ୍ୟ ତାହା ଭୁଲି ପାରୁ ନାହାନ୍ତି ବୋଲି କହନ୍ତି । ପରେ ଚାଳଘର ଭଙ୍ଗା ଯାଇ ସେଠାରେ ପକ୍କା ଘର କରାଗଲା ଓ ଶ୍ରୀ ପଦ୍ମନାଭ ରଙ୍ଗାଳୟ ସେଠାରେ ସ୍ଥାପିତ ହେଲା । ପରେ ପରେ ଏହା ଅବହେଳିତ ଓ ଅବ୍ୟବହୃତ ହେବା ଅବସ୍ଥାରେ ଭାଙ୍ଗିଯିବା ବିଷୟ ଅଧ୍ୟକ୍ଷ ଜଗନ୍ନାଥ ସ୍ୱାମୀ କ୍ଷୋଭର ସହିତ ପ୍ରକାଶ କରନ୍ତି ।

ପାରଳାର ପ୍ରସିଦ୍ଧ ଗଜପତି ପ୍ରେସ୍ ମଧ୍ୟ ତାଙ୍କର ଦାୟିତ୍ୱରେ ପରିଚାଳିତ ହେଉଥିଲା । ଏହା ବ୍ୟତୀତ 'ଗଞ୍ଜାମ ନିଉଜ' ନାମକ ଏକ ଇଂରେଜି ସାପ୍ତାହିକ ମଧ୍ୟ ତାଙ୍କର ସୁଯୋଗ୍ୟ ସଂପାଦନାରେ ପାରଳାଖେମୁଣ୍ଡିରୁ ପ୍ରକାଶ ପାଉଥିଲା । ଶ୍ୟାମ ସୁନ୍ଦର

ଓ ପଦ୍ମନାଭ ଗଜପତିଙ୍କର ସ୍ୱ ସ୍ୱ ରଚନାମାନ ମଧ୍ୟ ଏହି ଛାପାଖାନାରୁ ପ୍ରକାଶିତ ହେଉଥିଲା ବୈଷ୍ଣବ କବି ଆପନ୍ନା ପରିଚ୍ଛାଙ୍କର ରାଧାକୃଷ୍ଣ ଲୀଳା ସମ୍ବଳିତ ଭକ୍ତି ସଙ୍ଗୀତ ଏହି ଛାପାଖାନାରେ ଛପା ଯାଉଥିଲା । ପରେ ଏହି ପ୍ରେସ୍‌ର ନାମ ସମସ୍ଥାନ ପ୍ରେସ ମଧ୍ୟ ହୋଇଥିଲା । ଅଧ୍ୟକ୍ଷ ଜଗନ୍ନାଥ ସ୍ୱାମୀଙ୍କର ପିତା ସଂସ୍କୃତ ପଣ୍ଡିତ ପାନାନ୍ଦି ରାମଶାସ୍ତ୍ରୀଙ୍କର ନାଟକ 'ମଧୁପ ଗୁଞ୍ଜନ' ମଧ୍ୟ ଏହି ଛାପାଖାନାରେ ଛପା ଯାଇଥିବା ଜଗନ୍ନାଥ ସ୍ୱାମୀ ପ୍ରକାଶ କରନ୍ତି । ୧୮୯୨ ମସିହାରେ ପ୍ରକାଶିତ 'ଉତ୍କଳ ଭ୍ରମଣ'ରେ ବ୍ୟାସକବି ଫକୀର ମୋହନ ଏହି ସମ୍ବାଦପତ୍ର ଓ ପାରଳାର ତତ୍‌କାଳୀନ ଗଜପତି ରାଜାଙ୍କୁ ଲକ୍ଷ୍ୟ କରି ଲେଖିଥିଲେ;

"ପଶ୍ଚିମରେ ପେଟ୍ରିଅଟ ଦକ୍ଷିଣେ ନିଉଜ
ଉତ୍ତରେ ଏ ସବୁ କଥା ମୂଳରୁ ରିଫିଉଜ (Refuse)
ଏହିପରି ଜଣେ ଯେବେ ଥାଆନ୍ତେ ଉତ୍ତରେ
ବୂଲୁଥାନ୍ତି ମୁହିଁ ହାତ ପକାଇ ନିଶରେ ।"

ନାନା ପ୍ରକାର ସାଧାରଣ ଅନୁଷ୍ଠାନ ଓ କାର୍ଯ୍ୟକ୍ରମ ସହିତ ସଂପୃକ୍ତ ଥାଇ ମଧ୍ୟ ସେ ସାହିତ୍ୟ ଚର୍ଚ୍ଚାରେ ଗଭୀର ମନୋନିବେଶ କରିଥିଲେ । ପଣ୍ଡିତ ନୀଳକଣ୍ଠ ଦାସଙ୍କ ମତରେ (ପଣ୍ଡିତ ଗୋପୀନାଥ ନନ୍ଦଙ୍କ ଭାଷାତତ୍ତ୍ୱ ଗ୍ରନ୍ଥ ପ୍ରବେଶ ଦ୍ରଷ୍ଟବ୍ୟ)

"ଦକ୍ଷିଣ ଭାରତର ଭାଷାମାନଙ୍କ ମଧ୍ୟରେ ବିଶେଷରେ ତେଲୁଗୁ ଆର୍ଯ୍ୟ ଭାଷା ଚଳୁଥିବା ପ୍ରଦେଶକୁ ଲାଗି ରହିଛି । ତେଣୁ ରକ୍ଷଣଶୀଳତା ଓ କୃତ୍ରିମତା ସେ ଭାଷାରେ ବଙ୍ଗଳା ଓଡ଼ିଆଠାରୁ ଅଧିକ ଦେଖିବାକୁ ମିଳେ । ଏପରିକି ସେ ଭାଷାର ଲେଖକମାନେ ଏବେ ମଧ୍ୟ ନିଜ ଲେଖାରେ ସାମାନ୍ୟ ଚଳିତ ଭାଷାର ପଦ୍ଧତି ଓ ଶବ୍ଦମାନ ପ୍ରୟୋଗ କରିବା ନିମନ୍ତେ ପ୍ରାଚୀନ ପନ୍ଥୀମାନଙ୍କ ସଙ୍ଗେ ଘୋର ସଂଗ୍ରାମ କରୁ ଅଛନ୍ତି । ଓଡ଼ିଶାରେ ଭାଷାରେ ସ୍ୱତନ୍ତ୍ର ଓ ସମୂହଭାବରେ ଭାଷାତତ୍ତ୍ୱ ତଥା ବ୍ୟାକରଣରେ ସମ୍ୟକ ସ୍ୱାଧୀନ ପରିଶୀଳନର ପ୍ରଥମ ଉଦ୍ୟମ ଶ୍ୟାମସୁନ୍ଦର ରାଜଗୁରୁ ଆରମ୍ଭ କରିଥିଲେ । ଉତ୍କଳ ସାହିତ୍ୟ ପ୍ରଚାର ପତ୍ରରେ ଓଡ଼ିଆ ଭାଷା ଓ ଛାନ୍ଦ ସମ୍ବନ୍ଧରେ କେତୋଟି ମାତ୍ର ମୌଳିକ ପ୍ରବନ୍ଧ ପ୍ରକାଶ କରି ସେ ଅକାଳରେ ଇହଧାମ ତ୍ୟାଗ କଲେ ଓ ତାଙ୍କ ପରେ ପଣ୍ଡିତ ଗୋପୀନାଥ ନନ୍ଦ ଓଡ଼ିଆ ତଥା ପ୍ରାକୃତ ଭାଷାତତ୍ତ୍ୱର ସ୍ୱାଧୀନ ପରିଶୀଳନରେ ଅଦ୍ୟାପୀ ଅଦ୍ୱିତୀୟ କହିଲେ ଚଳେ । ବଙ୍ଗଦ୍ୱାରା ସାକ୍ଷାତ ପ୍ରଭାବିତ ଉତ୍କଳଖଣ୍ଡରେ ଜନ୍ମ ହୋଇଥିଲେ ହୁଏତ ଶ୍ୟାମସୁନ୍ଦର ଓ ଗୋପୀନାଥ ପିଲାଦିନୁ ଭାଷାକୁ ଭିନ୍ନ ଭାବରେ ଦେଖି ପାରିଥାନ୍ତେ, ମାତ୍ର

ଗଞ୍ଜାମରେ ପ୍ରାକୃତିକ ଓଡ଼ିଶାର ପ୍ରାୟ ଦକ୍ଷିଣ ସୀମାରେ ରହି ସେମାନେ ଭାଷାକୁ ପ୍ରାଣରୁ ଅଧିକ ମଣି ଆରାଧନା କରୁଥିଲେ ।"

ପୁରାତନ ତାଳପତ୍ର ପୋଥି ଆଦି ସଂଗ୍ରହ ଓ ଅଧ୍ୟୟନ କରିବା ଶ୍ୟାମସୁନ୍ଦରଙ୍କର ଅବସର ସମୟର ପ୍ରଧାନକାର୍ଯ୍ୟ ଥିଲା । କର୍ଣ୍ଣାଟକ ରାଗ ରାଗିଣୀରେ କେତେକ ସଙ୍ଗୀତ ରଚନା କରି ସେ ଓଡ଼ିଆ ଭାଷାରେ ଦାକ୍ଷିଣାତ୍ୟ ସଙ୍ଗୀତର ସୂତ୍ରପାତ କରିଥିଲେ । ଓଡିଆମାନଙ୍କର ବ୍ରତ ଓ ଉପବାସ ଆଦି ବର୍ଣ୍ଣନା କରି ସେ ଇଂରାଜିରେ Feasts and Fasts of The Oriyas ବୋଲି ଖଣ୍ଡେ କ୍ଷୁଦ୍ର ପୁସ୍ତକ ଲେଖିଥିଲେ । ଏହା ପାରଳାଖେମୁଣ୍ଡିରେ ପ୍ରକାଶିତ ହୋଇ ବିଶେଷ ଲୋକପ୍ରିୟ ହୋଇ ପାରିଥିଲା ମାତ୍ର ତାଙ୍କର ପ୍ରକାଶିତ ପୁସ୍ତକ ମଧ୍ୟରେ ପ୍ରବନ୍ଧାବଳୀ ବିଶେଷ ଲୋକପ୍ରିୟ । ୧୯୬୪ ମସିହାରେ ଓଡିଆ ସାହିତ୍ୟ ଏକାଡେମୀ ତରଫରୁ ଏହି ପୁସ୍ତକଟିର ପୁନଃ ମୁଦ୍ରଣ କରାଯାଇଅଛି । ଏଥିରେ ଏକାଡ଼େମୀ ପକ୍ଷରୁ ପୁସ୍ତକଟିକୁ ଓଡ଼ିଆ ଆଲୋଚନା ସାହିତ୍ୟ ରଚନାର ଏକ ଦୀପ୍ତିମନ୍ତ ଜ୍ୟୋତିଷ୍କ ଓ ଓଡ଼ିଆ ଭାଷାର ଇତିହାସ ଓଡ଼ିଆ ଛାନ୍ଦର ଇତିହାସ, ଓଡ଼ିଆ ସାହିତ୍ୟର ଇତିହାସ ବିଚାରରେ ଏକ ଗୌରବୋଜ୍ଜ୍ୱଳ ଅବଦାନ, ବୋଲି ବର୍ଣ୍ଣନା କରା ଯାଇଅଛି । ଏହି ପ୍ରବନ୍ଧଗୁଚ୍ଛ ଶ୍ୟାମସୁନ୍ଦରଙ୍କର ଗଭୀର ପାଣ୍ଡିତ୍ୟ ଓ ଯୁକ୍ତି ପଟୁତାର ଅମ୍ଳାନ ସଙ୍କେତ ବହନ କରି ଓଡ଼ିଆ ସାହିତ୍ୟ ସମାଜରେ ନିଜର ତୁଙ୍ଗ ଆସନ ପ୍ରତିଷ୍ଠିତ କରି ପାରିଅଛି ।

ପୁସ୍ତକାକାରରେ 'ପ୍ରବନ୍ଧବଳୀ' ୧୯୧୭ ମସିହାରେ ପ୍ରଥମେ ପ୍ରକାଶିତ ହୋଇଥିଲା । ଏଥିରେ ଲିଖିତ ମୁଖବନ୍ଧରୁ ଜଣାପଡ଼େ ପ୍ରବନ୍ଧଗୁଡ଼ିକ ପ୍ରଥମେ ଉତ୍କଳ ସାହିତ୍ୟରେ ପ୍ରକାଶିତ ହୋଇଥିଲା । ସମସାମୟିକ ସାହିତ୍ୟସେବୀମାନଙ୍କୁ ଶ୍ୟାମସୁନ୍ଦରଙ୍କ ସାଧୁ ସଂକଳ୍ପ ଓ ସତ୍‌ଚେଷ୍ଟା ଅଗୋଚର ନ ଥିଲା । କବିବର ରାଧାନାଥ ଉତ୍କଳ ସାହିତ୍ୟ ସମାଜର ପ୍ରଥମ ବାର୍ଷିକ ଅଧିବେଶନରେ ଅଭିଭାଷଣ ପ୍ରସଙ୍ଗରେ କହିଥିଲେ 'ଓଡ଼ିଶାର ଅନ୍ୟାନ୍ୟ ବ୍ୟକ୍ତିଙ୍କ ମଧ୍ୟରେ ସୁପଣ୍ଡିତ ବାବୁ ଶ୍ୟାମସୁନ୍ଦର ରାଜଗୁରୁ ବି.ଏ ମହାଶୟ ଏ ବିଷୟରେ (ଉତ୍କଳ ସାହିତ୍ୟ ଇତିହାସ ପ୍ରଣୟନ ବିଷୟରେ) ପ୍ରଶଂସନୀୟ ଅଧ୍ୟବସାୟ ପ୍ରଦର୍ଶନ କରି ଆମ୍ଭମାନଙ୍କର ଧନ୍ୟବାଦ ହୋଇ ଅଛନ୍ତି । ମାତ୍ର ଏପରି ଦୁର୍ବହ ଭାର ତାହାଙ୍କ ଉପରେ ଅଥବା ଅପର କୌଣସି ଯୋଗ୍ୟ ବ୍ୟକ୍ତିଙ୍କ ଉପରେ ନ୍ୟସ୍ତ କରି କେବଳ ଧନ୍ୟବାଦ ଦେଇ ନିଶ୍ଚିନ୍ତ ରହିଲେ ଚ଼ଳିବ ନାହିଁ ।"

ପ୍ରବନ୍ଧାବଳୀର ମୋଟ ବାଇଶ ଗୋଟି ପ୍ରବନ୍ଧରୁ ଓଡ଼ିଆ ଛାନ୍ଦ, ଓଡ଼ିଆ ସର୍ବନାମ

ଓଡ଼ିଆ ଅବ୍ୟୟ, ପାରଳାଖେମୁଣ୍ଡିର ତତ୍‌କାଳୀନ ମହାରାଜା ଶ୍ରୀ ଶ୍ରୀ ଶ୍ରୀ ଗୌରଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ ଧ୍ରୁବ ନାଟକର ସମାଲୋଚନା ପ୍ରସଙ୍ଗରେ ବାଦ ପ୍ରତିବାଦ ଓ ଓଡ଼ିଆ ଭାଷାର ଆଦର୍ଶ ଶୀର୍ଷକ ପ୍ରବନ୍ଧମାନ ଛାଡ଼ି ଦେଲେ ଅବଶିଷ୍ଟ ୧୨ଗୋଟି ଓଡ଼ିଆ କବିମାନଙ୍କର ଗବେଷଣାମୂଳକ ଜୀବନୀ ।

୧. 'ମହାଭାରତ' ରଚ୍‌ୟିତା ଶୁଦ୍ରମୁନି ଶାରଳା ଦାସ
୨. 'ରାମାୟଣ' ରଚ୍‌ୟିତା ବଳରାମ ଦାସ
୩. 'ରସ-ବିନୋଦ'ରଚ୍‌ୟିତା ଦୀନକୃଷ୍ଣ ଦାସ
୪. 'ପ୍ରେମ-ରସ ଚ଼ନ୍ଦ୍ରିକା'ରଚ୍‌ୟିତା ଦ୍ୱାରକା ଦାସ
୫. 'ରଘୁନାଥ ବିଳାସ' ରଚ୍‌ୟିତା ଓ କବି-ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କର ପିତାମହ ଧନଞ୍ଜୟ ଭଞ୍ଜ ।
୬. 'ଅଧ୍ୟାତ୍ମ ରାମାୟଣ' ଅନୁବାଦକ ହଳଧର ଦାସ ତେଲେଙ୍ଗା କବି ଗୋପାଳ
୭. 'ମହାଭାରତ' ଅନୁବାଦକ ଧରାକୋଟ ରାଜା କୃଷ୍ଣ ସିଂହ
୮. 'ବ୍ରଜ-ବିହାରୀ' ରଚ୍‌ୟିତା ଦାଶରଥୀ ଦାସ ଓ କୃପାସିନ୍ଧୁ ଦାସ
୯. 'ଏକାଦଶୀ ମାହାତ୍ମ୍ୟ' ଅନୁବାଦକ ପାରଳା ନିବାସୀ କବି ହରିକୃଷ୍ଣ
୧୦. 'ଦାର୍ଢ୍ୟତା ଭକ୍ତି' ଲେଖକ ତୁରା ନିବାସୀ ରାମ ଦାସ
୧୧. 'ପଦ୍ମାବତୀ ଅଭିଳାଷ' ରଚ୍‌ୟିତା ଜରଡ଼ାର ଜେମା ଓ ବୁଢାସିଂଘିର ରାଣୀ
୧୨. 'ରାମ ରସାମୃତ' ପ୍ରଣେତା ଧରାକୋଟ ନିବାସୀ କାହ୍ନୁ ଦାସ

ଏହିପରି ବାରଜଣ ବିଖ୍ୟାତ କବିଙ୍କର ରଚ଼ନା ଓ ଜୀବନୀ ଏଥିରେ ଆଲୋଚ଼ନା କରାଯାଇଛି । ସମସାମୟିକ ଯୁଗରେ ଏ ପ୍ରକାର ଗବେଷଣା ଓ ସମାଲୋଚ଼ନା କି ପ୍ରକାର ଅଧ୍ୟବସାୟ ସାପେକ୍ଷ ଥିଲା ତାହା ସହଜରେ ଅନୁମାନ କରା ଯାଇପାରେ । ଏଥି ମଧ୍ୟରୁ ବହୁ କବିଙ୍କର ରଚ଼ନାମାନଙ୍କର ଏହା ପ୍ରଥମ ସମାଲୋଚ଼ନା ବୋଲି ଜଣାପଡ଼େ ।

ମାତୃଭାଷା ବ୍ୟତୀତ ମାତୃଭୂମିର ସର୍ବାଙ୍ଗୀନ ଉନ୍ନତି ଲକ୍ଷ୍ୟରେ ରାଜଗୁରୁଙ୍କର ପରମମିତ୍ର ଅଶେଷ ଉତ୍ସାହଦାତା ଚ଼ନ୍ଦ୍ର ମହାରାଜା ବା ଶ୍ରୀ ପଦ୍ମନାଭ ନାରାୟଣ ଦେବଙ୍କ ସହିତ ସେ ୧୮୯୪ ମସିହାରେ ମାନ୍ଦ୍ରାଜ ଜାତୀୟ କଂଗ୍ରେସ ଅଧିବେଶନରେ, ୧୮୯୫ ମସିହାରେ ପୁନା ନଗରୀର ଅଧିବେଶନରେ ଓ ୧୮୯୭ ମସିହାରେ ଅମରାବତୀ ଅଧିବେଶନରେ ଯୋଗଦାନ କରିଥିଲେ । ଅମରାବତୀ ଅଧିବେଶନରେ ସେ ଜାତୀୟ

କଂଗ୍ରେସର ବିଷୟ ନିର୍ବାହିକା ସମିତି (Subject Committee)ର ସଭ୍ୟ ରୂପେ ମଧ ନିର୍ବାଚିତ ହୋଇଥିଲେ, ମାତ୍ର ଏ ସବୁ ଉଜ୍ଜ୍ୱଳ ସମ୍ଭାବନା ଦୃଷ୍ଟେ ୧୯୦୪ ମସିହା ଫେବୃଆରୀ ମାସରେ ଶ୍ରୀ ପଦ୍ମନାଭ ନାରାୟଣ ଦେବ ଇହଧାମ ତ୍ୟାଗ କଲା ପରେ ସେ ହତୋତ୍ସାହ, ଭଗ୍ନୋଦ୍ୟମ ଓ ରୁଗ୍‌ଣ ହୋଇ ପଡ଼ିଲେ । ତାଙ୍କର ଦେଶସେବା ଓ ସାହିତ୍ୟ ଚର୍ଚ୍ଚା ତିମିରାଚ୍ଛନ୍ନ ହେଲା । ଏ ପ୍ରକାର ଦୈବୀ ଦୁର୍ବିପାକ ଘଟି ନ ଥିଲେ ହୁଏତ ରାଜଗୁରୁ ଉତ୍କଳ ଭାଷା ଓ ସାହିତ୍ୟର ଏକ ପୂର୍ଣ୍ଣାଙ୍ଗ ଇତିହାସ ଲେଖିବାକୁ ସମର୍ଥ ହୋଇ ଥାଆନ୍ତେ ଓ ଜାତୀୟ କଂଗ୍ରେସ ରାଜନୀତିରେ ନିଜର ପ୍ରତିଭା ନିୟୋଜିତ କରି ପାରି ଥାଆନ୍ତେ ।

୧୯୦୨ ମସିହା ଅପ୍ରେଲ ମାସରେ ଗଞ୍ଜାମର ଓଡ଼ିଆମାନଙ୍କର ପ୍ରଥମ ଜାତୀୟ ସମ୍ମିଳନୀର ରାଜଗୁରୁ ସଭାପତି ଥିଲେ । ଏଥିରେ କଟକରୁ ମଧୁସୂଦନ ଦାସ, ଫକୀର ମୋହନ ସେନାପତି, ବିଶ୍ୱନାଥ କର ଓ ପୁରୀରୁ ରାମଚନ୍ଦ୍ର ଦାସ, ଗୋପବନ୍ଧୁ ଦାସ ପ୍ରଭୃତି ତତ୍‌କାଳୀନ ବିଶିଷ୍ଟ ଜନନାୟକମାନେ ଯୋଗଦେଇଥିଲେ । ଏହି ସଭା କାଳକ୍ରମେ ଉତ୍କଳ ସମ୍ମିଳନୀ ଆକାର ଧାରଣ କରିଥିଲା । ୧୯୧୪ ମସିହାରେ ଶ୍ରୀ ବିକ୍ରମ ଦେବ ବର୍ମାଙ୍କ ସଭାପତିତ୍ୱରେ ପାରଳାଖେମୁଣ୍ଡିରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀର ଦଶମ ଅଧିବେଶନରେ ରାଜଗୁରୁ ମୁଖ୍ୟ ଅଂଶ ଗ୍ରହଣ କରି ପାରିଥାନ୍ତେ ମାତ୍ର ପାରଳାର କୀର୍ତ୍ତିଚନ୍ଦ୍ର ଶ୍ରୀ ଶ୍ରୀ ଗୌରଚନ୍ଦ୍ର ଗଜପତି ନାରାୟଣ ଦେବଙ୍କର ୧୯୦୫ ମସିହା ରେ ଅକାଳ ବିୟୋଗ ହେତୁ ନାବାଳକ ଯୁବରାଜ ମହୋଦୟ (ପରବର୍ତ୍ତୀ କାଳରେ ପାରଳାଖେମୁଣ୍ଡି ମହାରାଜା) ମାନ୍ଦ୍ରାଜ ନଗରସ୍ଥ ନ୍ୟୁଇଂଟନ ରାଜକୁମାର ବିଦ୍ୟାଳୟରେ ସରକାରଙ୍କର ଆଦେଶକ୍ରମେ ଶିକ୍ଷା ପାଇଲେ । ସେଇଦିନୁ ରାଜଗୁରୁଙ୍କର ରାଜକୀୟ ସମ୍ପର୍କ ଛିନ୍ନ ହେଲା । ସେ ମନୋବ୍ୟାଧିସଙ୍କୁଳ ଓ ରୁଗ୍‌ଣ ହୋଇ ପଡ଼ିଲେ ।

୧୯୦୬ ମସିହାରେ ରମ୍ଭାରୁ ପ୍ରକାଶିତ 'ଗଞ୍ଜାମ ଭ୍ରମଣ' ପଦ୍ୟରେ କବିଶେଖର ଚିନ୍ତାମଣି ଲେଖିଥିଲେ;

"ବିଚକ୍ଷଣ ରାଜଗୁରୁ ହେ ଶ୍ୟାମ ସୁନ୍ଦର
ଆଦ୍ୟ ଗ୍ରାଜୁଏଟ ତୁମ୍ଭେ ଗଞ୍ଜାମ ଜିଲ୍ଲାର ।
ଗଞ୍ଜାମବାସୀଏ ଏଣୁ ଥିଲେ ଆଶାକରି
ସର୍ବକାର୍ଯ୍ୟେ ହେବ ତୁମ୍ଭେ ଅଗ୍ରଣୀ ଏପରି ।
ସେଥିରୁ ଚିହ୍ନ ସ୍ୱରୂପ ବୋଲା ଯାଇପାରେ
ସଭାପତି ହେଲ ଆଦ୍ୟ ଗଞ୍ଜାମ ସଭାରେ ।

ଭାଷା (ଓ) ତତ୍ତ୍ୱ ଆପଣଙ୍କୁ ନିବିଷ୍ଟ କିଞ୍ଚିତ
ହୋଇଥିଲୁ ଆମ୍ଭେମାନେ ଦେଖି ଆଶାନ୍ୱିତ ।
ଅନ୍ନ ଚିନ୍ତାରୁ ତ ତୁମ୍ଭେ ଭାଗ୍ୟବଶେ ମୁକ୍ତ
ପରାଧୀନ ନୋହି ପୁଣି ସ୍ୱାଧୀନତା ଯୁକ୍ତ ।
ତୁମ୍ଭ ପ୍ରତି ଉଚ୍ଚଭାବ ଦେଶର ଯେପରି
ଯଶସ୍ୱୀ ହୁଅ ସେପରି ଉଚ୍ଚକାର୍ଯ୍ୟ କରି ।
ହିତୈଶିଣୀ ସମାଜକୁ ପୁନରୁଜ୍ଜୀବିତ
କରି ନବୀନ ଉତ୍ସାହ ସାଧ ପରହିତ ।
ସମାଜ ଆଭ୍ୟନ୍ତରିତ ରହସ୍ୟ ସକଳ
ବିଦୂରିତ କରି ତାକୁ କର ସୁନିର୍ମଳ ।
ଅଟ ତୁମ୍ଭେ ଉତ୍କଳର କୃତୀ ପୁତ୍ର ଜଣେ
ଏହି କଥା ଭାଇ ସଦା ରଖିଥିବ ମନେ ।
ବିଶେଷେ ଗଞ୍ଜାମ ପୁଣି ସମଗ୍ର ଉତ୍କଳେ
ତୁମ୍ଭ ମୁଖାପେକ୍ଷୀ ହୋଇ ରହିଛି କେବଳ ।

ମାତ୍ର ୪୩ ବର୍ଷ ବୟସରେ ସେ ୧୯୦୯ ମସିହା ଜୁଲାଇ ମାସ ୧୭ ତାରିଖରେ ବହୁମୂତ୍ର ରୋଗରେ ଇହଧାମ ତ୍ୟାଗ କଲେ । ତାଙ୍କର ପରଲୋକରେ ଦୁଃଖ ପ୍ରକାଶ କରି ଜିଲ୍ଲା କଲେକ୍ଟର ମ୍ୟୁନିସିପାଲିଟିର ବାର୍ଷିକ ପରିଚାଳନା ରିପୋର୍ଟରେ ଉଲ୍ଲେଖ କରିଥିଲେ 'ଶ୍ୟାମସୁନ୍ଦର ରାଜଗୁରୁଙ୍କର ଅକାଳ ବିୟୋଗରେ କେବଳ ପାରଳାଖେମୁଣ୍ଡି ମ୍ୟୁନିସିପାଲିଟି ନୁହେଁ ମାତ୍ର ସମଗ୍ର ଗଞ୍ଜାମ କ୍ଷତିଗ୍ରସ୍ତ ହୋଇଅଛି ।'

---

ବି.ଦ୍ର: ଓଡିଶା ହାଇକୋର୍ଟ ନ୍ୟାୟଧୀଶ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର କୁଳପତି ତା ୧୦.୧୦.୯୦ରିଖରେ ପରଲୋକପ୍ରାପ୍ତ ଚାଙ୍ଗୁଡିଶାସନ ନିବାସୀ ଅଭିମନ୍ୟୁ ମିଶ୍ରଙ୍କର ପିତା ଭିକାରୀ ଚରଣ ମିଶ୍ର ଗଞ୍ଜାମ ଜିଲ୍ଲାର ପ୍ରଥମ ଓଡିଆ ଗ୍ରାଜୁଏଟ ବୋଲି ପାରଳାଖେମୁଣ୍ଡିରେ କେତେକ ବୟସ୍କଲୋକ କହିଥାନ୍ତି । ଭିକାରୀ ଚରଣ ପୁଲିସ ଇନିସ୍ପେକ୍ଟର ଥାଇ ଅଳ୍ପ ବୟସରେ ପ୍ରାଣତ୍ୟାଗ କରିଥିଲେ ।

# ରାଜକବି ପଦ୍ମନାଭ ନାରାୟଣ ଦେବ

ଗଞ୍ଜାମ ମାନ୍ଦ୍ରାଜ ପ୍ରେସିଡେନ୍‌ସିର ଅନ୍ତର୍ଭୁକ୍ତ ଥିବା ଅବସ୍ଥାରେ ୧୮୯୨ ମସିହାରେ ପ୍ରକାଶିତ 'ଉତ୍କଳ ଭ୍ରମଣ' ପଦ୍ୟରେ ବ୍ୟାସକବି ଫକୀର ମୋହନ ଲେଖିଥିଲେ;

ଓଡ଼ିଆ ଦକ୍ଷିଣ ସୀମା ପାରଳାଖିମଣ୍ଡି
ଧନେ ମାନେ କିଏ ଆଉ ଅଛି ତାଙ୍କୁ ବଢ଼ି ?
କବିତ୍ୱ ଗୌରବ ସ୍ଥାନ ନ ଦେଖେ ସେପରି
ଗାଉଥିଲେ ବସି ଗୀତ ଯହିଁ ଗୌରହରି ।
ଧନ୍ୟ ସେ ସେକେଣ୍ଡ ପ୍ରିନ୍ସ ଧନ୍ୟ ତୁମ୍ଭ ନାମ
ବଂଶ ଅନୁରୂପ ଏକା କରିଅଛ କାମ
କେତେ ରାଜାଙ୍କର ଅଛି ଇଂରେଜି Knowledge
ନ ଛୁଇଁବେ Very dirty ଓଡିଆ Language
ସତକଥା ହେଲେ ଏବେ English education
Consequently ଓଡ଼ିଆ study sadly neglected
ମୁଁ ତ କହୁନାହିଁ Dirty Oriya ପଢ଼ିବାକୁ
କିପାଁ ଯିବେ ଏଡ଼େ ମହାପାପ କରିବାକୁ ।
ମାତ୍ର ରାଜଧର୍ମ ଛାମୁ ନ ଯାଅ ପାଶୋରି
ଦେଶୀ ଲୋକ ଦେଶୀ ଭାଷା ଶିଖିବେ କିପରି ?
ଭରସି ବୋଲିବି ଯେବେ ତାଙ୍କୁ ଦୁଇ କଥା
ଖପା ହୋଇ ପିଟି ଦେବେ ଠେଙ୍ଗାରେ ମୋ ମଥା
କାହିଁ ପାଇଁ ମିଛରେ ହେବି ହରବର
ଅଦାର ବେପାର କରି ଜାହାଜ ଖବର ।
ଆପଣ ବୁଝନ୍ତି କଥା, ସେଥିପାଇଁ
ବୋଇଲି ଚାରିଟି କଥା ଶୁଣ ଅବା ନାହିଁ ।
ଦକ୍ଷିଣ ରାଜ୍ୟରେ ମାତୃଭାଷା ରକ୍ଷା ପାଇଁ

ସମସ୍ତେ ଅଛନ୍ତି ଏକା ତୁମ୍ଭଙ୍କୁ ଅନାଇ ।
ଆମ୍ଭେମାନେ ଷୋଳପଣ କରିଅଛୁ ଆଶା
ଉନ୍ନତି ଲଭିବ ତୁମ୍ଭ ଯୋଗେ ମାତୃଭାଷା
କେତେ ହାତୀ କେତେ ଘୋଡ଼ା ଯାଉଅଛି କିଣା
ବାନ୍ଧି ନେଉଅଛି ଥଳି କେ ବଜାଇ ବୀଣା ।
ଦେଶ ଭାଷା ଉନ୍ନତିରେ ଯାହା କରାଯିବ
ଯୁଗ ଯୁଗାନ୍ତରେ କୀର୍ତ୍ତି ବାନା ଉଡୁଥିବ ।
ଟେଲର ତ ଦେଇଥିଲା ଓଡ଼ିଆ ଉଡ଼େଇ
ଗୌରଚନ୍ଦ୍ର ଗଜପତି ଦେଲେ ଯେ ରଖାଇ ।
ମହାରାଜ ଆପଣଙ୍କ ଏ କଥା ପଦକ
କରିଥିବି ସବୁଦିନେ ହୃଦରେ ପଦକ ।
ପଶ୍ଚିମରେ ପେଟ୍ରିଅଟ, ଦକ୍ଷିଣେ ନିଉଜ
ଉତ୍ତରେ ଏ ସବୁ କଥା ମୂଳରୁ ରିପ୍ଲ୍ୟୁଜ ।
ଏହି ପରି ଜଣେ ଯେବେ ଥାଆନ୍ତା ଉତ୍ତରେ
ବୁଲୁଥାନ୍ତି ମୁହିଁ ହାତ ପକାଇ ନିଶରେ ।

ପ୍ରାୟ ଏକ ଶତାବ୍ଦୀ ପରେ ପୂର୍ଣ୍ଣାଙ୍ଗ ଉତ୍କଳର ବହୁବିଧ ଉନ୍ନତି ଘଟୁଥିବା ସମୟରେ ଏହି ବିପୁଳଯଶା ରାଜକୁମାରଙ୍କର ସ୍ମୃତି ଜାଗରୂକ କରିବା କ'ଣ କୌଣସି ଓଡ଼ିଆର କାମ୍ୟ ନୁହେଁ ?

ପାରଳାର ପ୍ରତାପରୁଦ୍ର ଗଜପତିଙ୍କର ଚାରି ପୁତ୍ର ଓ ଦୁଇ କନ୍ୟା ଥିଲେ । ତନ୍ମଧ୍ୟରୁ ସୁବିଖ୍ୟାତ ପାରଳାଖେମୁଣ୍ଡିର ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତିଙ୍କର ୧୯୦୫ ମସିହାରେ ପରଲୋକଗତ ପିତା ଶ୍ରୀ ଗୌରଚନ୍ଦ୍ର ନାରାୟଣ ଦେବ ଜ୍ୟେଷ୍ଠ ଓ ଶ୍ରୀ ପଦ୍ମନାଭ ଦେବ ୨ୟ ଥିଲେ । ସେଥିପାଇଁ ପଦ୍ମନାଭ ସେକେଣ୍ଡ ପ୍ରିନ୍ସ ନାମରେ ଓଡ଼ିଶା ବାହାରେ ସୁପରିଚିତ ଥିଲେ । ୧୮୭୨ ମସିହା ଡିସେମ୍ବର ମାସ ୧୫ ତାରିଖରେ ପଦ୍ମନାଭଙ୍କର ଜନ୍ମ କାଳରେ ତାଙ୍କର ଅସାମାନ୍ୟ ଶାରୀରିକ ସୌନ୍ଦର୍ଯ୍ୟ ଦେଖି ପିତା ତାଙ୍କୁ ଚନ୍ଦ୍ର ବୋଲି ନାମ ଦେଇଥିଲେ । ପରବର୍ତ୍ତୀ କାଳରେ ସେ ଚନ୍ଦ୍ର ମହାରାଜା ନାମରେ ବିଖ୍ୟାତ ହୋଇଥିଲେ । ରାଜକୁଳରେ ଜନ୍ମଲାଭ କରିଥିଲେ ମଧ୍ୟ ପଦ୍ମନାଭ ବାଲ୍ୟକାଳରୁ ନିଜର ଅସାମାନ୍ୟ ଚରିତ୍ର ଓ ମନୋବୃତ୍ତିର ପରିଚୟ ପ୍ରଦାନ କରିଥିଲେ ।

ସେ କୁଭାଷା କହୁ ନଥିଲେ । ଅନ୍ୟ ରାଜକୁମାରମାନଙ୍କ ପରି ସେ କାହା ପ୍ରତି ସାମାନ୍ୟ ଘୃଣା ବା ହେୟଭାବ ଦେଖାଉ ନଥିଲେ । ଆମିଷ ଭୋଜନ ପ୍ରତି ବିତସ୍ପୃହ ଥିଲେ । ନଗରରେ କୌଣସି ଦାସୀ ମାଛ କାଟିବାର ଦେଖିଲେ ସେ ରୋଦନ କରୁଥିଲେ । ସଂପୂର୍ଣ୍ଣ ନିରାମିଷାଶୀ ପୁତ୍ରକୁ ଆମିଷ ପ୍ରତି ଆକୃଷ୍ଟ କରିବା ନିମିତ୍ତ ମାତା ଥରେ ମାଛକୁ ଗନ୍ଧଶୂନ୍ୟଭାବେ ରନ୍ଧନ କରି ଅତି ଯତ୍ନରେ ପୁତ୍ରକୁ ଭୋଜନ ନିମିତ୍ତ ଦେଇଥିଲେ । ପ୍ରଥମେ ନିରାମିଷ ଖାଦ୍ୟ ଭାବି ଏହା ଗ୍ରହଣ କରି ସେ ଭୋଜନ କଲେ ମାତ୍ର କିଛି ସମୟପରେ ସେ ସମସ୍ତ ବାନ୍ତି କରି ପକାଇବା ଦେଖି ତାଙ୍କର ଆଦରଣୀୟା ଜନନୀ ସେହି ଦିନୁ ତାଙ୍କପାଇଁ ପ୍ରତ୍ୟହ ନିରାମିଷ ଖାଦ୍ୟ ପ୍ରସ୍ତୁତି ନିମିତ୍ତ ଆଦେଶ ଦେଲେ । ରାଜମାତା ପୁତ୍ରର ଆଦର୍ଶ ଚରିତ୍ରବତ୍ତା ଓ ମହତ ଗୁଣ ସମୂହର ପରିଚୟ ପାଇ ତାଙ୍କୁ ଅତିଶୟ ଶ୍ରଦ୍ଧା କରୁଥିଲେ । ପଦ୍ମନାଭ ମଧ୍ୟ ଅତିଶୟ ପିତୃ-ମାତୃ ଭକ୍ତ ଥିଲେ । ସେମାନଙ୍କର ବିପକ୍ଷରେ କୌଣସି କଥା ଶୁଣିଲେ ପଦ୍ମନାଭ ଅପବାଦକାରୀମାନଙ୍କୁ ପାଖରୁ ଦୂର କରି ଦେଉଥିଲେ । ତାଙ୍କର ତୃତୀୟ ଭ୍ରାତା ଜଗନ୍ନାଥ ନାରାୟଣ ଦେବ ଅତି ନିଷ୍ଠୁର ଥିଲେ । ଚନ୍ଦ୍ରକୁ ରାହୁ ଗ୍ରାସିଲା ପରି ସେ ସାନ ଭାଇଙ୍କୁ ମିଥ୍ୟା ଅପବାଦ ଦେଇ ତାଡନା ଓ ଉର୍ଦ୍ଦନା କରୁଥିଲେ ମଧ୍ୟ ପଦ୍ମନାଭ ବିନା ପ୍ରତ୍ୟୁତ୍ତରରେ ସେ ସବୁ ନିର୍ବିକାରରେ ସହ୍ୟ କରି ଯାଉଥିଲେ । ପରବର୍ତ୍ତୀ କାଳରେ ପଦ୍ମନାଭଙ୍କୁ ୧ ୨ ବର୍ଷ ବୟସ ସମୟରେ ଏହି ଜଗନ୍ନାଥ ବନ୍ଧୁକ ସାହାଯ୍ୟରେ ନିଜକୁ ଗୁଳି କରି ଆତ୍ମହତ୍ୟା କରିଥିଲେ । ପଦ୍ମନାଭ ସେ ସମୟରେ ଉତ୍କଟ ଜ୍ୱର ରୋଗରେ ପୀଡିତ ଥିଲେ । ତାଙ୍କୁ ଏ ସମ୍ବାଦ କେବଳ ସୁସ୍ଥ ହେବା ପରେ ଦିଆଗଲା । ବହୁ ବିଳାପ କରି ସେ ନିଜର ଭ୍ରାତୃସ୍ନେହ ଓ ଶୋକ ପ୍ରକଟ କରିଥିଲେ । ସାତବର୍ଷ ବୟସରେ ବିଦ୍ୟାରମ୍ଭ କରି ପଦ୍ମନାଭ ଜଣେ ଓଡ଼ିଆ ଓ ଜଣେ ତେଲୁଗୁ ପଣ୍ଡିତଙ୍କ ପାଖରେ ଦୁଇବର୍ଷ ପ୍ରାଥମିକ ଶିକ୍ଷା ଲାଭ କଲେ । ପାରଳାଖେମୁଣ୍ଡିଠାରେ ସେ ସମୟରେ କୋର୍ଟ ଅଫ୍ ୱାଡସ୍ ତରଫରୁ ଗଞ୍ଜାମର ରାଜକୁମାରମାନଙ୍କର ଶିକ୍ଷା ନିମିତ୍ତ ଗୋଟିଏ ଆଦର୍ଶ ବିଦ୍ୟାଳୟ ଥିଲା । ବିଶେଷ କୃତିସମ୍ପନ୍ନ ଶିକ୍ଷକମାନେ ସେଥିପାଇଁ ନିଯୁକ୍ତ ହୋଇ ଥାଆନ୍ତି । ଏମାନଙ୍କ ମଧ୍ୟରେ ଉଇଲିୟମ୍ ଟେଲର୍ , ପଦ୍ମନାଭ ପରିଚ୍ଛା ଓ ବି.ରାମଣା ଅନ୍ତର୍ଭୁକ୍ତ । ଏମାନେ ଇଂରାଜି, ଓଡିଆ, ଭୂଗୋଳ ଓ ଇତିହାସ ଶିକ୍ଷା ଦେଉଥିଲେ । ସକାଳ ୧ ୦ଟାରୁ ସନ୍ଧ୍ୟା ୭ଟା ପର୍ଯ୍ୟନ୍ତ ଶାରୀରିକ ଓ ମାନସିକ ଦକ୍ଷତା ଅର୍ଜନ ନିମିତ୍ତ ସକଳ ପ୍ରକାର ଶିକ୍ଷା ଏଠାରେ ପ୍ରଦାନ କରା ଯାଉଥିଲା । ଏହାପରେ ପଦ୍ମନାଭ ବୈଦ୍ୟ ପୁରୁଷୋତ୍ତମଙ୍କ ପାଖରେ ଅମରକୋଷ ପଢୁଥିଲେ । ତାଙ୍କ ସହିତ ବିଦ୍ୟାଳୟରେ ସ୍ୱ-

ଅନୁଜ ଜଗନ୍ନାଥ ନାରାୟଣ ଦେବ, ଖଲିକୋଟର ରାଜା ଶ୍ରୀ ହରିହର ମର୍ଦ୍ଦରାଜ, ସାନଖେମୁଣ୍ଡି ରାଜା ଶ୍ରୀ ବ୍ରଜ କିଶୋର ଦେବ, ଧରାକୋଟ ରାଜା ଶ୍ରୀ ମଦନ ମୋହନ ସିଂହଦେବ ଓ ଜରଡା ରାଜା ମଧ ପଢୁଥିଲେ । ଜଗନ୍ନାଥଙ୍କ ବ୍ୟତୀତ ଅନ୍ୟ ସମସ୍ତେ ପରବର୍ତ୍ତୀ କାଳରେ ଓଡ଼ିଶାର ଜାତୀୟ ସ୍ରୋତରେ ନିଜକୁ ଭସାଇ ଦେଇ ଦେଶରେ ସମ୍ମାନର ଉଚ୍ଚ ଆସନ ଲାଭ କରିପାରିଥିଲେ । ବିଦ୍ୟାରେ କେହି ପଦ୍ମନାଭଙ୍କୁ ଟପି ପାରୁନଥିଲେ । ତାଙ୍କର ବିଦ୍ୟାରେ ବ୍ୟୁତ୍ପତ୍ତି ଦେଖି ଅନୁଜ ଜଗନ୍ନାଥ ପରିହାସ ଛଳରେ ତାଙ୍କୁ 'ତୁ ଆମ୍ଭ କୁଳରେ ପଣ୍ଡିତ ହେବୁ'ବୋଲି କହୁଥିଲେ ମାତ୍ର ଏ ପ୍ରକାର ମର୍ମଭେଦୀ ବାକ୍ୟରେ ବ୍ୟଥିତ ନ ହୋଇ ପଦ୍ମନାଭ ଅଧ୍ୟୟନରେ ଗଭୀର ମନୋନିବେଶ କରୁଥିଲେ । ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ତାଙ୍କର ବିଦ୍ୟାରେ ଆଗ୍ରହ ବୃଦ୍ଧିପାଇଲା । ମାତ୍ର ୧୮୯୦ମସିହାରେ ରାଜ୍ୟ କୋର୍ଟ ଅଫ୍ ୱାର୍ଡସ୍ ପରିଚାଳନାରୁ ମୁକ୍ତି ପାଇଲା । ରାଜକୁମାରମାନଙ୍କ ନିମିତ୍ତ ଉଦ୍ଦିଷ୍ଟ ବିଦ୍ୟାଳୟ ପାରଳାରୁ ଉଠିଗଲା । ପଦ୍ମନାଭଙ୍କ ବୟସ ସେତେବେଳେ ୧୮ ବର୍ଷ । ସେ ପ୍ରଥମେ ଜି.ଭି.ରାମମୂର୍ତ୍ତୀ ଓ ପରେ ଶ୍ୟାମସୁନ୍ଦର ରାଜଗୁରୁଙ୍କ ପାଖରେ ଇଂରେଜବିଦ୍ୟା ଅଭ୍ୟାସ କଲେ । ସାହିତ୍ୟ ବ୍ୟତୀତ ପଦାର୍ଥ ବିଜ୍ଞାନ, ରସାୟନ, ଶରୀର ତତ୍ତ୍ୱ ଓ ଦର୍ଶନ ଶାସ୍ତ୍ର ସେ ଏହିପରି ଗୃହଶିକ୍ଷକମାନଙ୍କ ପାଖରେ ରହି ଅଧ୍ୟୟନ କରି ଆତ୍ମସନ୍ତୋଷ ଲାଭ କଲେ । ଦୈନିକ ଅଠର ଘଣ୍ଟା ସେ ଅଧ୍ୟୟନରେ କଟାଇବା ଦେଖି ସମସ୍ତେ ବିସ୍ମିତ ହୋଇ ଯାଉଥିଲେ । ସଙ୍ଗୀତ ଓ ବାଦ୍ୟ ଯନ୍ତ୍ରରେ ମଧ ସେ ପାରଦର୍ଶିତା ଲାଭ କରିଥିଲେ । ପରବର୍ତ୍ତୀ କାଳରେ ତାଙ୍କର ରଚିତ 'ତାଳ ସର୍ବସାର ସଂଗ୍ରହ' ପୁସ୍ତକ ଏହି ପ୍ରକାର ଗଭୀର ସଙ୍ଗୀତ ଶାସ୍ତ୍ର ଆଲୋଚନାର ଫଳ ଥିଲା । ସଙ୍ଗୀତରେ ବ୍ୟୁତ୍ପନ୍ନ, ଉପାଧିପ୍ରାପ୍ତ ପ୍ରବୀଣ ସଙ୍ଗୀତଜ୍ଞ ଓ ବୈଦେଶିକ ବ୍ୟକ୍ତି ମଧ ତାଙ୍କର ଗନ୍ଧର୍ବ ବିଦ୍ୟାରେ ପାରଦର୍ଶିତା ଦେଖି ମୁଗ୍ଧ ହୋଇ ଯାଉଥିଲେ । ପଦ୍ମନାଭ ସାଧାରଣ ଲୋକଙ୍କ ଆମୋଦ ନିମିତ୍ତ ସର୍ବସାଧାରଣରେ ବେହେଲା ବଜାଇ ସମସ୍ତଙ୍କୁ ଆନନ୍ଦିତ କରୁଥିଲେ । ମୃଦଙ୍ଗ ମଧ ତାଙ୍କର ପ୍ରିୟ ବାଦ୍ୟ ଥିଲା । ତାଳ ଓ ଗ୍ରନ୍ଥନିବଦ୍ଧ ରାଗ ରାଗିଣୀମାନ ଶିକ୍ଷା କରି ସେଗୁଡ଼ିକର ସେ ମର୍ମ ଗ୍ରହଣ କରି ପାରିଥିଲେ । ଇଂରେଜି, ଓଡ଼ିଆ, ତେଲୁଗୁ, ବଙ୍ଗଳା ଓ ହିନ୍ଦୀ ଭାଷାର ପୁସ୍ତକମାନ ସେ ପଢି ପାରୁଥିଲେ । ତେଲୁଗୁ ବ୍ୟତୀତ ଅନ୍ୟ ଭାଷାରେ ତାଙ୍କର ପ୍ରଗାଢ଼ ପାଣ୍ଡିତ୍ୟ ଥିଲା ।

ନିଜର ଜ୍ୟେଷ୍ଠ ଭ୍ରାତା ଗୌରଚନ୍ଦ୍ର ଗଜପତିଙ୍କୁ ସେ ପିତୃତୁଲ୍ୟ ଭକ୍ତି କରୁଥିଲେ । ୧୮୯୦ ମସିହାରେ ଗୌରଚନ୍ଦ୍ର କୋର୍ଟ ଅଫ୍ ଓର୍ଡ଼ାସ୍‌ରୁ ନିଜ ରାଜ୍ୟ

ପରିଚାଳନା ଫେରି ପାଇଲେ । ବଣ୍ଟନ ଅନୁସାରେ ପଦ୍ମନାଭଙ୍କର ପୈତୃକ ସମ୍ପତ୍ତିରେ ଭାଗ ଦଶ ଲକ୍ଷ ଟଙ୍କା ପଡ଼ିଲା । ଏହା ସରକାରଙ୍କର ପାଖରେ ଜମା ରହିଥିଲା । ସେହି ଧନର ରକ୍ଷଣାବେକ୍ଷଣ ନିମିତ୍ତ ତାଙ୍କୁ ପଚାରିଯିବାରୁ ସେ ଏ ସମସ୍ତ ଧନ ତାଙ୍କର ଜ୍ୟେଷ୍ଠ ଭ୍ରାତାଙ୍କ ନିକଟରେ ଜମା ରଖିବାକୁ ସରକାରଙ୍କୁ ଉତ୍ତର ଦେଇଥିଲେ । ତତ୍‌କାଳୀନ ରାଜବଂଶ ପରମ୍ପରା ଅନୁସାରେ ଏ ପ୍ରକାର ଭ୍ରାତୃପ୍ରେମ ବିରଳ ଓ ଅବିଶ୍ୱାସ୍ୟ । ଆଦର୍ଶ ଗୃହଶିକ୍ଷକ ଶ୍ୟାମସୁନ୍ଦରଙ୍କର ପ୍ରଭାବ ଫଳରେ ତାଙ୍କର ବ୍ୟକ୍ତିଗତ ଚରିତ୍ର ଅତ୍ୟନ୍ତ ନିର୍ମଳ ଓ ରୁଚି ସମ୍ପନ୍ନ ଥିଲା । ତାଙ୍କ ସହିତ ଭ୍ରମଣକୁ ଶିକ୍ଷାର ଏକ ଅଙ୍ଗ ରୂପେ ଗ୍ରହଣ କରି ପଦ୍ମନାଭ ୧୮୯୩ ମସିହାରେ ଭାରତ ପର୍ଯ୍ୟଟନରେ ବାହାରିଲେ । ମାନ୍ଦ୍ରାଜ, ବମ୍ବେ, ବରୋଦା, ବାରାଣସୀ, କଲିକତା ପ୍ରଭୃତି ସହର ପରିଦର୍ଶନ କରି ନୂତନ ଉତ୍ସାହ ଓ ଯୁଗୋଚିତ ଚିନ୍ତାଧାରାରେ ଅନୁପ୍ରାଣିତ ହୋଇ ସେ ନିଜ ରାଜ୍ୟକୁ ଫେରି ଆସିଲେ । ୧୮୯୪ ମସିହା ଫେବୃଆରୀ ମାସରେ ସେ ପାରଳା ପ୍ରତ୍ୟାଗମନ କରିବା ପରେ ମାର୍ଚ୍ଚ ମାସ ପ୍ରଥମ ଦିବସରେ ତାଙ୍କୁ ଏକ ନାଗରିକ ସମ୍ବର୍ଦ୍ଧନା ଦିଆଯାଇଥିଲା । ସେହି ବର୍ଷ ଡିସେମ୍ବର ମାସରେ ସେ ମାନ୍ଦ୍ରାଜଠାରେ ଅନୁଷ୍ଠିତ ଭାରତୀୟ ଜାତୀୟ କଂଗ୍ରେସ ଅଧିବେଶନରେ ଯୋଗଦାନ କରିଥିଲେ । ଆଲଫ୍ରେଡ ୱେବ୍ ଏହି ଅଧିବେଶନ ସଭାପତି ଥିଲେ ।

୧୮୯୫ ମସିହାରେ ସେ ନିଜ ମାତାଙ୍କୁ ହରାଇଲେ । ସେହି ବର୍ଷ ମଇ ମାସରେ ସମ୍ବଲପୁର ଚକୁଳି ଗ୍ରାମର ସରଦାର ସିଂହଙ୍କ କନ୍ୟାଙ୍କୁ ସେ ବିବାହ କରି ଆନନ୍ଦରେ ପାରିବାରିକ ଜୀବନ କଟାଇଥିଲେ । ସେହି ବର୍ଷ ଡ଼ିସେମ୍ବର ମଧ ମାସରେ ଭାରତୀୟ ଜାତୀୟ କଂଗ୍ରେସର ପୁନା ଅଧିବେଶନରେ ସେ ଯୋଗଦେଇଥିଲେ । ସ୍ୱନାମଧନ୍ୟ ଜାତିର ଜନକ, ସୁରେନ୍ଦ୍ର ନାଥ ବାନାର୍ଜି ଏହି ଅଧିବେଶନରେ ସଭାପତି ଥିଲେ । ଏହି ଅଧିବେଶନ ଉପଲକ୍ଷେ ଭାରତର ବିଭିନ୍ନ ପ୍ରାନ୍ତରୁ ଆଗତ ବହୁ ପଣ୍ଡିତ ବୁଦ୍ଧିଜୀବୀମାନଙ୍କ ସଂସ୍ପର୍ଶରେ ଆସିବାର ସେ ସୁଯୋଗ ପାଇଥିଲେ । ସେମାନଙ୍କର ନୂତନ ବୈପ୍ଳବିକ ଚିନ୍ତାଧାରା ଗ୍ରହଣ କରିବାରେ ସେ ପାଶ୍ଚାତ୍‌ପଦ ହୋଇ ନ ଥିଲେ । ଜାତୀୟ ଭାବାପନ୍ନ ହୋଇ ଭାରତୀୟ ଜାତୀୟ କଂଗ୍ରେସରେ ଯୋଗଦାନ କରିବାରେ ସେ ଓଡ଼ିଶାରୁ ପ୍ରଥମ ବୋଲି ବିବେଚିତ ହୁଅନ୍ତି । ୧୮୯୨ ମସିହା ଜୁନ ମାସରେ ଶ୍ରୀକାକୁଲମ ଟାଉନ୍ ହଲରେ ବାର୍ଷିକ ଅଧିବେଶନରେ ସଭାପତିତ୍ୱ କରି ସେ ନିଜର ଇଂରେଜି ଭାଷଣ ଓ ଚିନ୍ତାଧାରା ଦ୍ୱାରା ଉପସ୍ଥିତ ଭଦ୍ରବ୍ୟକ୍ତିମାନଙ୍କୁ ମୁଗ୍ଧ କରି ଦେଇଥିଲେ

୧୮୯୭ ମସିହା ଡ଼ିସେମ୍ବର ମାସରେ ଅମରାବତୀଠାରେ ଅନୁଷ୍ଠିତ ଭାରତୀୟ ଜାତୀୟ କଂଗ୍ରେସ ଅଧିବେଶନରେ ମଧ୍ୟ ସେ ଯୋଗଦାନ କରି ଥିଲେ । ଜଷ୍ଟିସ୍ ସି.ଶଙ୍କର ନାୟାର ଏହି ଅଧିବେଶନର ସଭାପତି ଥିଲେ । ନିଜର ଗୃହଶିକ୍ଷକ ଓ ସହକର୍ମୀ ଶ୍ୟାମସୁନ୍ଦର ରାଜଗୁରୁଙ୍କ ସହିତ ପଦ୍ମନାଭ ସେଠାରେ ବିଷୟ ନିର୍ବାଚନ କମିଟିର ସଭ୍ୟ ଭାବେ ନିର୍ବାଚିତ ହୋଇଥିଲେ । ୧୮୯୮ ମସିହାରୁ ୧୯୦୨ ମସିହା ପର୍ଯ୍ୟନ୍ତ ସେ ନିଜକୁ ବିଶେଷ କରି ସାହିତ୍ୟ ଓ ସଙ୍ଗୀତ ସେବାରେ ନିୟୋଜିତ କରିଥିଲେ । ଓଡ଼ିଆ ଭାଷାରେ ସଙ୍ଗୀତ ପୁସ୍ତକର ଏକାନ୍ତ ଅଭାବ ଉପଲବ୍ଧି କରି ସେ ବହୁ ଶ୍ରମ ସ୍ୱୀକାର ପୂର୍ବକ 'ସଙ୍ଗୀତ ଲୋଚନ', 'ସଙ୍ଗୀତ ସଂଗ୍ରହ' ଓ 'ଲକ୍ଷଣ ଗ୍ରନ୍ଥ' ପୁସ୍ତକମାନଙ୍କରୁ ଉଦ୍ଧାର କରି ୧୮୯୮ମସିହାରେ 'ତାଳ ସର୍ବସାର ସଂଗ୍ରହ'ନାମକ ଗୋଟିଏ ପୁସ୍ତକ ପ୍ରଣୟନ ଓ ପ୍ରକାଶ କରିଥିଲେ । ନାଟକ ପ୍ରଦର୍ଶନ ଓ ଅଭିନୟ ପ୍ରତି ମଧ୍ୟ ସେ ଆକୃଷ୍ଟ ହୋଇ ପଦ୍ମନାଭ ରଙ୍ଗମଞ୍ଚର ଶ୍ରୀବର୍ଦ୍ଧନ ଓ ସର୍ବାଙ୍ଗୀନ ଉନ୍ନତି ସାଧନ କରିଥିଲେ । ରାଜ୍ୟରେ ଛାପାଖାନା ଖୋଲିବା ଦିଗରେ ଯତ୍ନବାନ ହୋଇ ଗଜପତି ପ୍ରେସ୍ ପ୍ରତିଷ୍ଠା କରାଇ ସେଠାରେ ଉତ୍ତମାନର ପୁସ୍ତକମାନ ପ୍ରକାଶ କରାଇ ପାରିଥିଲେ । ସଙ୍ଗୀତପ୍ରିୟ ଥିବାରୁ ସେ ପ୍ରଥମେ ଦାକ୍ଷିଣାତ୍ୟ କର୍ଣ୍ଣାଟକୀ ରାଗରେ ଅନେକ ସଙ୍ଗୀତ -ରଚନା କରିଥିଲେ । ଏହି ସଙ୍ଗୀତ ଗୁଡ଼ିକ ଏକତ୍ର କରି ସେ 'ଗୀତ ସ୍ତବକ' ନାମକ ଏକ ପୁସ୍ତକ ପ୍ରକାଶ କରିଥିଲେ । ତାଙ୍କର ଜାତୀୟ ପ୍ରେମର ଆଭାସ ତାଙ୍କ ରଚିତ ସଙ୍ଗୀତରୁ ପ୍ରମାଣିତ ହୁଏ । ନିମ୍ନୋକ୍ତ ସଙ୍ଗୀତ ତନ୍ମଧ୍ୟରୁ ଏକ;

ରାଗ ଆନନ୍ଦ ଭୈରବ

"ମଙ୍ଗଳକର ବନ୍ଦନ ଘେନି ପରମ ଈଶ୍ୱର
ମାତୃଭୂମି ମାତୃଭାଷା ଭ୍ରାତୃବୃନ୍ଦର ।
ଉତ୍କଳଜନ ପ୍ରବେଶିଣ ନିଜ କାର୍ଯ୍ୟ କ୍ଷେତ୍ରର
ଜାତୀୟ ଉନ୍ନତି ସାଧନେ ହେବେ ତତ୍ପର ।
ନିବେଶି ମନ, ପାଦେ ବନ୍ଦନ, କରି ଧନଦର
ପାଇ ବିଭବ ଲଭିବେ ଶୁଭ, ହେ ପରାତ୍ପର ।
ଭାରତୀ ପଦେ ଆରତି କରି ଜାତି ସାହିତ୍ୟର
ସେବାରେ ମତି ବଳିବ ରଜନୀ ବାସର ।
ନିଦ୍ରା ମିଳିତ କଳହ ଦ୍ୱେଷ ଅସତ୍ୟଆବର

ଛାଡ଼ି ମିଳିତ ଶକ୍ତି ଗୁଣ ଜାଣନ୍ତୁ ସତ୍ୱର ।
ଶ୍ରୀ ପଦ୍ମନାଭ ଦେବ ଜଣାଏ ଯୋଡ଼ି ବେନି କର
ଅଚିରେ ଏହି ମନୋବାଞ୍ଛା ଫଳୁ ମୋହର ।"

୧୮୯୯ ମସିହାରେ 'ଗୀତ ସ୍ତବକ' ଓ ୧୯୦୦ ମସିହାରେ ନିଜର ବିବିଧ ଦୁଃଖ ପରିହାର ନିମିତ୍ତ ରାଧା-ଗୋବିନ୍ଦଙ୍କ ଶ୍ରୀଛାମୁରେ କର ଯୋଡ଼ି ନିବେଦନ 'ରାଧା-ଗୋବିନ୍ଦ ଜଣାଣ' ତାଙ୍କର ସାହିତ୍ୟ ଓ ସଙ୍ଗୀତ ଆଲୋଚନାର ଫଳସ୍ୱରୂପ ପ୍ରକାଶିତ ହୋଇଥିଲା ।

୧୯୦୦ ମସିହାରେ ପଦ୍ମନାଭଙ୍କର ପ୍ରିୟ ପତ୍ନୀ ପଞ୍ଚମ ସନ୍ତାନ ପ୍ରସବ କରି ସ୍ୱର୍ଗାରୋହଣ କଲେ । ତାଙ୍କର ବହୁବନ୍ଧୁ ଓ ହିତାନ୍ୱେଷୀ ତାଙ୍କୁ ମାତ୍ର ୨୮ ବର୍ଷ ବୟସରେ ପୁନର୍ବିବାହ ନିମିତ୍ତ ଅନୁରୋଧ କଲେ ମଧ ସେ ସେଥିରେ କର୍ଣ୍ଣପାତ ନକରି ନିଜକୁ ଦେଶ ଓ ସାହିତ୍ୟ ସେବାରେ ନିୟୋଜିତ କରି ପାରିବାରିକ ଜୀବନର ଦୁଃଖ ଭୁଲିବାକୁ ବସିଲେ । ଏହି ସମୟରେ ସେ 'ପ୍ରହଲ୍ଲାଦ'ନାଟକ ରଚନା କରିଥିଲେ । ତାହା ୧୯୦୧ ମସିହାରେ ମୁଦ୍ରିତ ହୋଇଥିଲା । ଶୃଙ୍ଗାର ରସଯୁକ୍ତ 'ଚନ୍ଦ୍ରାବତୀ ସ୍ୱୟମ୍ୱର' ନାଟକ ଏହା ପରେ ସେ ରଚନା କଲେ । 'ବାଣଦର୍ପଦଳନ' ପୌରାଣିକ ନାଟକ ସହିତ, ଏହି ନାଟକ ପଦ୍ମନାଭ ରଙ୍ଗାଳୟରେ ମଞ୍ଚସ୍ଥ କରାଯାଇ ସୁଖ୍ୟାତି ଅର୍ଜନ କଲା । ୧୯୦୨ ମସିହାରେ 'ଅହଲ୍ୟା ଶାପ ମୋଚନ' ନାଟକ ରଚନା କରିଥିଲେ । ବୀର ରସପୂର୍ଣ୍ଣ 'ତାରକ ସଂହାର' ଓ ଦାନ, ସତ୍ୟ ଓ ପୁତ୍ରବାତ୍ସଲ୍ୟକୁ ଆଦର୍ଶ ଭାବରେ ଉପସ୍ଥାପିତ କରି ରଚିତ ନାଟକ 'ଦାନ ପରୀକ୍ଷା' ଏହା ପରେ ଅଭିନୀତ ହୋଇଥିଲା । ସମସ୍ତ ନାଟକର ଅଭିନୟ ଚିତ୍ତାକର୍ଷକ ଓ ମନୋମୁଗ୍ଧକର ଥିଲା ବୋଲି ସେତେବେଳେର ବାଳକ, ପାରଳା କଲେଜର ଅବସରପ୍ରାପ୍ତ ଅଧକ୍ଷ ଜଗନ୍ନାଥ ସ୍ୱାମୀ ପ୍ରକାଶ କରନ୍ତି ।

ପଦ୍ମନାଭଙ୍କ ଚରିତ୍ର ଆଦର୍ଶ ସ୍ଥାନୀୟ ଥିଲା । ତାଙ୍କର ଗୁରୁଭକ୍ତି ଅତୁଳନୀୟ । ଗୃହ ଶିକ୍ଷକ ଶ୍ୟାମସୁନ୍ଦର ରାଜଗୁରୁ ତାଙ୍କର ବନ୍ଧୁ, ସଖା ଓ ପଥ ନିର୍ଦ୍ଦେଶକ ଥିଲେ । ତାଙ୍କୁ ସେ ଗୋଟିଏ ସୁନାହାର ଗୁରୁଦକ୍ଷିଣା ସ୍ୱରୂପ ପ୍ରଦାନ କରିଥିଲେ । ଶ୍ୟାମସୁନ୍ଦରଙ୍କର ଏହା ଦୈନିକ ପରିଧାନ ଥିଲା । ନିଜର ଜୀବିତ କାଳ ମଧ୍ୟରେ ସେ ଗୃହଶିକ୍ଷକଙ୍କୁ ମାସିକ ନିୟମିତ ଭାବେ ଟ୭୫/-ଭତ୍ତା ପ୍ରଦାନ କରୁଥିଲେ । ଦରିଦ୍ର ଛାତ୍ରମାନଙ୍କର ବନ୍ଧୁଥାଇ ପଦ୍ମନାଭ ସେମାନଙ୍କୁ ବସ୍ତ୍ର, ପୁସ୍ତକ, ମାସିକ ବେତନ ଓ ପରୀକ୍ଷା ସମୟରେ ଫିଜ୍ ସାହାଯ୍ୟ କରୁଥିଲେ । ତାଙ୍କର ନିଜ ସଞ୍ଚିତ ଧନରୁ ସେ ଛାତ୍ରଛାତ୍ରୀମାନଙ୍କର

ସାହାଯ୍ୟ ନିମିତ୍ତ ବାର୍ଷିକ ଟ୮୫୦/-ସାହିତ୍ୟର ଉନ୍ନତି ନିମିତ୍ତ ଟ୭୫୦/- ଓ ନାଟ୍ୟଶାଳା ନିମିତ୍ତ ଟ୧୦୦/-ନିର୍ଦ୍ଦିଷ୍ଟ କରି ରଖିଥିଲେ । କଟକର ଉତ୍କଳ ସାହିତ୍ୟ ସମାଜକୁ ସେ ବାର୍ଷିକ ଟ୫୦/- ସାହାଯ୍ୟ ଦେଉଥିଲେ ଓ ଦରିଦ୍ର ସାହିତ୍ୟସେବୀମାନଙ୍କୁ ଆବଶ୍ୟକ ଅନୁସାରେ ସାହାଯ୍ୟ ଦେବାରେ କୁଣ୍ଠାବୋଧ କରୁ ନଥିଲେ । ଗଞ୍ଜାମ ଜିଲ୍ଲାରେ ସେ ପ୍ରଥମେ ଉତ୍କଳ ଭାଷାରେ ଦୃଶ୍ୟ କାବ୍ୟର ପରିଚୟ ଦେଇ ଲୋକରେ ସମ୍ମାନିତ ହୋଇଥିଲେ । ପାରଳାର ସ୍ଥାୟୀ ରଙ୍ଗମଞ୍ଚରେ ନାଟକ ଅଭିନୟ କରାଇ ଅସଂଖ୍ୟ ସ୍ତ୍ରୀ ପୁରୁଷଙ୍କୁ ଆନନ୍ଦ ଉଦ୍ଦୀପନା ଦେଇ ସେ ନିଜକୁ ଧନ୍ୟ ମନେ କରୁଥିଲେ । ତାଙ୍କର ସମୟୋଚିତ ଉତ୍ସାହ ପ୍ରଦାନ ଫଳରେ ସେ ସମୟରେ ପାରଳାରେ ଅନେକ ଲେଖକ ସୃଷ୍ଟି ହୋଇଥିଲେ । ଛାତ୍ରମାନେ ତାଙ୍କର ପ୍ରାୟ ସାଥୀ ଥିଲେ । ସେ ସେମାନଙ୍କୁ ଉତ୍କଳ ସାହିତ୍ୟ ଅଧ୍ୟୟନରେ ଉତ୍ସାହିତ କରୁଥିଲେ ଓ ସେମାନଙ୍କର ସମାବେଶରେ ସାଗରର୍ଭିକ ବକ୍ତୃତା ଦେଇ ପଦ୍ମନାଭ ସେମାନଙ୍କ ମନରେ ସ୍ୱଦେଶାଭିମାନ ସୃଷ୍ଟି କରି ପାରୁଥିଲେ । ନିଜେ ବିଭିନ୍ନ ଭାଷାରେ ପୁସ୍ତକ କ୍ରୟ କରି ପଢୁଥିଲେ । ପଢ଼ି ସାରିବା ପରେ ସେଗୁଡ଼ିକ ଏକତ୍ର କରି ସେ ଗୋଟିଏ ପୁସ୍ତକାଗାର ଆରମ୍ଭ କଲେ । ଅନେକ ଦୁଷ୍ପ୍ରାପ୍ୟ ଓ ଦୁର୍ଲଭ ଗ୍ରନ୍ଥ ଏହି ପୁସ୍ତକାଗାରରେ ଥିବାର ଅଧ୍ୟକ୍ଷ ଜଗନ୍ନାଥ ସ୍ୱାମୀ କହିଥାନ୍ତି । ଏହା ଶ୍ରୀ ପଦ୍ମନାଭ ପାଠାଗାର ନାମରେ ସୁପରିଚିତ ଥିଲା । ବହୁ ସାଧାରଣ ନାଗରିକଙ୍କର ପଠନ ସ୍ପୃହା ସୃଷ୍ଟି ଏହାର ଅନନ୍ୟ ଅବଦାନ । ବର୍ତ୍ତମାନ ମଧ୍ୟ ପାରଳାଖେମୁଣ୍ଡିରେ ପାଠାଗାରରେ ଦୈନନ୍ଦିନ ଉପସ୍ଥାନ ଅନ୍ୟ ଯେ କୌଣସି ସ୍ଥାନଠାରୁ ବିଶେଷ ଉତ୍ସାହପ୍ରଦ । ପଦ୍ମନାଭଙ୍କ ଉତ୍ସାହ, ଉଦ୍ୟମ ଓ ଅର୍ଥ ସାହାଯ୍ୟରେ ୧୯୦୨ ମସିହାରେ ଗଞ୍ଜାମ ସମ୍ମିଳନୀ ହୋଇ ପରବର୍ତ୍ତୀ ସମୟରେ ତାହା ଉତ୍କଳ ଭାଷୀ ଅଞ୍ଚଳର ପ୍ରକାଣ୍ଡ ସମ୍ମିଳନୀ ଆକାର ଧାରଣ କରିଥିଲା । ରାଜ ପରିବାରରେ ଜନ୍ମ ଗ୍ରହଣ କରି ମଧ୍ୟ ଭାରତ ସରକାରଙ୍କୁ ସାଧାରଣ ନାଗରିକମାନଙ୍କର ଦୁଃଖ ଦୁର୍ଦ୍ଦଶା ଜଣାଇବାକୁ ହେଉଥିବା ସକଳ ସଭା ସମିତିରେ ସେ ନିର୍ଭୟରେ ଯୋଗଦାନ କରୁଥିଲେ । ପୂର୍ବରୁ କୁହାଯାଇଛି ଶ୍ୟାମସୁନ୍ଦର ରାଜଗୁରୁଙ୍କର ସହାୟତାରେ ପ୍ରତିଷ୍ଠିତ ଉତ୍କଳ ହିତୈଷିଣୀ ସଭା, ୧୮୯୪ ମସିହାରେ ମାନ୍ଦ୍ରାଜ ଜାତୀୟ କଂଗ୍ରେସ, ୧୮୯୫ ମସିହାରେ ପୁନା କଂଗ୍ରେସ ୧୮୯୬ ମସିହାରେ କଲିକତା କଂଗ୍ରେସ ଓ ୧୮୯୭ ମସିହାରେ ଅମରାବତୀ କଂଗ୍ରେସକୁ ପ୍ରତିନିଧି ପଠାଇଥିଲା । ପଦ୍ମନାଭ ତିନୋଟି ଅଧିବେଶନରେ ଯୋଗଦେଇ ନିର୍ଭୀକ ଭାବରେ ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ । ଭାରତରେ Indian Arms Act ଜାରି ସମୟରେ ପ୍ରକାଶ୍ୟରେ ସେ ଏହି

ଆଇନର ବିରୋଧ କରିଥିଲେ ଓ ସର୍ବସାଧାରଣରେ ଏହାର ସମାଲୋଚ଼ନା କରି ନିଜ ସ୍ୱଦେଶପ୍ରେମର ପରାକାଷ୍ଠ ପ୍ରଦର୍ଶନ କରିଥିଲେ । ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସେ ରାଜ୍ୟର ପ୍ରଜାମାନଙ୍କୁ ସାହାଯ୍ୟ କରି ସେମାନଙ୍କର ଦୁଃଖ ଅପନୋଦନରେ ସମର୍ଥ ହେଉଥିଲେ । ପାରଳାଖେମୁଣ୍ଡି ସହରରେ ବର୍ଷକୁ ଥରେ ସେ ସମସ୍ତ ଅନ୍ଧ, ପଙ୍ଗୁ, ଦୁର୍ବଳ ଅକ୍ଷମ ଲୋକମାନଙ୍କୁ ଅନ୍ନ ଓ ବସ୍ତ୍ର ଦାନ କରି ସେମାନଙ୍କର ଆଶୀର୍ବାଦ ଓ କୃତଜ୍ଞତା ଗ୍ରହଣ କରୁଥିଲେ । ଏହି ପ୍ରକାର ସକଳ ସଦ୍‌ଗୁଣରେ ଅଳଂକୃତ ଥାଇ ନିଜର ସ୍ୱତନ୍ତ୍ର ରାଜ୍ୟ ବା ରାଜ ପଦବୀ ନ ଥିଲେ ମଧ୍ୟ ସେ ପ୍ରାକୃତିକ ଓଡ଼ିଶାର ସମସ୍ତ ରାଜା ମହାରାଜାମାନଙ୍କ ମଧ୍ୟରେ ନିଜର ଗୌରବମୟ ଆସନ ପ୍ରତିଷ୍ଠା କରି ପାରିଥିଲେ ।

୧୯୦୩ ମସିହାରେ ସେ ରୋଗାକ୍ରାନ୍ତ ହେଲେ । କଲିକତା ଓ ମାନ୍ଦ୍ରାଜ ସହରରେ ସମସ୍ତ ପ୍ରକାର ଚିକିତ୍ସା ସତ୍ତ୍ୱେ ରୋଗର ଉପଶମ ଦେଖାଗଲା ନାହିଁ । ଶେଷରେ ୧୯୦୪ ମସିହା ଫେବୃଆରୀ ୪ ତାରିଖରେ ଈଶ୍ୱରଙ୍କର ପବିତ୍ର ନାମ ଉଚ୍ଚାରଣ କରୁ କରୁ ମାତ୍ର ୩୨ବର୍ଷ ବୟସରେ ତାଙ୍କର ଜୀବାତ୍ମା ଅନିତ୍ୟ ଶରୀରରୁ ବିଦାୟ ନେଲା । ୧୯୦୩ ମଇ ମାସଠାରୁ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ଭଗବତ୍ ଆରାଧନା ଓ ପ୍ରାର୍ଥନାରେ ସମୟ କଟାଉଥିଲେ । ଏହି ସମୟରେ ସେ ଜୀବର ଅନିତ୍ୟତାକୁ ଲକ୍ଷ୍ୟ କରି କେତେକ ସୁନ୍ଦର ପଦ୍ୟ ରଚନା କରିଥିଲେ । ସେଥିରୁ ଗୋଟିଏ ନିମ୍ନ ପ୍ରକାର;

"ଥରେ କର ବିଚାର, ଜୀବ ଅଟଇ ନଶ୍ୱର,
ଯେତେବେଳେ ଆସି ପ୍ରାଣ ଦେବ ଗ୍ରାସି ଦୁଃଖରେ ହେଉ କାତର ।
ଧନ ଜାୟା ସୁତ, ବନ୍ଧୁ ସ୍ନେହୀ ଭ୍ରାତ କେହି ନ ଯିବେ ସଙ୍ଗେ ତୋର,
ତେଜି ଅଭିମାନ, ହୋଇ ସାବଧାନ ବୈରାଗ ଅଭ୍ୟାସ କର ।"

ସ୍ୱଭାବ କବି ଗଙ୍ଗାଧର ମେହେର ତାଙ୍କ ବିୟୋଗରେ ବ୍ୟଥିତ ହୋଇ ଲେଖିଲେ;

"ପାରଳା ରାଜ ଉଦ୍ୟାନେ ପାରିଜାତ ରୂପେ
ଫୁଟୁଥିଲା ପଦ୍ମନାଭ ନାରାୟଣ ଦେବ
ସୁଗୁଣ ସଦ୍‌ଗନ୍ଧେ ତାର ସମଗ୍ର ଉତ୍କଳ
ଥିଲା ପରିବ୍ୟାପ୍ତ, ମାତ୍ରକାଳ ରୂପୀ କୀଟ ।
ଦୁରନ୍ତ ନିର୍ମମ ପଶି ଅଲକ୍ଷ୍ୟେ ସେ ଫୁଲେ
କଲା ତାକୁ ଛିନ୍ନ ହାୟ ଅକାଳେ ନିର୍ଦ୍ଦୟେ ।" **(ଉତ୍କଳ କମଳା(୧୯୧୯), ୨ୟ ସର୍ଗ)**

ବ୍ୟାସକବି ଫକୀର ମୋହନ ତାଙ୍କର ଅମର ଆତ୍ମା ଉଦ୍ଦେଶ୍ୟରେ ପ୍ରମାଣ କରି ଲେଖିଥିଲେ ;

"ପଦ୍ମନାଭ ନାରାୟଣ ଦେବ ମହାମତି
ତୁମ୍ଭ ଆତ୍ମା ଉଦ୍ଦେଶ୍ୟରେ କରୁଛି ପ୍ରଣତି ।
ଗଜପତି ଉଚ୍ଚବଂଶେ ଜନମ ତୁମ୍ଭର
ସୁଶୀଳ ବିଦ୍ୱାନ ସାଧୁ ସର୍ବଗୁଣଧର ।
କରି ଯାଇଅଛ ଯେଉଁ ନାଟକ ରଚନା
କବିତ୍ୱ, ପାଣ୍ଡିତ୍ୟ. ଯଶ କରିବ ଘୋଷଣା ।
ଯୌବନ, ପ୍ରଭୁତ୍ୱ, ଧନ ଅନର୍ଥ ଆଧାର
ଜନ୍ମାଇ ନ ଥିଲା ତୁମ୍ଭ ଚିତ୍ତରେ ବିକାର ।
ଆପ୍ୟାୟିତ ହୋଇଥାନ୍ତି ଅଭ୍ୟାଗତଗଣ
ଶୁଣି ତୁମ୍ଭ ସବିନୟ ମିଷ୍ଟ ସମ୍ଭାଷଣ
ଥିଲ କବି କରୁଥିଲ କବିଙ୍କୁ ସମ୍ମାନ
ଅପୂର୍ବ ସୁଦୃଶ୍ୟ ତୁମ୍ଭ ନାଟକ ଆଖ୍ୟାନ ।
କାହାକୁ ମୁଁ ଦେବି ତୁମ୍ଭ ସହିତ ଉପମା
ଉତ୍କଳ-ଆକାଶୁଁ ଖସି ପଡ଼ିଛି ଚନ୍ଦ୍ରମା ।"

ସେହିପରି କବିଶେଖର ଚିନ୍ତାମଣି ୧୯୦୬ ମସିହାରେ ପ୍ରକାଶିତ ତାଙ୍କର "ଗଞ୍ଜାମ ଭ୍ରମଣ" କାବ୍ୟରେ ଲେଖିଥିଲେ ;

"ପଦ୍ମନାଭ ନାରାୟଣ ଆହା ରାଜଭାଇ
ପୂର୍ଣ୍ଣଚନ୍ଦ୍ର ପରି ଥିଲେ ପାରଳାରେ ଉଇଁ ।
କାଳବଶେ ଅକାଳେ ସେ ହୋଇଗଲେ ଅସ୍ତ
ଗଞ୍ଜାମ ଜିଲ୍ଲାରେ ଗଲା ଛିଡ଼ି ଦକ୍ଷହସ୍ତ ।
ଧନ୍ୟ ରାଜଭ୍ରାତା ତୁମ୍ଭେଥିଲ ମହାକୃତୀ
ଗାଉଛି ତୁମ୍ଭର ଯଶ କଲେଜ ପ୍ରଭୃତି ।
କର୍ମବୀର ଥିଲ କରିଗଲ ଦେଶ କାମ
ଇତିହାସେ ସ୍ୱର୍ଣ୍ଣାକ୍ଷରେ ଥିବ ତୁମ୍ଭ ନାମ ।"

ପଦ୍ମନାଭ ରଙ୍ଗମଞ୍ଚରେ ଶିରୋଭାଗରେ ଲକ୍ଷ୍ନୌରୁ ଆଗତ କୃତୀ

ପଟ୍ଟଶିଳ୍ପୀଙ୍କ ଅଙ୍କିତ ଚିତ୍ର ତାଙ୍କର ସ୍ମୃତି ଧାରଣ କରି ପଡ଼ି ରହିଲା । ଚିତ୍ରରେ ପଦ୍ମନାଭ ନାଟକ ଲେଖୁ ଅଛନ୍ତି, ନାରଦ ତାହାଙ୍କ ମସ୍ତକରେ ହସ୍ତାର୍ପଣପୂର୍ବକ ଆଶୀର୍ବାଦ କରୁ ଅଛନ୍ତି ଓ ବୀଣାପାଣି ସରସ୍ୱତୀ ଏହି ସମୟରେ ହଂସ ବାହନରେ ସ୍ୱର୍ଗରୁ ଅବତରଣ କରୁ ଅଛନ୍ତି ।





ଶ୍ରୀ ପଦ୍ମନାଭ ନାରାୟଣ ଦେବ

# କବିଚନ୍ଦ୍ର ରଘୁନାଥ ପରିଛା

"ପଣ୍ଡା ପିଣ୍ଡା ତଳକୁ ବସିଲେ ମଣ୍ଡପେ ଶାସନୀଯେ
ଚାଣ୍ଡେ ଚାଣ୍ଡେ ବସି ବସିଗଲେ ଚତ୍ୱରେ ପାଡ଼ି ଧାଡ଼ି
ଗଣ୍ଡା ଗଣ୍ଡା ଲଡ୍ଡୁ, ଗଡ୍ଡୁସମେ, ଖଣ୍ଡପାକେ ସଜାଡ଼ି
ଭେଣ୍ଡା ଭେଣ୍ଡା ଦ୍ୱିଜ ପରଶିଲେ, ପୂର୍ଣ୍ଣେ ପାତ୍ରେ ଅଜାଡ଼ି"

ଓଡ଼ିଶାର ପୁରପଲ୍ଲୀରେ ଏ ଗୋଟିଏ ଗୀତର ଧାଡିଗୁଡ଼ିକ ଅଜଣା ନୁହେଁ ମାତ୍ର ଏଥିର ଲେଖକ ପାରଳାଖେମୁଣ୍ଡିର କବି ରଘୁନାଥ ପରିଛା ବିଶେଷ ଲୋକପ୍ରିୟ ନୁହନ୍ତି ବା ତାଙ୍କର ସମସ୍ତ ରଚନା ଏ ପର୍ଯ୍ୟନ୍ତ ଲୋକଲୋଚନକୁ ଆସିପାରିନାହିଁ । ଉପରୋକ୍ତ ଗୀତଟି କବିଚନ୍ଦ୍ର ରଘୁନାଥ ପରିଛାଙ୍କର ଲିଖିତ 'ଗୋପୀନାଥ ବଲ୍ଲଭ' ନାଟକରେ ସ୍ଥାନ ପାଇଅଛି । ପ୍ରାୟ ୧ ୨ ୫ ବର୍ଷ ପୂର୍ବେ ଏହି ନାଟକଟି କର୍ମବୀର ଗୌରୀଶଙ୍କର ରାୟଙ୍କର ଆନୁକୂଲ୍ୟରେ ୧୮୬୬ ମସିହା ଅପ୍ରେଲ ୨୬ ତାରିଖରେ କଟକରେ ମୁଦ୍ରଣ କରାଯାଇ ଜନସମାଜରେ ଉପସ୍ଥାପିତ କରାଯାଇଥିଲା । ଓଡ଼ିଶାର ପୁରାତନ କବିମାନଙ୍କର ରଚନାର ପ୍ରଚାର ପ୍ରସାର ଫଳରେ ଉତ୍କଳର ଗୌରବ ବିସ୍ତାର ହେଉଥିବା ଦୃଷ୍ଟିରୁ 'ବର୍ତ୍ତମାନ କାଳରେ ଉତ୍କଳ ଦେଶର ଲୋକମାନେ ବିଦ୍ୟା ଓ ବୁଦ୍ଧିର ତଦ୍ରୂପ ବ୍ୟବହାର କରୁ ଅଛନ୍ତି କି ନା ଏ କଥାର ପରିଚୟ ଦେବା ନିମିତ୍ତ' ଏହି ନାଟକଟି ଉପସ୍ଥାପିତ ହେବା ମୁଖବନ୍ଧରୁ ଜଣାଯାଏ । ଓଡ଼ିଶାର ପ୍ରଥମ ନାଟକଟି କଅଣ ଏ ବିଷୟରେ ଓଡ଼ିଶାର ପଣ୍ଡିତ ମଣ୍ଡଳୀରେ ଗୁରୁତର ମତଭେଦ ଦେଖାଯାଏ । ଡ଼େପୁଟି ଜଗମୋହନ ଲାଲଙ୍କର 'ବାବଜୀ' ନାଟକ ୧୮୭୭ ମସିହା, ରାମ ଶଙ୍କର ରାୟଙ୍କର 'କାଞ୍ଚି କାବେରୀ' ନାଟକ ୧୮୮୦ ମସିହା ଓ କବିଚନ୍ଦ୍ର ରଘୁନାଥ ପରିଛାଙ୍କର 'ଗୋପୀନାଥ ବଲ୍ଲଭ' ନାଟକ ୧୮୬୬ ମସିହାରେ ପ୍ରକାଶ ପାଇଥିବାରୁ କବିଚନ୍ଦ୍ର ରଘୁନାଥ ଯେ ଏ ସମ୍ମାନର ଅଧିକାରୀ ନୁହନ୍ତି ଏହା ମଧ୍ୟ ନିର୍ବିବାଦରେ କୁହାଯାଇ ନ ପାରେ । ଅଧାପକ ଗୌରୀକୁମାର ବ୍ରହ୍ମାଙ୍କର ମତରେ "ଭଞ୍ଜଙ୍କର ଶବ୍ଦ ପାଣ୍ଡିତ୍ୟ, କବିସୂର୍ଯ୍ୟଙ୍କର ଶବ୍ଦଯୋଜନାପରିପାଟୀ ଭକ୍ତି ଶବ୍ଦାମ୍ୟ ଏହି ତ୍ରିତୟର ମଧୁର ସମନ୍ୱୟ ଗୋପୀନାଥ ବଲ୍ଲଭ ନାଟକର ରଚୟିତା ରଘୁନାଥଙ୍କଠାରେ ସ୍ପଷ୍ଟ ଲକ୍ଷ୍ୟ କରିହେବ ।"

ଏକାଧାରାରେ କବି,ପଣ୍ଡିତ, ଭକ୍ତ, ସଙ୍ଗୀତଜ୍ଞ ଓ ବହୁ ଭାଷାଭିଜ୍ଞ ବ୍ୟକ୍ତି କବିଚନ୍ଦ୍ର

ରଘୁନାଥ ପରିଛା ପାରଳାଖେମୁଣ୍ଡି ସହରର କଟକିଆ ବ୍ରାହ୍ମଣ ସାହି (ଅଧୁନା କବିଚନ୍ଦ୍ର ସାହି)ରେ ଶାଳିବାହାନ ଶକାବ୍ଦ ୧୭୧୭ ବା ୧୭୯୫ ଖ୍ରୀଷ୍ଟାବ୍ଦରେ ଫାଲଗୁନ ଶୁକ୍ଳ ଦ୍ୱିତୀୟା ରବିବାର ଦିନ ମେଷ ଲଗ୍ନେ ଓ ରେବତୀ ନକ୍ଷତ୍ରରେ ଜନ୍ମ ଗ୍ରହଣ କରିଥିଲେ । ସ୍ୱରଚନାରୁ ଜଣାପଡ଼େ ତାଙ୍କ ପିତାଙ୍କ ନାମ ଚ଼ନ୍ଦ୍ର ଶେଖର ଓ ମାତାଙ୍କ ନାମ ହାରାମଣି, ପିତାମହଙ୍କର ନାମ ରାଧାଚ଼ରଣ ଓ ମାତାମହଙ୍କ ନାମ ପଦ୍ମନାଭ । କବିଙ୍କର କୌଳିକ ଉପାଧି ପଣ୍ଡା ଥିଲା, ମାତ୍ର ଯେତେବେଳେ ତାଙ୍କର ପୂର୍ବପୁରୁଷମାନେ, ପାରଳାଖେମୁଣ୍ଡି ମହାରାଜାଙ୍କର ବର୍ତ୍ତମାନ ଶ୍ରୀକାକୁଲମ ଜିଲ୍ଲା ଅନ୍ତର୍ଗତ ବଂଶଧାରା ନଦୀ କୂଳର ଲିହୁରି ଗ୍ରାମରେ ଅବସ୍ଥିତ ରାଜ ପ୍ରତିଷ୍ଠିତ ଶ୍ରୀ ଗୋପୀନାଥ ମହାପ୍ରଭୁଙ୍କର ପରୀକ୍ଷଣ କାର୍ଯ୍ୟରେ ନିଯୁକ୍ତ ହୋଇଥିଲେ, ସେତେବେଳେ ସେମାନେ 'ପରୀକ୍ଷା' ଉପାଧିରେ ଭୂଷିତ ହୋଇଥିଲେ ଓ କାଳକ୍ରମେ ତାହା ଲୋକ ମୁଖରେ ପରିଛା ରୂପେ ଅପଭ୍ରଂଶ ହୋଇଅଛି । ବର୍ତ୍ତମାନ ମଧ୍ୟ କବିଙ୍କର ବଂଶଧରମାନେ 'ପରିଛା' ଉପାଧି ବ୍ୟବହାର କରୁଅଛନ୍ତି ।

କବିଙ୍କର ବାଲ୍ୟ ଜୀବନ ବିଷୟରେ କୌଣସି ତଥ୍ୟ ହସ୍ତଗତ ହୋଇ ପାରୁନାହିଁ । ଜଣାପଡୁଛି ସେ ଲିହୁରିଠାରେ ଗୋପୀନାଥଙ୍କର ମନ୍ଦିରରେ ପରୀକ୍ଷା ଭାବେ ଅଧିକାଂଶ ସମୟ ଅତିବାହିତ କରିଥିଲେ । ସେତେବେଳକୁ ସେ ଓଡିଆ ଓ ସଂସ୍କୃତ ଉଭୟ ଭାଷାରେ ପ୍ରଗାଢ ପାଣ୍ଡିତ୍ୟ ଅର୍ଜନ କରି ସାରିଥିଲେ । ତେଲୁଗୁ ବ୍ୟତୀତ ସେ ହିନ୍ଦି ମଧ୍ୟ ଜାଣିଥିଲେ ଓ ଉଭୟ ଭାଷାରେ କବିତା ରଚନା କରିପାରୁଥିଲେ । ଏହାଛଡା ସଙ୍ଗୀତ, ନୃତ୍ୟକଳା, ନାଟ୍ୟକଳା, ଯନ୍ତ୍ରବାଦନ ଆଦି ଗାନ୍ଧର୍ବ ବିଦ୍ୟାରେ ତାଙ୍କର ନିପୁଣତା ଥିଲା । କବିତା ଓ ଚଉପଦୀ ରଚନା ତାଙ୍କର ନିତ୍ୟକର୍ମ ଥିଲା । ଅମ୍ବିକା ନାମ୍ନୀ ସରଳା, ପତିପରାୟଣା ନାରୀଙ୍କର ସହିତ ତାଙ୍କର ଶୁଭପରିଣୟ ହୋଇଥିଲା । କିମ୍ବଦନ୍ତୀ ଅଛି ଯେ ଲିହୁରିଠାରେ ଗୋପୀନାଥଙ୍କ ମନ୍ଦିର ମଧ୍ୟରେ ଜଣେ ସନ୍ନ୍ୟାସୀଙ୍କର ସହିତ କବିଙ୍କର ସାକ୍ଷାତ ହୋଇ ତାଙ୍କ ସହିତ ଘନିଷ୍ଠତା ଆସିଲା । ପ୍ରତ୍ୟହ କବିତା ଶୁଣାଇ ସେ ସନ୍ନ୍ୟାସୀଙ୍କର ମନୋରଞ୍ଜନ କରୁଥିଲେ । ସନ୍ନ୍ୟାସୀ ପ୍ରୀତ ହେଲେ । ତାଙ୍କୁ ନୀଳ ସରସ୍ୱତୀ ପରିସ୍ଫୁର୍ତ୍ତ ହେଲା ଏହା ଜାଣି କବି ନିଜର ସମସ୍ତ କବିତା ବଂଶଧାରା ନଦୀ ସ୍ରୋତରେ ନିକ୍ଷେପ କରିଥିଲେ । ନୀଳ ସରସ୍ୱତୀ ଅନୁଗ୍ରହ କଲେ କବିତା, ଜିହ୍ୱାରେ ବାସ କରିଥିବାର ବିଶ୍ୱାସ ଥାଏ । ଏଥିର ସତ୍ୟତା ଅବଶ୍ୟ ପରୀକ୍ଷିତ ହୋଇ ନାହିଁ । ୧୮୯୬ ମସିହାରେ ଗୋପୀନାଥ ବଲ୍ଲଭ ନାଟକର ୨ୟ ସଂସ୍କରଣ ପ୍ରକାଶ ପାଇଲା । ମାତ୍ର କବି ଏହା

ପୂର୍ବରୁ ଦେହତ୍ୟାଗ କରିସାରିଥିଲେ । କବିଚନ୍ଦ୍ର ଯୌବନାବସ୍ଥାରେ ଥରେ ଶ୍ରୀକ୍ଷେତ୍ର ପୁରୁଷୋତ୍ତମକୁ ଯିବାର ସୁଯୋଗ ପାଇଥିଲେ । ସେହି ସମୟରେ ପୁରୀର ମୁକ୍ତିମଣ୍ଡପ ସଭା ବହୁ ଗୁଣୀ ଜ୍ଞାନୀ କବି ଓ ପଣ୍ଡିତମାନଙ୍କ ଦ୍ୱାରା ଅଳଂକୃତ ଥିଲା । କବି ନିଜର ଅସାଧାରଣ କାବ୍ୟ ପ୍ରତିଭା ବଳରେ ପଣ୍ଡିତମାନଙ୍କୁ ମୁଗ୍ଧ କରି ସଭା ପକ୍ଷରୁ 'କବିଚନ୍ଦ୍ର' ଉପାଧି ଲାଭ କରିଥିଲେ । ପରେ ସେ ଯୁଗର ଗୁଣଗ୍ରାହୀ ଜନନାୟକ ଶ୍ରୀ ଗୌରୀଶଙ୍କର ରାୟ (ଖ୍ରୀ. ୧୮୩୮-୧୯୧୭) ତାଙ୍କୁ କଟକ ଡକାଇ ନେଇ ସେଠାରେ ଏକ ମାନପତ୍ର ପ୍ରଦାନ କରିଥିଲେ । ନିଜର କଟକ ପ୍ରିଣ୍ଟିଂ ପ୍ରେସରେ ସେ କବିଙ୍କ ରଚିତ ଗୋପୀନାଥ ବଲ୍ଲଭ ନାଟକ ୧୮୬୮ ମସିହାରେ ପ୍ରକାଶ କରାଇଥିଲେ । ଏହି ଗ୍ରନ୍ଥର ସମସ୍ତ ମୁଦ୍ରଣ ଗୌରୀଶଙ୍କର ନିଜେ ବହନ କରି ଥିଲେ । ଏହାର ଭାଷା ଓଡ଼ିଆ ହେଲେ ମଧ୍ୟ ପଦ୍ୟଗୁଡ଼ିକ ବିଶୁଦ୍ଧ ସଂସ୍କୃତ ଛନ୍ଦରେ ଲେଖାଯାଇଥିଲା ।

୧୮୦୩ ମସିହାରେ ଉତ୍କଳରେ ଇଂରେଜ ଶାସନ ପ୍ରବର୍ତ୍ତିତ ହେଲା । ଏକ ପକ୍ଷରେ ପଡ଼ୋଶୀ ବଙ୍ଗ ଓ ଅନ୍ୟ ପକ୍ଷରେ ମାନ୍ଦ୍ରାଜ ଅନ୍ତର୍ଗତ ଆନ୍ଧ୍ର ଏ ଦୁହିଙ୍କର ପ୍ରଭାବ ଓଡିଶାର ସାଂସ୍କୃତିକ ଦୀବନରେ ପ୍ରତିଫଳିତ ହେଲା । ତତ୍କାଳୀନ ସାହିତ୍ୟ ସ୍ରଷ୍ଟାମାନଙ୍କର ରଚନାରେ ଏହି ପ୍ରଭାବ ସ୍ପଷ୍ଟ ଦେଖାଯାଏ । କବି ପରମ ବୈଷ୍ଣବ ଥିଲେ । ଲିହୁରି ଗୋପୀନାଥଙ୍କର ସେ ପୂଜାରୀ ଥିଲେ । ରାୟ ରାମାନନ୍ଦଙ୍କର ରଚିତ 'ଜଗନ୍ନାଥ ବଲ୍ଲଭ' ନାଟକ ଏ ଦେଶର ବୈଷ୍ଣବମାନଙ୍କର ଏକ ଆଦରଣୀୟ ଗ୍ରନ୍ଥ । ତଦ୍ୱାରା ପ୍ରଭାବିତ ହୋଇ କବି ନିଜ ନାଟକଟିର ନାମ 'ଗୋପୀନାଥ ବଲ୍ଲଭ'ରଖିଥିବାର ଅନୁମାନ କରାଯାଏ । ରାଧାକୃଷ୍ଣ ଚରିତ୍ର ପରିବେଷଣରେ କବି ଗଦ୍ୟ ପଦ୍ୟ ମାଧ୍ୟମରେ ନୂତନ ଶୈଳୀ ପରିସ୍ଫୁଟିତ କରିପାରିଥିଲେ । ୧୮୬୮ ଓ ୧୮୯୬ ମସିହାରେ ନାଟକଟିର ଦୁଇଟି ସଂସ୍କରଣ ମୁଦ୍ରିତ ଓ ପ୍ରକାଶିତ ହୋଇଥିଲା । ୧୯୫୯ ମସିହାରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ତରଫରୁ ଏହାର ପୁନଃ ମୁଦ୍ରଣ ପ୍ରକାଶ ପାଇଅଛି । ମାତ୍ର ଏହାର ସଟୀକ ସଂସ୍କରଣ ପ୍ରକାଶିତ ହୋଇଥିଲେ ଏହା ବିଶେଷ ଆଦୃତ ଓ ଲୋକପ୍ରିୟ ହୋଇ ପାରିଥାଆନ୍ତା ।

କବିଙ୍କର ପ୍ରକାଶିତ ରଚନାମାନ ଶବ୍ଦାଳଙ୍କାର ପୂର୍ଣ୍ଣ । କବି ଜଣେ ପ୍ରତିଭାସମ୍ପନ୍ନ ଶବ୍ଦଯୋଜନା ବିଶେଷଜ୍ଞ ଥିଲେ । ଅର୍ଥାଳଙ୍କାର ଅପେକ୍ଷା ଶବ୍ଦାଳଙ୍କାର ପ୍ରୟୋଗ ତାଙ୍କ ରଚନାରେ ବିଶେଷ ଭାବରେ ପରିଦୃଷ୍ଟ ହୁଏ । ତାଙ୍କର ରଚନାମାନ 'ସଙ୍ଗୀତ ଓ ସାହିତ୍ୟ' ଏହି ଦୁଇ ଶ୍ରେଣୀରେ ବିଭକ୍ତ କରାଯାଇ ପାରେ । ସଙ୍ଗୀତ ମାଧ୍ୟମରେ ସାହିତ୍ୟ ବା

ସାହିତ୍ୟ ମାଧ୍ୟମରେ ସଙ୍ଗୀତର ଲୋକପ୍ରିୟତା ପ୍ରତିପାଦନ ତାଙ୍କ ଉଦ୍ଦେଶ୍ୟ ଥିଲା ଏହା ଜଣାପଡେ ନାହିଁ । ତାଙ୍କର ରଚିତ ଗ୍ରନ୍ଥମାନଙ୍କ ମଧ୍ୟରୁ କେବଳ 'ଗୋପୀନାଥ ବଲ୍ଲଭ'ନାଟକ ତାଙ୍କ ଜୀବଦ୍ଦଶାରେ ଗୌରୀଶଙ୍କର ରାୟଙ୍କ ବଦାନ୍ୟତାରୁ ପ୍ରକାଶିତ ହୋଇଥିଲା । ତାଙ୍କର ବାସୁଦେବ ନାଟକ ଓ କୃଷ୍ଣ ଚନ୍ଦ୍ରମା ନାଟକ ବର୍ତ୍ତମାନ ମଧ୍ୟ ଅପ୍ରକାଶିତ । ସଙ୍ଗୀତ ରାମଲୀଳା ଓ ସଙ୍ଗୀତ କୃଷ୍ଣଲୀଳା, ନୀତି ଶତକ, ସଙ୍ଗୀତ ରତ୍ନାକର, ବ୍ରଜପୁରରେ ଶ୍ରୀକୃଷ୍ଣଙ୍କର ଗୋପୀମାନଙ୍କ ସହିତ କାଳ୍ପନିକ କ୍ରୀଡ଼ାକୁ ଅବଲମ୍ବନ କରି ରଚିତ 'ମୁଗ୍ଧା' ନାଟକ କବିଚନ୍ଦ୍ରଙ୍କ ଅନ୍ୟାନ୍ୟ ରଚନା । ଆନନ୍ଦର ବିଷୟ ୧୯୫୭ ମସିହାରେ କବିଙ୍କର ଆଉ ଏକ ଗ୍ରନ୍ଥ ଲକ୍ଷଣ ଚନ୍ଦ୍ରୋଦୟ ଓଡ଼ିଶା ସଙ୍ଗୀତ ଏକାଡ଼େମୀର ଆନୁକୂଲ୍ୟରେ ପ୍ରକାଶ ପାଇଅଛି । ମାତ୍ର ଗ୍ରନ୍ଥ ପ୍ରବେଶ, ସୂଚୀପତ୍ର ବା ବିସ୍ତାରିତ ଟୀକାର ଅଭାବରେ ଏହାର ଉପାଦେୟତା ଅନୁଭୂତ ହେଉନାହିଁ । ଏଥିରେ କେବଳ ଗ୍ରନ୍ଥର ପ୍ରଥମ ଓ ଦ୍ୱିତୀୟାଂଶ ପ୍ରକାଶ ପାଇଛି । ସଙ୍ଗୀତ ଏକାଡ଼େମୀ ଏହି ଲକ୍ଷଣ ଗ୍ରନ୍ଥର ପୂର୍ଣ୍ଣାଙ୍ଗ ସଂସ୍କରଣ ପ୍ରକାଶ କରିବାର ଆଶା କରାଯାଏ । ଗ୍ରନ୍ଥଟିରେ ସଙ୍ଗୀତ ସମ୍ବନ୍ଧୀୟ ଆଠକଳା ଓ ସାହିତ୍ୟ ସମ୍ବନ୍ଧୀୟ ଆଠକଳା ଏପରି ଷୋହଳ କଳା ରହିଛି ।

ବେସରକାରୀ ଉଦ୍ୟମରେ ପ୍ରତିଷ୍ଠିତ ପାରଳାଖେମୁଣ୍ଡି ସହରର ପୂର୍ବରେ କଟିକିଆ ସାହିସ୍ଥିତ କବିଚନ୍ଦ୍ର ପାଠାଗାର ମଧ୍ୟ ୧୯୫୭ ମସିହାରେ କବିଙ୍କର 'ରାଧାମାଧବ ବିଳାସ' ଗ୍ରନ୍ଥ ପ୍ରକାଶ କରିଅଛନ୍ତି । ଅଧ୍ୟାପକ ଡ଼କ୍ଟର ବେଣୀ ମାଧବ ପାଢ଼ୀ ପାରଳାଖେମୁଣ୍ଡି ସଂସ୍କୃତ କଲେଜର ଅଧ୍ୟକ୍ଷ ଥାଇ ଏଥିରେ କବିଙ୍କର ସଂକ୍ଷିପ୍ତ ଜୀବନୀ, ସରଳାର୍ଥ ଓ ଶବ୍ଦାର୍ଥ ସହିତ ଗ୍ରନ୍ଥଟିର ଉପାଦେୟତା ବୃଦ୍ଧି କରି ଏହାକୁ ଲୋକପ୍ରିୟ କରିବାକୁ ଉଦ୍ୟମ କରିଅଛନ୍ତି । ଗ୍ରନ୍ଥର ଷୋଡ଼ଶ ଛାନ୍ଦର ୧୬, ୧୭ ଓ ୧୮ ପଦରେ କବି ଗ୍ରନ୍ଥ ବର୍ଣ୍ଣିତ ଛନ୍ଦମାନଙ୍କର ନାମୋଲ୍ଲେଖ କରିଅଛନ୍ତି ।

ଯଥା:-

ପ୍ରଥମରେ ପ୍ରାନ୍ତ ଯମକ ଦ୍ୱିତୀୟରେ ରୂପକ-ଶ୍ଳେଷ ବିଦିତ
ତୃତୀୟରେ ପ୍ରାନ୍ତ ଯମକ ଚତୁର୍ଥରେ ମଧ୍ୟ ଯମକହିଁ ସ୍ଥିତ ଯେ
ଯମକ ରତ୍ନମାଳୀ
ଷଷ୍ଠେ ବିଧାନ ଦେହ ଶୃଙ୍ଖଳା ଯେ । ୧୬
ଛେକାନୁପ୍ରାସ ସପ୍ତମ ଛାନ୍ଦ, ଅଷ୍ଟ ଛାନ୍ଦ 'ବ' ବର୍ଣ୍ଣାନୁପ୍ରାସ,
ନବମ ଯୁଗ୍ମ ଛାନ୍ଦ ଆଦ୍ୟ ଯମକ, ଦ୍ୱାଦଶ 'ଥ' ବର୍ଣ୍ଣାନୁପ୍ରାସ ଯେ

'କ'ର୍ଣ୍ଣେ ଏକାଦଶ ଆଦ୍ୟପ୍ରାନ୍ତ ଯମକ ଦ୍ୱାଦଶ ଯେ । ୧୭
ସିଂହାବଲୋକନ ତ୍ରୟୋଦଶ ଛାନ୍ଦ, ଚ଼ତୁର୍ଦ୍ଦଶ ମୁଦ୍ରାମାଳା
'କ'ବର୍ଣ୍ଣରେ ଅନୁପ୍ରାସ ପଞ୍ଚଦଶ, ଷୋଡ଼ଶରେ ସ୍ତବମାଳା ଯେ
କୃଷ୍ଣ ଚରିତ୍ର ଏହି
ଏଥି ଅସାର ଘେନିବି ନାହିଁ ଯେ । ୧୮

କେବଳ ଏହି ଗ୍ରନ୍ଥରୁ କେତୋଟି ପଦ ଆଲୋଚ଼ନା କଲେ କବିଚ଼ନ୍ଦ୍ରଙ୍କର କବି ପ୍ରତିଭା ଯଥାର୍ଥ ପ୍ରମାଣିତ ହୁଏ ।

୧-ଋତୁ ବର୍ଣ୍ଣନ (ପ୍ରକୃତି ଚିତ୍ର)

ମାଧବ(୧) କାଳ ହେଲା ସହଚ଼ରୀ,
ମାଧବ(୨)ଫୁଟିଲେ ସରରେ ପୁରି
ମାଧବ(୩)ଉଦୟ ଯାହାକୁ ପାଇ,

---

୧-ବସନ୍ତ, ୨-ମକରନ୍ଦପୂର୍ଣ୍ଣ ପୁଷ୍ପ, ୩-ଚ଼ନ୍ଦ୍ର

ମାଧବ(୪) ଶର ବିନ୍ଧୁଛି ତୁହାଇ,
ମାଧବ(୫) ଭାଷୀକି
ମାଧବ(୬) ପଦ ଦେ ଆଣି କତିକି ।

(୨ୟ ଛାନ୍ଦ ୨ୟ ପଦ)

୨-ନୀତି ପ୍ରଚ଼ାର(ପରକୀୟା ପ୍ରୀତିର ନିନ୍ଦା)

ମାତିଥାଇ ନିତି ବାସଙ୍ଗ ସଙ୍ଗରେ
ପରିହରି ପଦ୍ମିନୀ କର । ମିଳନ ଆତ୍ମାଙ୍କର ଏ ରୀତି
ଭାବ ଭରେ ଦିବ୍ୟ ସୁମନା ମନାଇ
କି ତବରେ କରେ ପୀରତି ।

(୪ର୍ଥ-୧୧ ପଦ)

୩-ପ୍ରକୃତି ଚ଼ିତ୍ରଣ (ବର୍ଣ୍ଣାନୁପ୍ରାସ)

କଳାନିଧି ଉଦେ ହେଲା ଏ ସମୟେ
ନଭ ବନରେ ହରି ପରି
କରେ ତମ କୁମ୍ଭୀ କୁମ୍ଭ ବିଦାର, କିବା ସେ ମୁକୁତା ସମରେ

ବ୍ୟୋମରେ ତାରକା ଦେଲା ବିସ୍ତାରି ସେ କେବଳ
କରାଇଲା ପଦ୍ମିନୀକୁ ବିରସ
କଳା ଦ୍ୱରିତ ହରିତ ପ୍ରକାଶ
କୁମୁଦ ବିକାଶ ହୋଇଲା କୁ-ମୁଦ
ଲଭି ହରାଇଲା ତ୍ରାସ ସେ କେବଳ
(୧୧ଶ-୨ୟ ପଦ)

---

୪-କନ୍ଦର୍ପ, ୫-କୋଳିକ, ୬-ଶ୍ରୀକୃଷ୍ଣ

୪-ଯମକ:

ଭାନୁଜା କୂଳେ (୧)ବସି ଭାନୁଜକୂଳେ(୨)ବଶୀ
କରଣ(୩) ଭାବୁ ଦୁଃଖୀ ହୋଇ
ସଜନୀ ତତପର(୪) ସଜନୀ ତତପର
ବୋଇଲେ (୫) ପରବେଶ ହୋଇ ସେ ନ ଭାଳ ହେ
ବିଧିରେ(୬)ବିଧୀରେ(୭)ବୋଇଲା
ସୁଧାର(୮)ସୁଧାରସ(୯)ହେଲା
ରାଧାକାନ୍ତ ଚ଼ରଣ(୧୦) ରାଧାକାନ୍ତ ଚ଼ରଣ(୧୧)
ଭାବି ରଘୁନାଥ କହିଲା ସେ ନ ଭାଳ ହେ
(୫ମ-୨୨ ପଦ)

୫-ପଞ୍ଚମ ଛାନ୍ଦରେ ସମସ୍ତ ପ୍ରକାର ଯମକ ସ୍ଥାନ ପାଇଅଛି ।

ଅକ୍ଷର ଅନୁପ୍ରାସ ( 'ଡ' ଅକ୍ଷର)

ଭିଡ଼ା ଭିଡ଼ି ହୋଇ ତରୁ ବ୍ରତତୀ
ଜଡ଼ା ଜଡ଼ିହୋଇ ରହିଛନ୍ତି
ଝଡ଼ା ଝଡ଼ି ହୋଇ ରହିଅଛନ୍ତି
ଝଡ଼ା ଝଡ଼ି କରି ମଧୁ ସୁମନ
ଅଡ଼ା ଅଡ଼ି ହୋଇ
ଛଡ଼ା ଛଡ଼ି ଭୃଙ୍ଗ କେତେକ ସହୀ
(୨ୟ-ଷୋଡ଼ଶ ପଦ)

ପଞ୍ଚମ ଛାନ୍ଦରେ ଏହିପରି ପ୍ରାନ୍ତ ବର୍ଣ୍ଣାନୁପ୍ରାସ, ଯୁଗ୍ମାନ୍ତ୍ୟନୁପ୍ରାସ, ଦ୍ୱିବର୍ଣ୍ଣାନୁପ୍ରାସ ଛେକାନୁପ୍ରାସ, ଅନ୍ତର୍ନିହିତ ଅନୁପ୍ରାସ କ୍ରମ ଅନୁସାରେ ସ୍ଥାନ ପାଇଅଛି ।

---

୧-ଯମୁନା ତଟରେ, ୨-ରାଧାଙ୍କ ପାଇଁ ଆକୁଳରେ, ୩-ବଶ କରିବା ଉପାୟ, ୪-ଶୀଘ୍ର, ୫-ଚ଼ଞ୍ଚଳ ଆଦେଶରେ, ୬-ସୃଷ୍ଟିକର୍ତ୍ତା, ୭-ଧୀରେ ଧୀରେ, ୮-ଧାରଯୁକ୍ତ, ୯-ଅମୃତ ଜଳ, ୧୦-ଶ୍ରୀକୃଷ୍ଣଙ୍କ ପାଦ, ୧୧-ରାଧାଙ୍କର ମନୋହର ଚ଼ରଣ ।

୧-ପ୍ରାନ୍ତ ବର୍ଣ୍ଣାନୁପ୍ରାସ । (ସବୁ ଚ଼ରଣର ଶେଷ ବର୍ଣ୍ଣ ସମାନ)

ଭୃଙ୍ଗ ନାନା ସୁମନ ଚୁମ୍ବୁଥିଲେ ହେଁ ଘେନ
ଯେମନ୍ତ ନଳିନରେ ଧ୍ୟାନ
ରାଧା ପ୍ରେମରେ ମନ ହେବାରୁ ଛନ ଛନ
ହୋଇଲେ ଗୋପୀ ମଧ୍ୟୁଁ ଭିନ୍ନ ସେ । ଶ୍ୟାମଘନ
ଧ୍ୟାଇ କିଶୋର ଶୋଭାବନ
ନେତ୍ରରୁ ବହୁଅଛି ବନ
ଗତ ପୀରତିମାନ ସୁମରି ପୁନଃ ପୁନଃ
ପଶିଲେ ଭାବି କୁଞ୍ଜବନ ସେ । ଶ୍ୟାମଘନ

୨-ଯୁଗ୍ମଅନ୍ତ୍ୟ ଅନୁପ୍ରାସ :(ଚ଼ରଣ ଶେଷରେ ଦୁଇଟି ବର୍ଣ୍ଣ ସମାନ)

ଶ୍ରୀକୃଷ୍ଣ ଦିନ ଶେଷେ ଦୁଃଖ ଲଭି ଅଶେଷେ
ଶର ବାଜିବାରୁ ସ୍ମରଣ
ହୃଦୟ କିଶୋରର ସ୍ଥାନ ହେଲା ଦରର
ଥୟ ନ ରହିଲା ଗୀରର ଯେ ଆଖେଟକ
ବେଷ୍ଟିତ ହୋଇଗଲେ ଶଶ ଯେମନ୍ତ ଛନ୍ନ ହୁଏ ଶଶ
ଜ୍ଞାନ ହରାଇ ହାହା ଭାଷନ୍ତି ବନ୍ଧୁ ଆ ଆ
ମୋତେ ରଖି ହୁଅ ପ୍ରଶଂସ ଯେ । ଆଖେଟକ

୩-ଦ୍ୱିବର୍ଣ୍ଣାନୁପ୍ରାସ :(ପ୍ରାନ୍ତ ଦୁଇବର୍ଣ୍ଣ ସହିତ ପରଚରଣ ଆଦ୍ୟ ଦୁଇବର୍ଣ୍ଣ)

ଭାବଭରେ ଭରସି ରସିଲେ ବାଣୀ ଭାଷୀ

ଭାସି ଯିବକି ଦୁଃଖ ଜଳେ
ରଖ ଏବେ ଉଦ୍ଧରି ଧରିତ୍ରୀ ଶୋଭାଶିରି
ଶିରୀଷ ଦେହା କଷ୍ଟପାଳେ ସେ । ଜୀବବନ୍ଧୁ
ମୁଁ ଅନୁସରି ସରିଗଲେ
ତୋ ନିନ୍ଦା ନିଦାନଟି ଭଲେ
ହୃଦ ସନ୍ତାପ ହରି ହରିଣାକ୍ଷି ଆଦରି
ଦରିଦ୍ର ନିଧି ରଖ ତୁଳେ ରେ । ଜୀବବନ୍ଧୁ
୪-ଛେକାନୁପ୍ରାସ :( 'ସ' 'ର' 'ବ' ପ୍ରଭୃତି ବ୍ୟଞ୍ଜନ ବର୍ଣ୍ଣର ଆବୃତ୍ତି)
ତୋତେ ଅନୁସରିବି ସବୁ ଦୁଃଖ ସାରିବି
ହରପରକୁ ନ ଡରିବି
ତୋ ତୁଲେ ବିହରିବି ଦିବା ନିଶି ହରିବି
ମାନ କଲେ ମୁଁ କି ପାରିବି ରେ । ଜୀବବନ୍ଧୁ
ବିନୟେ ତୋ କର ଧରିବି
ବିଚ୍ଛେଦ ସନ୍ତାପୁ ତରିବି
ପରିରମ୍ଭ କରିବି ହରଷରେ ପୂରିବି
ପ୍ରୀତିକି ଏକା ଆଦରିବି ରେ । ଜୀବବନ୍ଧୁ
୫-ଅନ୍ତର୍ନିହିତ ଅନୁପ୍ରାସ:(ବ୍ୟଞ୍ଜନ ବର୍ଣ୍ଣଗୁଡ଼ିକର ଅନୁପ୍ରାସ)
କାମନା ମନା କରି ବିରସ ରସ ଧରି
ନ କରୁ କରୁଣା ନିରତେ
ମୁଁ ମାର ମାରଣରେ ସୁଭାଷୀ ଭାସିଲିରେ
ସେବାରେ ବାରେ ରଖ ମୋତେ ରେ । ଜୀବବନ୍ଧୁ
ବିପଦ ପଦକରେ ସାର
କିଞ୍ଚିତେ ଚିତ୍ତେ ଭାବ ଧର
ହାସ ରସର ସୁଧା ପ୍ରସରୁ ସରୁ ମଧା
ଭରସା ରସାଳସା କରକେ । ଜୀବବନ୍ଧୁ

ଆଶା କରାଯାଏ, ଗୁଣଗ୍ରାହୀ ଗ୍ରାହକମାନେ ଏଥିରୁ ରସାସ୍ୱାଦନ କରି କବିଙ୍କର ଅନ୍ୟାନ୍ୟ ଗ୍ରନ୍ଥପାଠରେ ଆକୃଷ୍ଟ ହେବେ ଓ ସେହି ମାନଙ୍କର ସହଯୋଗରେ କବିଚନ୍ଦ୍ରଙ୍କର

ଅନ୍ୟାନ୍ୟ ଗ୍ରନ୍ଥମାନ ପ୍ରକାଶିତ ହୋଇ ଆଲୋଚ଼ିତ ହେବ । ପାରଳାର ଆପନ୍ନା ପଣ୍ଡା ତାଙ୍କ ସଂକଳିତ ୧୯୨୬ ମସିହାରେ ପ୍ରକାଶିତ ଉତ୍କଳ ସାହିତ୍ୟର ଇତିହାସ-୨ୟ ଭାଗ 'କବି ଜୀବନୀ' ପୁସ୍ତକରେ ଲେଖିଛନ୍ତି, "କବି ରଘୁନାଥ ନିଜେ ପଣ୍ଡିତ ବୋଲି ଲୋକରେ ପରିଚ଼ୟ ଦେବା ନିମିତ୍ତ ଲକ୍ଷଣ ଚ଼ନ୍ଦ୍ରୋଦୟ ଗ୍ରନ୍ଥ ପ୍ରଣୟନ କଲେ । ତହିଁରେ ୧୬ଟି ବିଷୟ ଲେଖାଅଛି; ଯଥା-ଗଣ, ଲିପି, ପ୍ରାସାନୁପ୍ରାସ ଓ ବିଶ୍ରାମଯତି, ଗଦ୍ୟ, ସଂସ୍କୃତ ଛନ୍ଦ, ବୃତ୍ତ, ଦଣ୍ଡକ, ଓଡ୍ର ଛନ୍ଦ, ନାଦ ଶ୍ରୁତି, ରାଗ, ଗୀତ, ତାଳ, ବାଦ୍ୟ, ନୃତ୍ୟ, ଅଭିନୟ, ଭାବ ଅର୍ଥାତ୍ ଅଳଙ୍କାର ଏହିପରି ଷୋଳ ଲକ୍ଷଣରେ ଏହି ଗ୍ରନ୍ଥ ପୂର୍ଣ୍ଣ ହୋଇଅଛି ।" ପ୍ରଥମ ଓଡ଼ିଆ ନାଟ୍ୟକାରଙ୍କ ପ୍ରଶଂସା କରି ସେ ଲେଖିଥିଲେ,

"ରଘୁନାଥ ପରୀକ୍ଷା ହେ ପାରଳା ନିବାସୀ । କବିତା ପ୍ରଭାବେ ତୁମ୍ଭେ ହେଲ କବି ଶଶୀ । ଉତ୍କଳେ ନାଟକ ଗନ୍ଧ ନଥିଲା ପୂର୍ବରେ । ରଚିଲ ନାଟକ ଏକ ତୁମ୍ଭେ ପ୍ରଥମରେ । ନାଟକଟି ଗୋପୀନାଥ ବଲ୍ଲଭ ନାମରେ । ଖ୍ୟାତ ହୋଇଅଛି ଏବେ ଉତ୍କଳ ରାଜ୍ୟରେ"

କର୍ମମୟ ପରିଣତ ବୟସରେ କବି ପାରଳାଖେମୁଣ୍ଡିଠାରେ ୧୮୯୬ ପୂର୍ବରୁ ଦେହତ୍ୟାଗ କରିଥିବାର ଅନୁମାନ କରାଯାଏ ।



# ପାରଳାର ସର୍ବପ୍ରାଚୀନ କବି ହରିକୃଷ୍ଣ

ଗବେଷକ ସ୍ୱର୍ଗତଃ ଶ୍ୟାମସୁନ୍ଦର ରାଜଗୁରୁଙ୍କ ମତରେ ପାରଳାର ଓଡ଼ିଆ କବିମାନଙ୍କର ମଧ୍ୟରେ 'ଏକାଦଶୀ ମାହାତ୍ମ୍ୟ'ର ଅନୁବାଦକ ହରିକୃଷ୍ଣ ସର୍ବପ୍ରାଚୀନ । କବି ୧୬୬୨ ଖ୍ରୀଷ୍ଟାବ୍ଦରେ ଜନ୍ମ ଗ୍ରହଣ କରିଥିବା ପାରଳାଖେମୁଣ୍ଡିର ଆପନ୍ନା ପଣ୍ଡାଙ୍କର ଲିଖିତ ଓ ୧୯୨୬ ଖ୍ରୀଷ୍ଟାବ୍ଦରେ ପ୍ରକାଶିତ 'କବି ଜୀବନୀ' ପୁସ୍ତକରେ ଅନୁମାନ କରାଯାଇଛି । ଶ୍ୟାମସୁନ୍ଦରଙ୍କର ଗଣନା ମଧ୍ୟ ତଦ୍ରୂପ । ହରିକୃଷ୍ଣ ଜାତିରେ ଚିତ୍ରକର । ଏହାଙ୍କ ପିତାଙ୍କ ନାମ ଫକୀର ମହାରଣା ଓ ମାତାଙ୍କ ନାମ ଲୀଳାବତୀ । ହରିକୃଷ୍ଣ ପାରଳା ରାଜପ୍ରସାଦରେ ପ୍ରଧାନ ଚିତ୍ରକାର ଥିଲେ । ପାରଳା ସହରର ଶ୍ରୀ ଜଗନ୍ନାଥ ଆଦି ବିଗ୍ରହ ଓ ପାରଳା ଜମିଦାରି ଅନ୍ତର୍ଗତ ବର୍ତ୍ତମାନ ଆନ୍ଧ୍ର ପ୍ରଦେଶର ଶ୍ରୀକାକୁଳମ୍ ଜିଲ୍ଲାଭୁକ୍ତ ବଂଶଧାରା ନଦୀ ତୀରରେ ପାରଳାଠାରୁ ଦଶ କୋଶ ଦୂରରେ ଅବସ୍ଥିତ ଲିହୁରୀ ଗ୍ରାମର ଶ୍ରୀ ଗୋପିନାଥଙ୍କୁ ଚିତ୍ର କରିବା ତାଙ୍କର ପ୍ରଧାନ କୌଳିକ କାର୍ଯ୍ୟ ଥିଲା । ଉତ୍ସବାଦି ସମୟରେ ସେ ରାଜବାଟୀର ସମସ୍ତ ଚିତ୍ର କାର୍ଯ୍ୟ କରୁଥିଲେ । ଏଥିପାଇଁ ପାରଳା ରାଜା ତାଙ୍କୁ ମହାପାତ୍ର ଉପାଧି ଓ ଲକ୍ଷ୍ମୀପୁର ନାମକ ଖଣ୍ଡିଏ ଗ୍ରାମ ପ୍ରଦାନ କରିଥିଲେ । ଲିହୁରୀର ଶ୍ରୀ ଗୋପୀନାଥ ପାରଳା ରାଜ୍ୟର ପ୍ରଧାନ ଦେବତା । ସେଠାରେ ପ୍ରତିବର୍ଷ ଦୋଳ ଉତ୍ସବ ମହା ଆଡମ୍ବରରେ ପାଳିତ ହୁଏ । ସମୟ ସମୟରେ ପାରଳା ମହାରାଜା ସପରିବାର ଶ୍ରୀ ଗୋପିନାଥଙ୍କ ଦର୍ଶନ ନିମିତ୍ତ ଏହିଠାରେ ବିଜେ ହୁଅନ୍ତି । ଲୋକେ କହିବାର ଶୁଣାଯାଏ, ହରିକୃଷ୍ଣ ନିଜେ ଭକ୍ତ ଓ ବୈଷ୍ଣବ ଥାଇ ସ୍ୱହସ୍ତରେ ଲିହୁରୀର ଦାରୁବିଗ୍ରହ ଗୋପୀନାଥଙ୍କୁ ଗଠନ କରିଥିଲେ । ହରିକୃଷ୍ଣ ଦରିଦ୍ର ପରିବାରରେ ଜନ୍ମ ଗ୍ରହଣ କରିଥିଲେ ମଧ୍ୟ ଅର୍ଥ ଲାଳସା ତାଙ୍କୁ ଗ୍ରାସ କରି ନ ଥିଲା । କୁଟୁମ୍ବ ପ୍ରତିପୋଷଣ ନିମିତ୍ତ ରାଜ ଦରବାରରୁ ଯତ୍ ସାମାନ୍ୟ ଅର୍ଥ ତାଙ୍କୁ ମିଳୁଥିଲା, ସେଥିରେ ସେ ସନ୍ତୁଷ୍ଟ ଥାଇ ବାଗ୍‌ଦେବୀଙ୍କର ସେବାରେ ସମୟ ଅତିବାହିତ କରୁଥିଲେ । ଶ୍ରୀ ଗୋପୀନାଥଙ୍କ ଗଠନ ଉପଲକ୍ଷେ ହରିକୃଷ୍ଣ ଖଣ୍ଡିଏ ଗ୍ରାମ ପୁରସ୍କାର ପାଇଥିଲେ ମାତ୍ର ଯେତେବେଳେ ଗୋପୀନାଥ ଓ ଜଗନ୍ନାଥଙ୍କର ଚିତ୍ର କରିବା ନିମିତ୍ତ ଆଉ ଖଣ୍ଡିଏ ଗ୍ରାମ ପାଇଲେ ସେତେବେଳେ ସେ ପ୍ରଥମ ଗ୍ରାମଖଣ୍ଡି ରାଜାଙ୍କୁ ଫେରାଇ ଦେଇ ନିଜର ନିର୍ଲୋଭତାର ପ୍ରମାଣ ପ୍ରଦର୍ଶନ କରିଥିଲେ । ତାଙ୍କର ବଂଶଧରମାନେ ମଧ୍ୟ ଏଥିପାଇଁ ଗର୍ବିତ । ହରିକୃଷ୍ଣ ବୈଷ୍ଣବ ଧର୍ମାବଲମ୍ବୀ ଥିଲେ । ନିଜର

କର୍ତ୍ତବ୍ୟ ପ୍ରତିପାଳନ କରି ସେ ଅବଶିଷ୍ଟ ସମୟ ପାରମାର୍ଥିକ ଚ଼ିନ୍ତା ଓ ବାଣୀ ଆରାଧନାରେ ଅତିବାହିତ କରୁଥିଲେ । ଥରେ ଲିହୁରୀ ଗୋପୀନାଥଙ୍କ ମୂର୍ତ୍ତି ଗଠନ ସମୟରେ ତାଙ୍କ ଗୋଡରେ ହତିଆର ବାଜି ଗୋଡ଼ ଖଣ୍ଡିଆ ହୋଇଗଲା । ନାନା ଔଷଧପତ୍ର ପ୍ରୟୋଗରେ ତାହା ଉପଶମ ହେଲା ନାହିଁ । କବି ମନସ୍ତାପରେ ନିଦ୍ରାମଗ୍ନ ଥାଇ ସ୍ୱପ୍ନ ଦେଖିଲେ, କେହି ଜଣେ ତାଙ୍କୁ ଉପଦେଶ ଦେଉଅଛନ୍ତି ଯେ ଭକ୍ତିରସ-ପ୍ରଧାନ କୌଣସି ରଚନା କଲେ ତାଙ୍କର କ୍ଷତ ଆରୋଗ୍ୟ ହେବ । ସ୍ୱପ୍ନାଦେଶ ପାଇ ପ୍ରାତଃକାଳରେ ଉଠି ହରିକୃଷ୍ଣ ଭକ୍ତି ରସାତ୍ମକ ଗୋଟିଏ ଚଉତିଶା ରଚ଼ନା କଲେ । ଯେଉଁ ଦିନ ରଚ଼ନା ଶେଷ ହେଲା ସେହି ଦିନ ସେ ସଂପୂର୍ଣ୍ଣ ରୋଗମୁକ୍ତ ହୋଇ ଆରୋଗ୍ୟ ସ୍ନାନ କଲେ । ଦୁଃଖର ବିଷୟ, ଏହି ଚଉତିସାଟି ବର୍ତ୍ତମାନ ଦୁଷ୍ପ୍ରାପ୍ୟ ତାଙ୍କ ଅନୂଦିତ ଏକାଦଶୀ ମାହାତ୍ମ୍ୟ ଓ ଅନ୍ୟାନ୍ୟ ରଚନାରୁ ତାଙ୍କର ସଂସ୍କୃତ ସାହିତ୍ୟରେ ଦକ୍ଷତା ପ୍ରମାଣିତ ହୁଏ । ହରିକୃଷ୍ଣଙ୍କ ରଚ଼ିତ ଏକାଦଶୀ ମାହାତ୍ମ୍ୟର ଶୁଦ୍ଧ ସଂସ୍କରଣ ବର୍ତ୍ତମାନ ଦୁର୍ଲ୍ଲଭ ହେଲେ ମଧ୍ୟ ପ୍ରଚଳିତ ସଂସ୍କରଣରୁ କବି ଗ୍ରନ୍ଥ ପ୍ରାରମ୍ଭରେ ଲେଖିବାର ଜଣା ପଡ଼େ -

ଶ୍ରୀକୃଷ୍ଣ ଚ଼ରଣେ ଶରଣ
ଯେ ସର୍ବ ଶୁଭର କାରଣ

ଯାହାକୁ ଆଶ୍ରା ସାଧୁ । ତରେ ଦୁସ୍ତର ଭବସିନ୍ଧୁ
ଆଶ୍ରୟ କରି ଯେଉଁ ପଦ । ଧ୍ରୁବ ପାଇଲେ ଧ୍ରୁବ ପଦ
ଦ୍ରୌପଦୀ ଯେଉଁ ପଦ ଚିନ୍ତି । ତରିଲେ ଅଶେଷ ବିପତି
ଯାହା ସେବାରୁ ଅପବର୍ଗ । ଆପେ ମିଳଇ କିବା ସ୍ୱର୍ଗ
ଏମନ୍ତ ପ୍ରଭୁ ଛାଡ଼ି ନରେ । କିଂପା ଭ୍ରମୁଛ ଅନ୍ୟ ଠାରେ
ପୁଷ୍ପରେ ଫଳ ବୃଦ୍ଧି ଛାଡ଼ି । ଶ୍ରୀ କୃଷ୍ଣ ପାଦ ପଦ୍ମେ ପଡ଼ି
କର୍ଦ୍ଦମପୟ କିଂପା ଧର । ଛାଡି ପୀୟୂଷ ପଦ୍ମାକର
ଅଥବା କେ ହେବ ନିବାର । ନିଜ ପ୍ରକୃତି ପରିହରି
ବଳଇ ସମସ୍ତଙ୍କ ଚିତ୍ତ । ଶରଣ ମୋର ଗୋପୀନାଥ ।

ଅନୁବାଦ ପ୍ରାୟ ଆକ୍ଷରିକ ନ ହେଲେ ମଧ୍ୟ କବି ଯେ ସଂସ୍କୃତରେ ସୁପଣ୍ଡିତ ଥିଲେ ତାହା ଏଥିରୁ ସ୍ପଷ୍ଟ ପ୍ରତିପାଦନ ହୁଏ ।

ଅନୂଦିତ ଏକାଦଶୀ ମାହାତ୍ମ୍ୟରେ ଚବିଶ ଗୋଟି ଅଧ୍ୟାୟ ଅଛି । କୃଷ୍ଣ ଓ ଶୁକ୍ଳ ପକ୍ଷରେ ଏକାଦଶୀ ତିଥିକୁ ହରିବାର ବୋଲାଯାଏ । ସେଦିନ ଉପବାସ ବା ନିତାନ୍ତ

ପକ୍ଷରେ ଫଳାହାର କର୍ତ୍ତବ୍ୟ । ବରଷକର ଚ଼ବିଶଟି ଏକାଦଶୀ ମଧ୍ୟରୁ ଚ଼ାରିଟିକୁ ବଡ଼ ଏକାଦଶୀ ବୋଲାଯାଏ । ବ୍ରାହ୍ମଣ ବିଧବାମାନେ ଓ ଧର୍ମପ୍ରାଣ ବ୍ୟକ୍ତିମାନେ ଏକାଦଶୀ ଦିନ ଓ ବିଶେଷତଃ ବଡ଼ ଏକାଦଶୀ ଦିନ ନିର୍ଜଳ ଉପବାସ କରନ୍ତି । ବିଶ୍ୱାସ, ଏକାଦଶୀ ଦିନ ଅନ୍ନ, ସ୍ତ୍ରୀ ସଙ୍ଗମ ଓ ତୈଳାଭ୍ୟଙ୍ଗ ନିଷେଧ । ହରିଭକ୍ତି ବିଳାସ ଗ୍ରନ୍ଥ ମତରେ ଏକାଦଶୀ ଅଷ୍ଟବିଧ ।

୧.ଉନ୍ମୀଳନୀ-ଯେଉଁ ଏକାଦଶୀରେ ୬୦ଦଣ୍ଡକୁ ଅଧିକ ପର ଦିବସକୁ ବାକି ଥାଏ ।

୨.ବ୍ୟଞ୍ଜଳୀ-ଯେଉଁ ଏକାଦଶୀ ୬୦ଦଣ୍ଡରୁ କମି ପର ଦିନକୁ ଥାଏ ।

୩.ତ୍ରିସ୍ପର୍ଶା-ଅରୁଣ ଉଦୟ କାଳରେ ଏକାଦଶୀ, ତତ୍ପରେ ଦ୍ୱାଦଶୀ ଓ ଅନ୍ତେ ତ୍ରୟୋଦଶୀ

୪.ପକ୍ଷବର୍ଦ୍ଧିନୀ-ଯେଉଁ ଏକାଦଶୀର ପରବର୍ତ୍ତୀ ପୂର୍ଣ୍ଣିମା ବା ଅମାବାସ୍ୟା ୬୦ ଦଣ୍ଡରୁ ଅଧିକ ଥାଏ ।

୫.ଜୟା-ଶୁକ୍ଳ ଦ୍ୱାଦଶୀରେ ଯେବେ ପୁନର୍ବସୁ ନକ୍ଷତ୍ର ପଡ଼େ ।

୬.ବିଜୟା-ଶୁକ୍ଳ ଦ୍ୱାଦଶୀ ଯେବେ ଶ୍ରବଣା ନକ୍ଷତ୍ର ଯୁକ୍ତ ହୁଏ ।

୭.ଜୟନ୍ତୀ-ଯେବେ ଶୁକ୍ଳ ଦ୍ୱାଦଶୀରେ ରୋହିଣୀ ନକ୍ଷତ୍ର ପଡ଼େ ।

୮.ପାପନାଶିନୀ-ଯେବେ ଶୁକ୍ଳ ଦ୍ୱାଦଶୀରେ ପୁଷ୍ୟା ନକ୍ଷତ୍ର ପଡ଼େ ।

ଗୁରୁବାର ଏକାଦଶୀ ପଡ଼ିଲେ ଲକ୍ଷ୍ମୀନାରାୟଣ ବ୍ରତ ଓ ରବିବାର ଏକାଦଶୀ ପଡ଼ିଲେ ରବି-ନାରାୟଣ ବ୍ରତ କରାଯାଏ । ବର୍ଣ୍ଣିତ ଗ୍ରନ୍ଥରେ ଧର୍ମରାଜ ଯୁଧିଷ୍ଠିରଙ୍କର ପ୍ରଶ୍ନର ଉତ୍ତର ବାସୁଦେବ ଶ୍ରୀକୃଷ୍ଣ ତାଙ୍କୁ ବିଭିନ୍ନ ଏକାଦଶୀର ମାହାତ୍ମ୍ୟ ବୁଝାଉ ଅଛନ୍ତି;

ଶୁଣି ପ୍ରଶଂସି ବାସୁଦେବ । ବୋଇଲେ ଶୁଣ ନରଦେବ ।
ଅଛନ୍ତି ମୋର ଏକାଦଶୀ । ସେହି ସକଳ ପାପ ଧ୍ୱଂସୀ ।
ତାମସ ନୋହେ ବ୍ରତଦାନ । ଯଜ୍ଞ ତପସ୍ୟା ପୁଣ୍ୟ ଜ୍ଞାନ ।

ପ୍ରଥମ ଅଧ୍ୟାୟରେ ମାର୍ଗଶିର କୃଷ୍ଣ ଉତ୍ପତ୍ତି ଏକାଦଶୀ
୨ୟ ଅଧ୍ୟାୟରେ ମାର୍ଗଶିର ଶୁକ୍ଳ ମୋକ୍ଷ ଏକାଦଶୀ
୩ୟ ଅଧ୍ୟାୟରେ ପୌଷ କୃଷ୍ଣ ସଫଳା ଏକାଦଶୀ
୪ର୍ଥ ଅଧ୍ୟାୟରେ ପୌଷ ଶୁକ୍ଳ ପୁତ୍ରଦା ଏକାଦଶୀ
୫ମ ଅଧ୍ୟାୟରେ ମାଘ କୃଷ୍ଣ ଷଟତିଳ ଏକାଦଶୀ
୬ଷ୍ଠ ଅଧ୍ୟାୟରେ ମାଘ ଶୁକ୍ଳ ଜୟା ବା ଭୌମ ଏକାଦଶୀ
୭ମ ଅଧ୍ୟାୟରେ ଫାଲଗୁନ କୃଷ୍ଣ ବିଜୟା ଏକାଦଶୀ

୮ମ ଅଧ୍ୟାୟରେ ଫାଲ୍‌ଗୁନ ଶୁକ୍ଳ ଆମଳକୀ ଏକାଦଶୀ
୯ମ ଅଧ୍ୟାୟରେ ଚୈତ୍ର କୃଷ୍ଣ ପାପମୋଚନୀ ଏକାଦଶୀ
୧୦ମ ଅଧ୍ୟାୟରେ ଚୈତ୍ର ଶୁକ୍ଳ କାମଦା ଏକାଦଶୀ
୧୧ଶ ଅଧ୍ୟାୟରେ ବୈଶାଖ କୃଷ୍ଣ ବରୂଥିନୀ ଏକାଦଶୀ
୧୨ଶ ଅଧ୍ୟାୟରେ ବୈଶାଖ ଶୁକ୍ଳ ମୋହିନୀ ଏକାଦଶୀ
୧୩ଶ ଅଧ୍ୟାୟରେ ଜ୍ୟୈଷ୍ଠ ଅପରା ବା ଜଳକ୍ରୀଡ଼ା ଏକାଦଶୀ
୧୪ଶ ଅଧ୍ୟାୟରେ ଜ୍ୟୈଷ୍ଠ ଶୁକ୍ଳ ନିର୍ଜଳା, ଦେବ ବିବାହ ବା ପଦ୍ମା ଏକାଦଶୀ
୧୫ଶ ଅଧ୍ୟାୟରେ ଆଷାଢ଼ କୃଷ୍ଣ ଯୋଗିନୀ
୧୬ଶ ଅଧ୍ୟାୟରେ ଆଷାଢ଼ ଶୁକ୍ଳ ଦେବ ଶୟନ କାମିକା ବା ବାହୁଡ଼ି
୧୭ଶ ଅଧ୍ୟାୟରେ ଶ୍ରାବଣ କୃଷ୍ଣ କାମିନୀ ବା ଗାନ୍ଧାରୀ
୧୮ଶ ଅଧ୍ୟାୟରେ ଶ୍ରାବଣ ଶୁକ୍ଳ ପୁତ୍ରଦା
୧୯ଶ ଅଧ୍ୟାୟରେ ଭାଦ୍ର କୃଷ୍ଣ ଅଜା ବା କାଳିଦଳନ
୨୦ଶ ଅଧ୍ୟାୟରେ ଭାଦ୍ର ଶୁକ୍ଳ ପଦ୍ମ ବା ପାର୍ଶ୍ୱ ପରିବର୍ତ୍ତନ
୨୧ଶ ଅଧ୍ୟାୟରେ ଆଶ୍ୱିନ କୃଷ୍ଣ ଇନ୍ଦିରା
୨୨ଶ ଅଧ୍ୟାୟରେ ଆଶ୍ୱିନ ଶୁକ୍ଳ ପାପାଙ୍କୁଶା
୨୩ଶ ଅଧ୍ୟାୟରେ କାର୍ତ୍ତିକ କୃଷ୍ଣ ରମା
୨୪ଶ ଅଧ୍ୟାୟରେ କାର୍ତ୍ତିକ ଶୁକ୍ଳ ଦେବୋତ୍‌ଥାନ ବା ବୋଧନୀ ଏକାଦଶୀର ବିଧାନମାନ ବର୍ଣ୍ଣନା କରା ଯାଇଅଛି ।

ଅନୁବାଦ କେତେଦୂର ସଙ୍ଗତ ତାହା ନିମ୍ନ ଉଦାହରଣରୁ ଆଲୋଚନା କରାଯାଉ;

ଶ୍ଳୋକ-ତଥାପ୍ୟେ କାପିର୍ରେକସ୍ୟା ଶୃଣୁରାଜନ କଥାନକଂ
ଅତଃପର ପ୍ରବକ୍ଷ୍ୟାମି ପୌଷସ୍ୟ କୃଷ୍ଣ ପାକ୍ଷିକାଂ
ଲୋକାନାଂ ଚ଼ ହିତାର୍ଥାୟ କଥୟାମି ବିଧିଂ ତଥା
ପୌଷସ୍ୟ କୃଷ୍ଣପକ୍ଷେ ବୈ ସଫଳା ନାମ ନାମତଃ ।

ଅନୁବାଦ ଗୀତ-ତଥାପି ଶୁଣ ମହାପତି । ଏକାଗ୍ର ଭାବେ ଦେଇ ମତି ।
ଏତେକ ବ୍ରତର ଲକ୍ଷଣ । କହିବା କରି ପୁଣ ପୁଣ ।
ଯେ ପୁଷ୍ୟ କୃଷ୍ଣ ଏକାଦଶୀ । ଅର୍ଥ ଦାୟିନୀ ପୁଣ୍ୟରାଶି ।

ସଫଳା ନାମଟି ଏହାର । ଏ ଅନ୍ତେ ଶୁଣ ନୃପବର ।
ଏହାଙ୍କ ବିଧିମତ ଯେତେ । କହିବା ଲୋକଙ୍କର ହିତେ ।

ଶ୍ଲୋକ- ନାଗାନାଂ ଚ ଯଥା ଶେଷ । ପକ୍ଷିଣି ଗରୁଡୋ ଯଥା ।
ଦେବାନାଂ ଚ ଯଥା କୃଷ୍ଣୋ । ଦ୍ୱିପଦାଂ ବ୍ରାହ୍ମଣୋ ଯଥା ।
ବ୍ରତାନାଂ ତଥା ରାଜନ । ଏକାଦଶୀ ବିଶିଷ୍ୟତେ

ଗୀତ- ନାଗଙ୍କ ମଧ୍ୟେ ଶେଷ ବଡ଼ । ପକ୍ଷୀଙ୍କ ଶ୍ରେଷ୍ଠଟି ଗରୁଡ଼
ଦେବଙ୍କ ଶ୍ରେଷ୍ଠ କୃଷ୍ଣ ଯେହ୍ନେ । ମାନବ ଶ୍ରେଷ୍ଠ ଯେ ବ୍ରାହ୍ମଣେ ।
ତେମନ୍ତ ବ୍ରତଙ୍କ ବିଶିଷ୍ଟ । ଏ ଏକାଦଶୀ ବ୍ରତ ଶ୍ରେଷ୍ଠ ।

କବିଙ୍କର ଅନୁବାଦରେ ଭାଷା ସରଳ ଓ ସୁବୋଧ୍ୟ । ଯଥା:-

ଲବଙ୍ଗ ଆଦି ବାସ ଦ୍ରବ୍ୟ । ଯତନେ ଏହା ସଂପାଦିବ ।
ଜମ୍ବିର ନାରିକେଳ ଆମ୍ବ । ଗୁଆ କମଳା ତାଳ ଜାମ୍ବ ।
ଟଭା ନାରଙ୍ଗ ଯେ ଡାଳିମ୍ବ । ଏ ଆଦି ଯେତେକ ମିଳିବ ।
ମୋତେ କରିବ ସମର୍ପଣ । ମଣ୍ଡଳେ କରି ସଂସ୍ଥାପନ ।
ଶ୍ରୀ ନାରାୟଣଙ୍କୁ ଆରାଧି । ଷୋଡ଼ଶ ଉପଚାର ବିଧି ।

ହରିକୃଷ୍ଣ ନିଜ ରଚ଼ନାରେ ନିଜକୁ କବି ଚିହ୍ନାଇ ଅଛନ୍ତି । ତାଙ୍କର ଅନେକ ଚ଼ଉପଦୀ ରାଜା ଗଜପତି ନାରାୟଣ ଦେବଙ୍କ ନାମରେ ଭଣିତା ହୋଇଥିବା ଯୋଗୁଁ ପାରଳାର ଗଜପତି ରାଜା ତାଙ୍କୁ ଏହି ଉପାଧିରେ ଭୂଷିତ କରିଥିବାର ଅନୁମାନ କରାଯାଏ । ଏକାଦଶୀ ମାହାତ୍ମ୍ୟ ଓ ଗୋପୀନାଥ ଜଣାଣ ବ୍ୟତୀତ କବି ଅନେକ ଚଉତିଶା ଓ ଚଉପଦୀ ରଚୟିତା । ସେ 'ରସ ତାଣ୍ଡବ' ନାମକ ଏକ ଦୁଷ୍ପ୍ରାପ୍ୟ ଗ୍ରନ୍ଥ ମଧ୍ୟ ରଚନା କରିଥିବା ଜଣାପଡ଼େ ।

ଅତିଶୟ ଦୁଃଖର କଥା, ଏହି ପ୍ରସିଦ୍ଧ ଓ ପୁରାତନ କବିଙ୍କର ରଚନାମାନ ସଂଗ୍ରହ ନିମିତ୍ତ କୌଣସି ଉଦ୍ୟମ ଏ ପର୍ଯ୍ୟନ୍ତ ହୋଇପାରି ନାହିଁ । କବିଙ୍କର ବଂଶଧରମାନେ ବର୍ତ୍ତମାନ ପାରଳାଖେମୁଣ୍ଡିର ଚିତ୍ରକାର ସାହିରେ ବାସ କରୁଅଛନ୍ତି । ସେମାନଙ୍କୁ ମଧ୍ୟ କବିଙ୍କର କୌଣସି ରଚ଼ନା, ତାଙ୍କର ପ୍ରାଚୀନତା ବା ପ୍ରସିଦ୍ଧି ଜଣାନାହିଁ ।

# କବି ଭୂଷଣ ଗୋପୀନାଥ ପାତ୍ର

ପାରଳାଖେମୁଣ୍ଡିର ରାଜା ଜଗନ୍ନାଥ ଗଜପତି ନାରାୟଣ ଦେବ ଖ୍ରୀ. ୧୭୩୬ ଠାରୁ ଖ୍ରୀ. ୧୭୭୦ ପର୍ଯ୍ୟନ୍ତ ରାଜପତି ଥିଲେ । ସେ ଜଣେ ପରାକ୍ରମଶାଳୀ ରାଜା ଓ ପଣ୍ଡିତ ଥିଲେ । 'ସଙ୍ଗୀତ ନାରାୟଣ', 'ଔଦାର୍ଯ୍ୟ କୌମୁଦୀ', 'କବି କଣ୍ଠହାର' ପ୍ରଭୃତି ଗ୍ରନ୍ଥର ସେ ଲେଖକ ବୋଲି କୁହାଯାଏ । ଏ ଗୁଡିକ ସଂସ୍କୃତ ଗ୍ରନ୍ଥ ଥିଲା । ଏହା ବାଦ ଓଡ଼ିଆରେ 'ଶ୍ରୀ ବୃନ୍ଦାବନ ଚ଼ନ୍ଦ୍ର ବିହାର' ଓ 'ପ୍ରଭାବତୀ ପରିଣୟ' ନାମରେ ଦୁଇ ଖଣ୍ଡି ଓଡ଼ିଆ କାବ୍ୟ ମଧ୍ୟ ସେ ଲେଖିଥିଲେ । ତାଙ୍କର ରାଜସଭା ବିଦ୍ୱାନମଣ୍ଡଳୀ ଦ୍ୱାରା ଶୋଭା ପାଉଥିଲା । ଏହି ପଣ୍ଡିତମାନଙ୍କ ମଧରେ ପାରଳାଖେମୁଣ୍ଡି ସହରର ରାଜଗୁରୁ ସାହିର ଲୋକନାଥ ତ୍ରୀପାଠୀ ଓ କରଣ ସାହିର ଗୋପୀନାଥ ପାତ୍ର ପ୍ରଧାନ ଥିଲେ । ଲୋକନାଥ 'କବି କଣ୍ଠହାର' ଗ୍ରନ୍ଥର ଲେଖକ ଥିଲେ ବୋଲି ଅନୁମାନ କରାଯାଏ । ବୋଧହୁଏ, ସ୍ୱୟଂ ଗ୍ରନ୍ଥ ରଚନା କରି ତାହାକୁ ସେ ନିଜର ପୃଷ୍ଠପୋଷକ ଓ ଦୁର୍ଦ୍ଦିନର ବନ୍ଧୁ ଗୁଣଗ୍ରାହୀ ରାଜା ଜଗନ୍ନାଥ ନାରାୟଣ ଦେବଙ୍କ ନାମରେ ଭଣତି କରିଥିଲେ । ଗୋପୀନାଥ ପାତ୍ର ପ୍ରସିଦ୍ଧ ଆଳଙ୍କାରିକ ଗ୍ରନ୍ଥ 'କବି ଚ଼ିନ୍ତାମଣି'ର ଲେଖକ ଥିଲେ ଓ ରାଜ ଦରବାରରେ 'କବିଭୂଷଣ' ଉପାଧିରେ ସମ୍ମାନିତ ହୋଇଥିଲେ ।

ଗୋପୀନାଥ ପାରଳାଖେମୁଣ୍ଡିର କରଣ ସାହିରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ ବାସୁଦେବ ପାତ୍ର । ସେ ଜାତିରେ କରଣ ଥିଲେ । ବାସୁଦେବ ନିଜେ ମଧ ଜଣେ କବି ଓ ଉଚ୍ଚକୋଟୀର ଚିକିତ୍ସକ ଥାଇ ରାଜା ଜଗନ୍ନାଥଙ୍କର ରାଜସଭା ମଣ୍ଡନ କରୁଥିଲେ । ସେ ଗଦ୍ୟ ଓ ପଦ୍ୟରେ କେତେଗୁଡ଼ିଏ ପୁସ୍ତକ ଲେଖି ଯାଇଅଛନ୍ତି, ମାତ୍ର ଏହି ଗ୍ରନ୍ଥଗୁଡିକର ସଂପୂର୍ଣ୍ଣ ଅବିକଳ ପାଣ୍ଡୁଲିପି ବର୍ତ୍ତମାନ ଦୁଷ୍ପ୍ରାପ୍ୟ । ଗୋପୀନାଥ ମଧ ଉଚ୍ଚକୋଟୀର ସଙ୍ଗୀତଜ୍ଞ, ଗାୟକ ଓ ବାଦକ ଥିଲେ । ତାଙ୍କ ରଚ଼ିତ 'କବି ଚିନ୍ତାମଣି' ଗ୍ରନ୍ଥଟି ସଂସ୍କୃତରେ ଲିଖିତ ଓ ପଚିଶ ଗୋଟି ଅଧ୍ୟାୟରେ ବିଭକ୍ତ । ପ୍ରତି ଅଧ୍ୟାୟକୁ କିରଣ କୁହାଯାଇଛି ପ୍ରତି କିରଣ ଶେଷରେ କବି ନିମ୍ନ ପ୍ରକାର ଭଣିତା କରି ଅଛନ୍ତି । "ଇତି ଶ୍ରୀମନ୍ ପାରଳାଖେମୁଣ୍ଡି ମହୀ ରାଜେଶ୍ୱର ଗଙ୍ଗବଂଶ ବୀର ଶ୍ରୀ ଗଜପତି ନାରାୟଣ ଦେବ ବିଦ୍ୱତ୍ ସଭା ରାଜିତ ପ୍ରବନ୍ଧ କବିତା ପ୍ରକାଶକ କରଣକୁଳସମ୍ଭବ କବି ଭିଷକବର

ବାସୁଦେବପାତ୍ର-ତନୟ ଶ୍ରୀ ଗୋପୀନାଥ କବିଭୂଷଣ କୃତେ କବି ଚିନ୍ତାମଣି ।" କାବ୍ୟର ଆରମ୍ଭରେ ଶ୍ରୀ ରାଧିକା ଓ ଗୋପୀମାନଙ୍କ ଗହଣରେ ଥିବା ଶ୍ରୀକୃଷ୍ଣଙ୍କର ବନ୍ଦନା କରାଯାଇଅଛି । ଗ୍ରନ୍ଥରୁ କବିଙ୍କର ପାଣ୍ଡିତ୍ୟ ଓ ଅଳଙ୍କାର ଶାସ୍ତ୍ରରେ ଗଭୀର ପ୍ରବେଶ ପ୍ରମାଣିତ ହୁଏ । ଏହି ଗ୍ରନ୍ଥରେ କବି ଅମରକୋଷଠାରୁ ସଙ୍ଗୀତ କୌମୁଦୀ ଓ ହଂସଦୂତ ପର୍ଯ୍ୟନ୍ତ ବିଭିନ୍ନ ପ୍ରାମାଣିକ ଗ୍ରନ୍ଥର ଆଶ୍ରୟ ନେଇଥିବାର ବର୍ଣ୍ଣନା କରା ଯାଇଅଛି । ଓଡ଼ିଶାରେ ଅଳଙ୍କାର ସାହିତ୍ୟର ଆଲୋଚନା ଓ କ୍ରମବର୍ଦ୍ଧନ ନିରୂପଣ କରିବାରେ ଏହି ଗ୍ରନ୍ଥଟି ଗବେଷକମାନଙ୍କୁ ଅଶେଷ ସହାୟକ ହେବ । ସମୁଦାୟ ଗ୍ରନ୍ଥଟି ଏ ପର୍ଯ୍ୟନ୍ତ ପ୍ରକାଶିତ ହୋଇ ନାହିଁ, ମାତ୍ର ଓଡ଼ିଶା ସାହିତ୍ୟ ଏକାଡେମୀ ଆନୁକୂଲ୍ୟରେ ପ୍ରକାଶିତ ସଂସ୍କୃତ ପାଣ୍ଡୁଲିପିମାନଙ୍କର ତାଲିକାରୁ ଏଥିର ବିଷୟ-ବସ୍ତୁ ଅନୁମିତ ହୁଏ । ପଚିଶ ଗୋଟି କିରଣ ମଧ୍ୟରୁ ପ୍ରଥମ କିରଣରେ କବି ଭେଦାଦି ନିରୂପଣ, ଦ୍ୱିତୀୟରେ ଗଣାଦି ନିରୂପଣ, ତୃତୀୟରେ ବୃତ୍ତ ନିରୂପଣ, ଚତୁର୍ଥରେ କାବ୍ୟ ନିରୂପଣ, ପଞ୍ଚମରେ ନାୟକ ନାୟିକା ନିରୂପଣ, ଷଷ୍ଠରେ ଭାବାଦି ସହଜାଳଙ୍କାର ନିରୂପଣ, ସପ୍ତମରେ ଅନୁରାଗେଙ୍ଗିତାଦି ନିରୂପଣ, ଅଷ୍ଟମରେ ଉଦ୍ଦୀପନ ବିଭାବାନୁଭାବ, ସାତ୍ତ୍ୱିକ ବ୍ୟଭିଚାରୀ ସ୍ଥାୟୀ ଭାବ ନିରୂପଣ, ନବମରେ ସ୍ଥାୟୀଭାବ, ବିପ୍ରଲମ୍ଭ, ସମ୍ଭୋଗ, ଶୃଙ୍ଗାର ନିରୂପଣ, ଦଶମ ହାସାଦିବତ୍ସଳ ପର୍ଯ୍ୟନ୍ତ ରସ ନିରୂପଣ, ଏକାଦଶରେ ରସ, ପରସ୍ପର ବିରୋଧ ରସାଭାଷ, ଭାବ ଶାନ୍ତି, ଉଦୟ ସାନ୍ଧି ଶବଳତା ନିରୂପଣ, ଦ୍ୱାଦଶରେ ଗୁଣ ବୃତ୍ତି-ରୀତି ଦଶପ୍ରାଣ ନିରୂପଣ, ତ୍ରୟୋଦଶରେ ଦୋଷ ନିରୂପଣ, ଚତୁର୍ଦ୍ଦଶରେ ଶବ୍ଦାଳଙ୍କାର ନିରୂପଣ, ପଞ୍ଚଦଶରେ ଅର୍ଥାଳଙ୍କାର ନିରୂପଣ, ଷୋଡ଼ଶରେ ଶବ୍ଦ ପ୍ରକାଶ ନିରୂପଣ, ସପ୍ତଦଶଠାରୁ ବିଂଶ କିରଣରେ କାବ୍ୟୋଚିତ ବର୍ଣ୍ଣନ ନିରୂପଣ କରା ଯାଇଅଛି । ଏହା ବ୍ୟତୀତ ୨୧ଶ କିରଣରେ ଉପମାନ, ୨୨ଶ କିରଣରେ କବି ପ୍ରସିଦ୍ଧି, ୨୩ଶରେ ସମସ୍ୟାପୁରଣୋଦୟ ନିରୂପଣ, ୨୪ଶରେ ନାୟିକାଦି ନିରୂପଣ ଓ ୨୫ଶରେ ସଙ୍ଗୀତ ନିରୂପଣ କରା ଯାଇଅଛି ଗ୍ରନ୍ଥ ଶେଷରେ କବି ପୁନର୍ବାର ରାଧାକୃଷ୍ଣ ଧ୍ୟାନ କରି ଅଛନ୍ତି । ଅନୁମାନ କରାଯାଏ, ୧୭୬୩ ମସିହାରେ ତାଙ୍କର ପୃଷ୍ଠପୋଷକ ରାଜା ଜଗନ୍ନାଥ ନାରାୟଣ ଦେବ ବିଭିନ୍ନ ତୀର୍ଥ ପର୍ଯ୍ୟଟନ ଯିବା ପୂର୍ବରୁ ଏହି ଗ୍ରନ୍ଥଟି ରଚିତ ହୋଇଥିଲା । କବିଙ୍କର ପ୍ରତିଭାର ଏହା ଏକ ନିଦର୍ଶନ । ଏହା ବ୍ୟତୀତ 'ରାମ ବିହାର' ନାମକ ଏକ ଓଡ଼ିଆ କାବ୍ୟ ଓ କେତେଖଣ୍ଡି ଚିତ୍ର କାବ୍ୟର ସେ ରଚୟିତା ଥିଲେ ବୋଲି ଅନୁମାନ କରାଯାଏ । କବିଭୂଷଣଙ୍କର ଜନ୍ମକାଳ ନିର୍ଦ୍ଦିଷ୍ଟ ଭାବରେ ନିରୂପିତ ନ ହୋଇଥିଲେ ମଧ୍ୟ ସେ ଯେ

ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧଭାଗରେ ଜୀବିତ ଥିଲେ ଏଥିରେ ସନ୍ଦେହର ଅବକାଶ ନାହିଁ ।

'ରାମଚନ୍ଦ୍ର ବିହାର'କୁ ଏକ ମହାକାବ୍ୟ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏଥିରେ କବି ରାମଚନ୍ଦ୍ରଙ୍କର ଜନ୍ମ, ବିବାହ, ରାବଣ ବଧ, ଅଭିଷେକ ପ୍ରଭୃତି ସୁନ୍ଦର ଭାବରେ ବର୍ଣ୍ଣନା କରି ଅଛନ୍ତି । ଏହା ବୈଦେହୀଶ ବିଳାସ ପରି ଅଳଙ୍କାର ଓ ରାଗ ରାଗିଣୀରେ ପରିପୂର୍ଣ୍ଣ ମାତ୍ର ଭାଷା ଓ ଭାବ ଏପରି କ୍ଲିଷ୍ଟ ନୁହେଁ । ଆଳଙ୍କାରିକ ହୋଇଥିବାରୁ କବି ଏହି ଗ୍ରନ୍ଥରେ ମଧ କବିଗୁଣ, କବିତ୍ୱ ଲକ୍ଷଣ ବିଭିନ୍ନ ଅଳଙ୍କାର ପ୍ରୟୋଗ, ସଙ୍ଗୀତ ତାଳଲୟ ଆଦିର ଲକ୍ଷଣ ଗାୟକ ଲକ୍ଷଣ, ବାଦ୍ୟ ଲକ୍ଷଣ, ବିଭିନ୍ନ ରାଗର ସମୟଯୋଗ୍ୟ ବ୍ୟବହାର ଆଦି ବିସ୍ତୃତଭାବରେ ବର୍ଣ୍ଣନା କରି ଅଛନ୍ତି । ଦୁଃଖର ବିଷୟ ରାମଚନ୍ଦ୍ର ବିହାର ଆଦ୍ୟାପି ଅପ୍ରକାଶିତ ।

କବିଙ୍କ ପ୍ରତିଭା ବିଷୟରେ ସମଗ୍ର ତଥ୍ୟ ଏ ପର୍ଯ୍ୟନ୍ତ ହସ୍ତଗତ ନ ହୋଇଥିଲେ ମଧ୍ୟ ତାଙ୍କର ସଂସ୍କୃତ ଭାଷା ଓ ସାହିତ୍ୟରେ ଅଗାଧ ପାଣ୍ଡିତ୍ୟ ଥିବାର ଯଥେଷ୍ଟ ପ୍ରମାଣ ମିଳିଅଛି । ଅଳଙ୍କାର ଶାସ୍ତ୍ର ହିସାବରେ ସାହିତ୍ୟ ଦର୍ପଣ ପରି 'କବି ଚିନ୍ତାମଣି' ଓ ଏହାର ଗ୍ରନ୍ଥକାର ପ୍ରତିଷ୍ଠା ଓ ଗୌରବ ଲାଭ କରିବା ଆଶା କରାଯାଏ । ଓଡିଆ ସାହିତ୍ୟରେ କବିଙ୍କର ପାଣ୍ଡିତ୍ୟ ଓ ଦକ୍ଷତା ରାମଚନ୍ଦ୍ର ବିହାର କାବ୍ୟ ପ୍ରମାଣ କରୁଅଛି ଓ ଆଶା କରାଯାଏ ଗ୍ରନ୍ଥର ପ୍ରକାଶନ ଫଳରେ କବିଭୂଷଣ ବୈଦେହୀଶ ବିଳାସର ଗ୍ରନ୍ଥକାରଙ୍କ ପରି ସର୍ବଜନ ଆଦୃତ ଓ ସମ୍ମାନିତ ହେବେ ।

ଅତ୍ୟନ୍ତ ପରିତାପର ବିଷୟ କବିଙ୍କର ସ୍ମୃତିରକ୍ଷା ଦିଗରେ ଏ ପର୍ଯ୍ୟନ୍ତ କୌଣସି ଉଦ୍ୟମ ହୋଇନାହିଁ । ନିକଟରେ (୧୯୬୮ ମସିହାରେ)ପାରଳାଖେମୁଣ୍ଡି ନଗରପାଳିକା କରଣ ସାହିସ୍ଥିତ ସ୍କୁଲ ତାଙ୍କରି ନାମରେ ନାମିତ କରି ଅଛନ୍ତି ଓ ସେଠାରେ ପ୍ରତିବର୍ଷ ତାଙ୍କର ବିସ୍ମୃତପ୍ରାୟ ପ୍ରତିଭାର ସ୍ମରଣ ଓ ଆଲୋଚନା କରା ଯାଉଛି । ଓଡ଼ିଶା ସାହିତ୍ୟ ଏକାଡ଼େମୀ ଆନୁକୂଲ୍ୟରେ କବିଭୂଷଣଙ୍କର ସୁପ୍ରସିଦ୍ଧ ଗ୍ରନ୍ଥ ପ୍ରକାଶିତ ହେବାର ଆଶା କରାଯାଏ । ବହୁ ଗବେଷକ ଓଡ଼ିଶାର ବିଭିନ୍ନ ବିଶ୍ୱବିଦ୍ୟାଳୟମାନଙ୍କରେ 'କବି ଚିନ୍ତାମଣି'ର ବିସ୍ତୃତ ଆଲୋଚନା ଆରମ୍ଭ କରିଥିବା ସୁଖର ବିଷୟ ।



# ଗୀତିକାର ଗୌରହରି ପରିଛା

ସଙ୍ଗୀତକାର ଗୌରହରି ଓଡ଼ିଶାର ବୈଷ୍ଣବକବି କବିକଳହଂସ ଗୋପାଳକୃଷ୍ଣ ପଟ୍ଟନାୟକ (ଖ୍ରୀ.୧୭୮୫-୧୮୬୨)ଙ୍କର ସମକାଳୀନ କବି । ପାରଳାଖେମୁଣ୍ଡିର ବିଶିଷ୍ଟ ବ୍ୟକ୍ତିମାନଙ୍କର ଗଣନା ଅନୁସାରେ କବିଙ୍କର ଜନ୍ମ ଖ୍ରୀ.୧୭୯୪ ଓ ମୃତ୍ୟୁ ଖ୍ରୀ.୧୮୮୪ ବୋଲି ଧରା ଯାଇଅଛି । ଉନବିଂଶ ଶତାବ୍ଦୀର ଗୌରହରି ଅନ୍ୟତମ ବିଶିଷ୍ଟ କବି । ତାଙ୍କର ଚ଼ଉପଦୀ ଓ ସଙ୍ଗୀତଗୁଡ଼ିକ ଓଡ଼ିଶାରେ ବିଶେଷ ଜନପ୍ରିୟ । ମାତ୍ର ଓଡ଼ିଆ ସାହିତ୍ୟର ଇତିହାସ ଲେଖକମାନେ ଏହାଙ୍କର ବିଷୟ ବିଶେଷଭାବରେ ଉଲ୍ଲେଖ କରି ନାହାନ୍ତି । ପାରଳାର ସ୍ୱର୍ଗତ ଆପନ୍ନା ପଣ୍ଡା ତାହାଙ୍କର ଉତ୍କଳ ସାହିତ୍ୟର ଇତିହାସ ୨ୟ ଭାଗରେ (ଖ୍ରୀ.୧୯୨୫ରେ ପ୍ରକାଶିତ) ଏହାଙ୍କ ବିଷୟରେ ଯତ୍ ସାମାନ୍ୟ ଉଲ୍ଲେଖ କରି ଅଛନ୍ତି । ଗୌରହରି ମୁଖ୍ୟତଃ ଗିତକାର ବା ଚଉପଦୀ ଲେଖକ । ବ୍ୟାସକବି ଫକୀର ମୋହନ 'ଉତ୍କଳ ଭ୍ରମଣ'ରେ ଯଥାର୍ଥତଃ ଏହାଙ୍କ ବିଷୟରେ ଲେଖିଛନ୍ତି ;

"ଓଡ଼ିଆ ଦକ୍ଷିଣ ସୀମା ପାରଳାଖିମିଡି
ଧନେ ମାନେ କିଏ ଆଉ ଅଛି ତାକୁ ବଳି,
କବିତ୍ୱ ଗୌରବସ୍ଥାନ ନ ଦେଖେ ସେପରି
ଗାଉଥିଲେ ବସି ଗୀତ ଯହିଁ ଗୌରହରି ।"

କାବ୍ୟ-ସଙ୍ଗୀତ ଲୀଳାଭୂମି ଦକ୍ଷିଣ ଓଡିଶାର ଓଡିଆ ସାହିତ୍ୟକୁ ଦାନ ଚଉପଦୀ । ଗୋପାଳକୃଷ୍ଣ, ହରିକୃଷ୍ଣ ବେବର୍ତ୍ତା ଓ କବିସୂର୍ଯ୍ୟଙ୍କ ଭଳି ଗୌରହରିଙ୍କର ମଧ୍ୟ ବୈଷ୍ଣବ କବିଭାବରେ ଜନପ୍ରିୟ ଚ଼ଉପଦୀ ରଚ଼ନା ଅନବଦ୍ୟ । ଦୀର୍ଘ ଛାନ୍ଦ ବିଶିଷ୍ଟ କାବ୍ୟ ରୀତି ବହୁକାଳ ଅନୁସୃତ ହେବାପରେ କ୍ଷୁଦ୍ର ଚ଼ଉପଦୀ ରଚନା ଜନପ୍ରିୟତା ଲାଭ କରିଥିଲା । ସଂସ୍କୃତ ଗୀତଗୋବିନ୍ଦ ଓ ଗୌଡ଼ୀୟ ବୈଷ୍ଣବ ପଦାବଳୀ ସାହିତ୍ୟ ମଧ୍ୟ ଚ଼ଉପଦୀ ରଚ଼ନାକୁ ପ୍ରଭାବିତ କରିଥିଲା । ଗୌରହରି ଛଉପଦୀ ରଚ଼ନା କରି ନିଜର ଅପୂର୍ବ କବିତ୍ୱର ଉଜ୍ଜ୍ୱଳ ନିଦର୍ଶନ ଦେଖାଇ ଅଛନ୍ତି ।

ପାରଳାଖେମୁଣ୍ଡିର ଗୋପିନୀ ସାହିରେ ବିଖ୍ୟାତ ପରିଛା ପରିବାରରେ ଗୌରହରି ଜନ୍ମ ଗ୍ରହଣ କରିଥିଲେ । ସେ ଦୀର୍ଘାୟୁ(୯୦)ଥିଲେ ବୋଲି ଜଣାଯାଏ । ବଲ୍ୟ ବୟସରେ

ତାଙ୍କର ଅଧିକ ଧୀଶକ୍ତି ନଥିଲା । ପାଠ୍ୟକ୍ରମରେ ଅମରକୋଷ ମାତ୍ର ଶେଷ କରି ସେ ବିଦ୍ୟାଳୟ ତ୍ୟାଗ କଲେ । ସଙ୍ଗୀତରେ ବିଶେଷ ରୁଚି ଥିବାରୁ ସେ ସଙ୍ଗୀତ ବିଦ୍ୟା ଶିକ୍ଷା କଲେ । କର୍ଣ୍ଣାଟକୀ ସଙ୍ଗୀତରେ ସେ ପାରଦର୍ଶିତା ଲାଭ କଲେ । ସଙ୍ଗୀତରେ ପାରଦର୍ଶୀ ହୋଇ ସେ ଚଉପଦୀମାନ ରଚନା କଲେ । ତାଙ୍କର ରଚନା ଭାବପୂର୍ଣ୍ଣ ହୋଇନଥିଲେ ମଧ୍ୟ ଛନ୍ଦ ବନ୍ଧନରେ ସୁଶ୍ରାବ୍ୟ ହୋଇଥିଲା । କାଳକ୍ରମେ ଉଚ୍ଚକୋଟୀର ରଚନାମାନ ପ୍ରଣୟନ କରି ସେ ରାଜ ଦରବାରରେ ଓ ପରେ ସମଗ୍ର ଉତ୍କଳରେ କବି ସମାଜରେ ଗଣ୍ୟମାନ୍ୟ ହେଲେ । ତାଙ୍କର ଜୀବିତାବସ୍ଥାରେ ରଚିତ ରସପୂର୍ଣ୍ଣ ଚଉପଦୀମାନ ପରବର୍ତ୍ତୀ କାଳରେ ପଦ୍ୟମାଳା ନାମରେ ପ୍ରକାଶିତ ହୋଇଥିଲା । ରାଧାକୃଷ୍ଣଙ୍କର ପ୍ରେମଲୀଳାକୁ ଲକ୍ଷ୍ୟ କରି ଏହି ଚଉପଦୀମାନ ରଚିତ । ଏହା ବ୍ୟତୀତ ବସ୍ତ୍ରାପହରଣ, ଅଷ୍ଟକାଳ ସେବା, ଗୀତଗୋବିନ୍ଦର ଓଡିଆ ଅନୁବାଦ ଓ ପ୍ରହ୍ଲାଦ ନାଟକ ସେ ରଚନା କରିଥିଲେ । ନାଟକଟି ଜଳନ୍ତର ଅଧୀଶ୍ୱର ଶ୍ରୀ ରାମଚନ୍ଦ୍ର ଛୋଟରାୟଙ୍କର ନାମରେ ଅଙ୍କିତ ଓ ଅର୍ପିତ ହୋଇଥିଲା । ତାଙ୍କ ମୃତ୍ୟୁ ପରେ କେହି ଏହାକୁ ପାଇ ନିଜ ରଚନା ବୋଲି କହି ଗଞ୍ଜାମର ବିଭିନ୍ନ ରାଜବାଟିରେ ପ୍ରଚାର କଲେ । ନାଟକଟି ବର୍ତ୍ତମାନ ବିଭିନ୍ନ ସ୍ଥାନରେ ବିକୃତ ଆକାରରେ ପରିବେଷିତ ହେଉଅଛି ।

ଜନ୍ମସ୍ଥାନ ପାରଳାଖେମୁଣ୍ଡିରେ ବହୁବର୍ଷ ଅତିବାହିତ କରି ସେ 'ଜଗଜ୍ଜନ ମନୋରଞ୍ଜିନୀ ମଞ୍ଜୁଷା'କୁ ବାହାରିଗଲେ । ମଞ୍ଜୁଷାର ଗୁଣଗ୍ରାହୀ କାବ୍ୟାମୋଦୀ ରାଜା ଶ୍ରୀ ଜଗନ୍ନାଥ ରାଜମଣିଦେବ ତାଙ୍କୁ ମହା ସମାଦରରେ ପ୍ରାୟ ପଚାଶ ବର୍ଷ କାଳ ସେଠାରେ ରଖିଥିଲେ । ତାଙ୍କଠାରୁ ସଙ୍ଗୀତ ବିଦ୍ୟା ଶିକ୍ଷା କରି ସେଥିରେ ସେ ପାରଦର୍ଶିତା ଅର୍ଜ୍ଜନ କରିଥିଲେ । ତଦୀୟ ପୁତ୍ର ରାଜା ଶ୍ରୀ ବାସୁଦେବ ରାଜମଣି ଦେବଙ୍କ ରାଜତ୍ୱ ଅବସରରେ କବି ପୁଣି ପାରଳାଖେମୁଣ୍ଡି ଫେରି ଆସିଲେ । ବୃଦ୍ଧାବସ୍ଥା ପର୍ଯ୍ୟନ୍ତ ସେ ରାଧାକୃଷ୍ଣଙ୍କ ପ୍ରେମଲୀଳା ବିଷୟକ କବିତାମାନ ରଚନା କରୁଥିଲେ । ଏହି କବିତାମାନ ମଧ୍ୟ ପଦ୍ୟମାଳାରେ ସ୍ଥାନ ପାଇଅଛି । କବିଙ୍କର ସମସ୍ତ ପ୍ରକାଶିତ ରଚନା ଗୌରହରି ଗ୍ରନ୍ଥାବଳୀରେ ସ୍ଥାନ ପାଇଅଛି । ଏହି ଗ୍ରନ୍ଥଟି ଅତୁଳ ସମ୍ମାନାସ୍ପଦ ପାରଳାଖେମୁଣ୍ଡି ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତିଙ୍କ ଆନୁକୂଲ୍ୟରେ ଶ୍ରୀ ଆପାନ୍ନା ପଣ୍ଡାଙ୍କ ଦ୍ୱାରା ସମ୍ପାଦିତ ହୋଇ ୧ ୯ ୨ ୬ ଖ୍ରୀଷ୍ଟାବ୍ଦରେ ପାରଳାଖେମୁଣ୍ଡିସ୍ଥିତ ଗଜପତି ପ୍ରେସରୁ ପ୍ରକାଶିତ ହୋଇଅଛି । ପଦ୍ୟାବଳୀର ପଦ୍ୟମାନ ନିଜର ପୃଷ୍ଟ ପୋଷକ ଜଳନ୍ତର ରାଜା ଶ୍ରୀ ରାମଚନ୍ଦ୍ର ଛୋଟରାୟ, ଧରାକୋଟର ରାଜା ଶ୍ରୀ ବ୍ରଜସୁନ୍ଦର ସିଂହ, ପାରଳାର ରାଜା ଶ୍ରୀ ଗୌରଚନ୍ଦ୍ର ଓ ତାଙ୍କର

ପିତା ରାଜା ଶ୍ରୀ ପ୍ରତାପରୁଦ୍ର ଦେବ, ମଞ୍ଜୁଷା ରାଜା ଶ୍ରୀ ଜଗନ୍ନାଥ ଦେବ ରାଜମଣି ପ୍ରଭୃତିଙ୍କ ନାମରେ କରା ଯାଇଅଛି । ନିମ୍ନରେ କେତୋଟି ଉଦାହରଣ ଦିଆଗଲା ;

୧. କହିଲେ ଜଳନ୍ତର ଛୋଟରାୟ ନରବର
ରାମକୃଷ୍ଣ ଦେବ ଏହିପରି ସେ ସହଚରୀ । (ପୃ.୭୯)

୨. ଧବ ଆଗେ ରହି ଧିକ୍‌କରି ନ ହୋଇ
ଧନ୍ୟ କେବା ବୋଲାଇବ
ଧରାକୋଟ ନୃପ ଶ୍ରୀ ବ୍ରଜସୁନ୍ଦର ସିଂହ କହେ ଏହୁ ଭାବ । (ପୃ.୩୫)

୩. ପାରଳାଧବ ଗୌରଚନ୍ଦ୍ର ଦେବ
ଏ ରସେ ତୋଷେ ଭାଷେ ସରସ ଚିତ୍ତରେ । (ପୃ.୯)

୪. ଅଇଲି ନ ଜାଣି ଆଉ କେ କ୍ଷଣି
ନ ତେଜିବି ଶ୍ରୀ ପ୍ରତାପରୁଦ୍ର ଦେବ ଭଣି ସେ । (ପୃ.୩)

୫. ଖଣ୍ଡିତା ଶ୍ରୀ ରାଧାବାଣୀ
ଶ୍ରୀ ଜଗନ୍ନାଥ ଦେବ ରାଜମଣି
ହୋଇ ଅତି ଆନନ୍ଦ ଚିନ୍ତି ସରୋଜ ପଦ
କହେ ଏ ରସେ ପଦ
ସୁଜନ ଜନେ ଶୁଭଦ । (ପୃ.୩୩)

୬. ଭାଙ୍ଗି କର୍ପୂର ତାମ୍ବୁଳ ଆଣି
ସାଜି ରଖିଥିବ ବୀଣାବାଣୀ
ଲକ୍ଷ୍ମୀ ନାରାୟଣ ରାଜମଣି
କହେ ହରଷେ ବଞ୍ଚିବା ପ୍ରିୟ ସହିତରେ (ପୃ.୩୭)

ଅତି ଉଚ୍ଚକୋଟୀର ସଙ୍ଗୀତଜ୍ଞ ଥିବା ଯୋଗୁଁ ଗଞ୍ଜାମର ତତ୍‌କାଳୀନ ରାଜାମାନେ ତାଙ୍କୁ ବହୁତ ଆଦର କରୁଥିଲେ, ନାନା ପୁରସ୍କାର ପ୍ରଦାନ କରିଥିଲେ । ଦକ୍ଷିଣ ଓଡିଶାରେ ସେ ପ୍ରଥମେ ଗୀତଗୋବିନ୍ଦ ଓଡ଼ିଆରେ ଅନୁବାଦ କରିଥିଲେ । 'ସଙ୍ଗୀତ ଗୀତଗୋବିନ୍ଦ' ଧରଣୀଧରଙ୍କ ଅନୁବାଦ ପରି ଏହା ଏତେ ଲୋକପ୍ରିୟ ନୁହେଁ ମାତ୍ର ଧରଣୀଧର ଛାନ୍ଦରେ ଅନୁବାଦ କରିଥିବା ସ୍ଥଳେ ଗୌରହରି କ୍ଷୁଦ୍ର କ୍ଷୁଦ୍ର ସଙ୍ଗୀତ ମାଧ୍ୟମରେ ହିଁ ଗୀତଗୋବିନ୍ଦ ଅନୁବାଦ କରି ଅଛନ୍ତି । ଶ୍ରୀ ଜୟଦେବ ଓ ଶ୍ରୀ ଗୀତଗୋବିନ୍ଦ ପୁସ୍ତକରେ ଐତିହାସିକ କେଦାରନାଥ କହନ୍ତି, "ଗୌରହରି ବିଭିନ୍ନ ରାଗତାଳ ନିବଦ୍ଧ ସଙ୍ଗୀତରେ ଶ୍ରୀ

ଗୀତଗୋବିନ୍ଦର ଅନୁବାଦ କରିଛନ୍ତି । ଏହି ଅନୁବାଦରେ ଶ୍ରୀ ଗୀତଗୋବିନ୍ଦର ପ୍ରତି ସର୍ଗର ଶେଷ ଶ୍ଳୋକର ଅନୁବାଦ କରାଯାଇ ନାହିଁ । ଗୌରହରିଙ୍କର ଉଭୟ ଓଡ଼ିଆ ଓ ତେଲେଙ୍ଗା ସାହିତ୍ୟରେ ଓ ସଙ୍ଗୀତରେ ବିଶେଷ ପାଣ୍ଡିତ୍ୟ ଥିବାରୁ ତାଙ୍କ ସଙ୍ଗୀତ ମଧ୍ୟରୁ ଅନେକଗୁଡ଼ିଏ ତେଲେଙ୍ଗା ଗୀତର ରାଗତାଳ ନିବଦ୍ଧ । ତେଲଙ୍ଗା ଗୀତର ପ୍ରଥମ ଧାଡିରେ ଉଲ୍ଲେଖ କରି ସେହି 'ପ୍ରତି'ସ୍ୱର ବାଦୀଶାରେ ମଧ୍ୟ କେତେକ ସଙ୍ଗୀତ ରଚିତ । ତାଙ୍କଦ୍ୱାରା ଶ୍ରୀ ଗୀତଗୋବିନ୍ଦର ପ୍ରଥମ ଶ୍ଳୋକର ଅନୁବାଦରେ ପିଣ୍ଡିକ ଶ୍ରୀ ଚନ୍ଦନ ଲିଖିତ 'ବସନ୍ତ ରାସ'ର ଭାବଧାରା ଅନୁସୃତ ହୋଇଅଛି ।" ଗୋସ୍ୱାମୀମାନଙ୍କର ବଙ୍ଗୀୟ ଭାଷା ମିଶ୍ରିତ ଅଷ୍ଟକାଳୀନ ସେବାଗ୍ରନ୍ଥରୁ ଅନୁବାଦ କରି ସେ ନିଜ ପାଣ୍ଡିତ୍ୟର ପରିଚୟ ପ୍ରଦାନ କରି ଅଛନ୍ତି । କବି ଜଣେ ନିଷ୍ପାପର ବ୍ରାହ୍ମଣ ବୈଷ୍ଣବ ଧର୍ମ ପ୍ରଚାରକ ଓ ଉଚ୍ଚକୋଟୀର ସଙ୍ଗୀତଜ୍ଞ ହିସାବରେ ଉତ୍କଳରେ ନିଜ ଆସନ ପ୍ରତିଷ୍ଠା କରି ପାରିଥିବା ବ୍ୟାସକବି ଫକୀର ମୋହନଙ୍କ ମନ୍ତବ୍ୟରୁ ପରିସ୍ଫୁଟ ।

କବିଙ୍କର ସଙ୍ଗୀତ କେବଳ ଓଡ଼ିଶାର ନୁହେଁ ସମଗ୍ର ଉତ୍କଳର ଗୌରବ ଓ ଗର୍ବ । ସଙ୍ଗୀତ ରଚନାରେ କବି ଜଣେ ଯୁଗ ପ୍ରବର୍ତ୍ତକ ଥିଲେ । ସେ ଗାୟକ ଓ ଶ୍ରେଷ୍ଠ ବୀଣା ବାଦକ ମଧ୍ୟ ଥିଲେ । ତାଙ୍କର ପ୍ରଧାନ ପୃଷ୍ଠପୋଷକ ମଞ୍ଜୁଷା ରାଜା ତାଙ୍କୁ ରାମାନୁଜ ବୈଷ୍ଣବ ହେବାକୁ ବହୁତ ପ୍ରବର୍ତ୍ତାଇ ଥିଲେ ଓ ନାନା ପ୍ରଲୋଭନ ମଧ୍ୟ ଦେଖାଇଥିଲେ । ଅନ୍ୟ କେହି ଦୁର୍ବଳମନା ଏ ଅବସ୍ଥାରେ ରାଜାନୁରୂପ ଧର୍ମ ଗ୍ରହଣ କରି ଥାଆନ୍ତେ ମାତ୍ର ଗୌରହରି କେବଳ ରାଜାଙ୍କୁ ଯେ ନାସ୍ତିବାଣୀ ଶୁଣାଇ ଥିଲେ ତାହା ନୁହେଁ, ପ୍ରତିବାଦରେ ଜନ୍ମସ୍ଥାନ ପାରଳାଖେମୁଣ୍ଡିକୁ ଫେରି ଆସିଲେ ଓ ନିଜର ଆଧାତ୍ମିକ ଚିନ୍ତାଧାରା ନିଜର କବିତାରେ ଏହି ପ୍ରକାର ବ୍ୟକ୍ତ କଲେ ।

"କେ ଭଜନ କରୁ କାହାକୁ

ମୋ ମନ ମଜ୍ଜିଲା କୃଷ୍ଣପଦକୁ । (ଘୋଷ)
ପୁରନ୍ଦର ମଣି ଜିଣାବରନ
କେବଳ ମାତ୍ର ମୋହର ଶରଣ
ଶ୍ରୀରାଧା ଗୋବିନ୍ଦ ଦୁହିଁଙ୍କ ବିନାରେ
ସ୍ମରଣେ ଆଣିବି ନାହିଁ ଚିତ୍ତକୁ ।
ନବୀନ କିଶୋର ଶ୍ୟାମସୁନ୍ଦର,
ଚରଣ ଯୁଗଳେ ନିତ୍ୟ କିଙ୍କର

ପଣେ ଏକାଦିନ ଯିବ ଏହି ମନ
ବାଞ୍ଛା କରିଅଛି ପୂର୍ଣ୍ଣ ହେବାକୁ ।
ପ୍ରକାଶ କରିବା କଥା ଏ ନୋହେ
ସ୍ମରଣ କରୁଥିବି ମାତ୍ର ସ୍ନେହେ
ବାହ୍ୟ ଭିତରେ ଯେ କରନ୍ତି ସଞ୍ଚାର
ସେ ଜାଣନ୍ତୁ ଏକା ମୋର ନିଷ୍ଠାକୁ ।
ନିନ୍ଦା ବନ୍ଦନାରେ କି ହେବ ଫଳ
ଦୋଷ ମାତ୍ର ସିନା ହୋଇବ ଠୂଳ
ଜାଣି ଜାଣି କେଉଁ କାରଣେ ଅନଳ
ଆଣି ଚଢ଼ାଇ ଘେନିବ କରକୁ ।
କହେ ଗୌରହରି ପ୍ରତି ଜନ୍ମରେ
ଏହି ଅନୁକମ୍ପା ଥାଉ ମୋ ଠାରେ
ମୋ ପରି ହେଲେ ଜଣେ ପତିତରେ
ଅଛି ବୋଲି କେ ନବ ବଦନକୁ ।"

ଶୁଣାଯାଏ କବି ମଞ୍ଜୁଷା ଛାଡ଼ିବା ସମୟରେ ରାଜ ପ୍ରାସାଦର ଦ୍ୱାର ଦେଶରେ ଖଡ଼ି ପଥରରେ ଏଥିର ପ୍ରଥମ ପଦଟି ଲେଖିଦେଇ ଆସିଥିଲେ । କବିଙ୍କର ନିଷ୍କାମ ପ୍ରେମ ଓ ଉଚ୍ଚ ଦାର୍ଶନିକ ଆଦର୍ଶ ଏହିପରି ଅନେକ କବିତାର ଛନ୍ଦେ ଛନ୍ଦେ ପ୍ରକାଶ ପାଇଅଛି । କବିତା ଓ ଅନ୍ୟାନ୍ୟ ରଚ଼ନାମାନ ମୁଖ୍ୟତଃ ଶୃଙ୍ଗାର ରସଯୁକ୍ତ ହେଲେ ମଧ୍ୟ ଏଥିରୁ କବିଙ୍କର ବଳିଷ୍ଠ ଈଶ୍ୱର ପ୍ରେମ ଓ ଗଭୀର ଆଧ୍ୟାତ୍ମିକତା ପ୍ରକାଶ ପାଏ । ପ୍ରଖ୍ୟାତ ଓଡ଼ିଆ ସାହିତ୍ୟ ସମାଲୋଚ଼କ ଡକ୍ଟର ଜାନକୀବଲ୍ଲଭ 'ଭରଦ୍ୱାଜ'କବିଙ୍କର ରଚ଼ନାବଳିକୁ ମୁଖ୍ୟତଃ ଚାରିଭାଗରେ ବିଭକ୍ତ କରିଅଛନ୍ତି

୧.ରାଧାକୃଷ୍ଣ ଓ ପ୍ରାକୃତ ପ୍ରେମ ଲୀଳାତ୍ମକ ଚଉପଦୀ ସମୂହ
୨.ବଙ୍ଗଳା ଅଷ୍ଟକାଳ ସେବା
୩.ବସ୍ତ୍ରାପହରଣ (ଚ଼ଉପଦୀ)
୪.ଭାଷା ସଙ୍ଗୀତ ବିନୋଦ (ଗୀତଗୋବିନ୍ଦର ଅନୁବାଦ)

କବିଙ୍କର କାବ୍ୟ ପାଠରୁ ଜଣାଯାଏ ଯେ ସେ ବଙ୍ଗଳା, ହିନ୍ଦି, ତେଲୁଗୁ, ଓଡିଆ ଓ ସଂସ୍କୃତ ଭାଷାରେ ପ୍ରବୀଣ ଥିଲେ । ପ୍ରାଚୀନ କବିମାନଙ୍କ ମଧ୍ୟରୁ ବ୍ରଜନାଥ ବଡ଼ଜେନାଙ୍କ

ବ୍ୟତୀତ ହିନ୍ଦି, ବଙ୍ଗଳା, ତେଲୁଗୁରେ ସାହିତ୍ୟ ଲେଖିଥିବା ବ୍ୟକ୍ତି ଓଡିଆ ସାହିତ୍ୟରେ ବିରଳ । ସେ ଓଡ଼ିଆ, ବଙ୍ଗଳା, ହିନ୍ଦି ଓ ତେଲୁଗୁ ସମ୍ମିଶ୍ରଣରେ ଯେଉଁସବୁ ଚାତୁର୍ଭାଷିକ ପଦ୍ୟ ରଚନା କରାଯାଇଛନ୍ତି ତାହା ଓଡ଼ିଆ ସାହିତ୍ୟରେ ଏକ ବିଚିତ୍ର ପରୀକ୍ଷା । ଡକ୍ଟର ଭରଦ୍ୱାଜ ତାହାର ଏକ ଉଦାହରଣ ଦେଇଛନ୍ତି ତାଙ୍କର 'ପ୍ରାଚୀନ ଗୀତକବି ଓ କାବ୍ୟଧାରା' ପୁସ୍ତକରେ ।

"ସାଜି ଶ୍ରୀଅଙ୍ଗ ସୁବେଶରେ
ରାଜୀବ ନେତ୍ର ଭଜି ସଙ୍କେତ ନିକୁଞ୍ଜରେ ।
ବିଛାୟାଂ ପଲଙ୍କ ସୁପାତି
ଯାରାନା କିୟା ରତନ ତି ବାତୀ ।
ଜାଗନ ମେ ଭୋର ଭାଇ ରାତି
ଥାନେ ବଞ୍ଚିବା ହେଲା ରୀତି
ଆତାନି ବାଣ୍ଟେ ହିତାବାନା କାମିନୁ ଲେବାରୁ
ସାଉନ୍ଦର୍ଯ୍ୟ ମୁନାରାତି ଦେବୀ ଶାଚି ଦେଦୀ ସାରିଗାରୁ
ଏକେ ସେ ତ ରାଜ ନନ୍ଦିନୀ
ପରେ ତେଜିଲକି ଜାନୀ । ସହଜେ ରାଖାଲ ତୁମି
କି ଜାନ ହୋ ନୀଲମନି ।" ।୨।

ଗୌରହରି ପଦ୍ୟାବଳୀର ଅନ୍ୟଏକ ଚାତୁର୍ଭାଷୀ ଗୀତର ନମୁନା-

ରାଗ ମୁଖାରି । ଆଦି ତାଳ ॥

ପ୍ରାଣନାଥକେ ହାଗଲ୍ୟାଂ କିସେର । ମାନେସ୍ୱରେ ।
ବୋଲି କି ଉପାଇ କରିଗୋ ।
କେ ଜାନିବେ ଏମନରୀତି ଛାଡ଼୍ୟା ଆମଇ ଯାବେ କତି ।
ବୋଲିୟା ପରାଣ ପତି । ଜାଛିଲ ଆମର ମନେ ॥ ପଦ ॥
ଜଗଜ୍ଜନ ମନୋହର ମୂର୍ତ୍ତି ନବୀନ କିଶୋର ।
ମୁରଲୀ ଖୁରଲୀ ଶେଖର । ଆର ଜନ୍ନେ ଥୋରି ବାତ କୈମୋସେ ।
ସ୍ତ୍ରୀ ଲୋଲୁତୁ ରାନ୍ନାପୁ ମାଲାଲିଚେ ଦା ନାଣ୍ଟେ ଓଢାଣ୍ଡି ।
ବିଧି ବାମରୁ ବୁଦ୍ଧି ବାମ ହେଲାରେ ସହି ।
କେମନ ଜିବ ଆମି ରସିକ ନାଗର ।

ପରାନେ କି କାଜ ଆର । ଆଛେ କାଲ୍ୟା ଚା଼ନ୍ଦେର୍‌ବିନେ ॥୧॥
ଶୁଣି ଅନାଦର ବାଣୀ । ଶିଖଣ୍ଡ ଚୂଳ ଧରଣୀ ।
ଲୋଟାଇଲେ ପୁଣି ପୁଣି । ପ୍ୟାରୀ ହାମାରା ଆଖନ୍ନେ ବୁହାକେ ପାନି ।
କାଠିନା ଚିତ୍ତାମୁନା ଏଟୁଲା ଏବ୍‌ରିନି । ମାଟା ବିନାକୁଣ୍ଡି ।
କରିବା ମାନ ପ୍ରତି ଦ୍ୱିଗୁଣେ ହେଲି ଦୁଃଖୀ ।
କାରେ କିବୋଲି କେବେ ଥିତ ଆଛେ ଆର ।
ପାପ କପାଲେ ଆମାର । ଲିଖନ୍ ହୋୟାଛେ ଏମନେ ॥୨॥
କୁଷିତ ବୁଦ୍ଧିରେ ମୁହିଁ । ପ୍ରିୟରେ ଗରବ ବହି ।
ବିରହ ଅନଲେ ଦହି । ହୋଇ ଅତେର ସଜନି ।
କୋଦିବେ ସାଂୟାଂ ହାଂମାରେ ।
ନେଯେୟୁ ପୁନ୍ୟା ମିଟୁଲା ଏନେ ନେମି ସେତୁ ।
ଆଉମୁ କେହି ବଞ୍ଚିବା ଭରସା ନାହିଁ ।
ମଦନ ବାନ ଅନ୍ତରେ ପସିୟାଂ ହାନେ ।
ଏମନ୍ ଜାନି ଜାନି କେଲେ । ପୀରତି କରିଲ୍ୟାଂ ଶ୍ୟାମେର୍ଷନେ ॥୩॥
ଗଙ୍ଗବଂଶ କ୍ଷୀରାର୍ଣ୍ଣବ । ଉଦେ କୁମୁଦ ବାନ୍ଧବ ଶ୍ରୀବୀର ଗୌରଚନ୍ଦ୍ର ଦେବ
ଗଜପତି ମହାରାଜା
ବୋଲେ ମିଳାଉଙ୍ଗି କୁଞ୍ଜନାମେ ବେଡୁକା ବୋଇ ବେଣୁ ଗୋପାଳାନି
ଶ୍ରୀରାଧା ସହ । ବିହରିଲେ କେଳି ଭୁବନେ ।
ଦୁହୁଁ ଦୁହାଁରି ପ୍ରେମ ରସେ ଭୁଲ୍ୟେଭୋଳ ।
କମଳିନୀ କୋଳେ ଅଳି ମାତି ରହିଲି ଯେମନେ ॥୪॥

ଗୌରହରି ଏକନିଷ୍ଠ ଗୌଡୀୟ ବୈଷ୍ଣବ କବି ଥିଲେ । ତାଙ୍କର ଗୁରୁଙ୍କର ନାମ ଥିଲା ଗୋବିନ୍ଦ ଦାସ । ସମ୍ଭବତଃ ଗୋବିନ୍ଦ ଦାସ ରସିକାନନ୍ଦ ଦାସଙ୍କର ଶିଷ୍ୟ ଥିଲେ । ଅଷ୍ଟକାଳ ସେବାରେ ବିଭିନ୍ନ ଛାନ୍ଦର ଭଣିତାରେ କବି ଲେଖିଛନ୍ତି :-

"ଶ୍ରୀ ଗୁରୁ ଗୋବିନ୍ଦ ଦାସ ପଦ କରି ଆଶ
ଦୁଇଦଣ୍ଡ ଲୀଳା କହେ ଗୌରହରି ଦାସ"

ଉତ୍କଳୀୟ ବୈଷ୍ଣବ ମତବାଦର ସାମାନ୍ୟତମ ପ୍ରଭାବ ମଧ୍ୟ ତାଙ୍କ ରଚନାରେ ପରିଲକ୍ଷିତ ହୁଏ ନାହିଁ । ଚୈତନ୍ୟ ଓ ତାଙ୍କ ଅନୁଗାମୀ ରୂପ ସନାତନ, ଜୀବ ଗୋସ୍ୱାମୀଙ୍କ ପ୍ରତିପାଦିତ ମତକୁ ହିଁ ଜୀବନାଦର୍ଶଭାବେ ଗ୍ରହଣ କରି ଯାଇ ଅଛନ୍ତି । ତାହାଙ୍କର ସମଗ୍ର ରଚନାବଳୀରେ କବି ମୁଖ୍ୟତଃ ପରକୀୟା ପ୍ରୀତିର ତତ୍ତ୍ୱକୁହିଁ ବର୍ଣ୍ଣନା କରିଛନ୍ତି । ଗୋପାଳବଲ୍ଲଭ ଦାସ ତାଙ୍କର ୧୯୦୬ ଖ୍ରୀଷ୍ଟାବ୍ଦରେ ପ୍ରକାଶିତ ପ୍ରୀତି ସୁଧାକର ଗ୍ରନ୍ଥରେ କବିଙ୍କର କେତୋଟି ସଙ୍ଗୀତ ପ୍ରଥମେ ସନ୍ନିବେଶିତ କରିଥିଲେ । ଗୋପାଳବଲ୍ଲଭ ଓଡିଶା ସଙ୍ଗୀତର ବିସ୍ତୃତ ଆଲୋଚନା ପ୍ରସଙ୍ଗରେ ଯଥାର୍ଥତଃ ଲେଖିଥିଲେ -

"ଯୁଗଧର୍ମ ଅନୁସାରେ ରାଧାକୃଷ୍ଣଙ୍କ ପ୍ରେମ ମୋକ୍ଷପଥ ହେଉ ବା ନ ହେଉ, ଆଲୋଚିତ କବିମାନେ ଯେ ସେ ପ୍ରେମ ବା ପ୍ରୀତିକି ବିଶୁଦ୍ଧ ପବିତ୍ର ପଦାର୍ଥ ଓ ମୋକ୍ଷପଥ ଜ୍ଞାନକରି ବିଶ୍ୱାସରେ ଗୀତ କରିଯାଇ ଅଛନ୍ତି ତାହାର ପ୍ରମାଣ ସେମାନଙ୍କ ଗୀତରେ ସ୍ପଷ୍ଟାକ୍ଷରେ ଦେଖାଯାଏ"

କବିଙ୍କ ଗୋଟିଏ ସଙ୍ଗୀତ ଗୀତଗୋବିନ୍ଦର "ରତି ସୁଖସାରେ ଗତମଭିସାରେ ମଦନ ମନୋହର ବେଶମ" ଗୀତର ଭାବ ସ୍ମୃତିପଥାରୂଢ କରିଥାଏ । ଏହା ଏକ ସାର୍ଥକ କବିତା । ଅନ୍ଧ ଅପନ୍ନା ଗାଇଥିବା ରେକର୍ଡଗୀତ

"ହୋଇଥାରେ ବେଶ କୁଞ୍ଜକୁ ଯିବୁପରା
ଦେଇଛନ୍ତି ସଙ୍କେତ ସେ ମୁରଲୀ ଧରା ।"

ଓଡ଼ିଶାର କୁଜଙ୍ଗରୁ କଳାହାଣ୍ଡି; କୋରାପୁଟରୁ କେନ୍ଦୁଝର ସର୍ବତ୍ର ଶୁଣିବାକୁ ମିଳିଥାଏ । ଅନ୍ଧ ଆପନ୍ନାଙ୍କର କଣ୍ଠରେ ଗୌରହରିଙ୍କର ଏହି ସଙ୍ଗୀତ ଶ୍ରବଣ କରି କବିଙ୍କର ସଙ୍ଗୀତ ଓ ଗାୟକଙ୍କର ପ୍ରତିଭାରେ ମୁଗ୍ଧ ହୋଇ କବି ବୈକୁଣ୍ଠନାଥ ତାଙ୍କର "ବନ୍ଦୀ ଅପନ୍ନା" କବିତାରେ ଲେଖିଛନ୍ତି:-

ଦରିଦ୍ର ଦେଶରେ ଶିଳ୍ପୀ ଦୃଷ୍ଟିଅନ୍ତରାଳେ
ଜନମି ମୁଦିଲ ଆଖି, ଲେଖାଥିଲା ଭାଲେ,
ଲେଖିଲା ବା ନାହିଁ ଅମର ଅକ୍ଷରେ,

ତୁମ କୀର୍ତ୍ତି ଗାଥା, କହି ନ ପୁଚ୍ଛିବେ ଥରେ ।
ନ କରିବେ ଭ୍ରମ ଯାତ୍ରୀ ଅଙ୍ଗୁଳୀ ନିର୍ଦ୍ଦେଶ
ତୁମରି ସମାଧି ଚାହିଁ ଭସ୍ମ ଅବଶେଷ'

( କାବ୍ୟ ସଞ୍ଚୟନ ପୃ ୨୪୬)

ଯଥାର୍ଥରେ ଏହା ଗୀତକାର ଓ ଗାୟକ ଉଭୟଙ୍କ ପ୍ରତି ସମମାତ୍ରାରେ ପ୍ରଯୁଜ୍ୟ । ପାରଳାଖେମୁଣ୍ଡିରେ ଗୌରହରି ପାଠାଗାର ବ୍ୟତୀତ କବିଙ୍କର ସ୍ମୃତି ଜାଗରୂକ ନିମିତ୍ତ ଏ ପର୍ଯ୍ୟନ୍ତ କୌଣସି ଅନୁଷ୍ଠାନ ଗଠିତ ହୋଇନାହିଁ । ଯାହା ହେଉ, ସେଠାରେ ପ୍ରତିବର୍ଷ ତାଙ୍କର ଜୟନ୍ତୀ ଓ ଶ୍ରାଦ୍ଧ ଯଥା ସମାରୋହରେ ପାଳିତ ହୋଇ ଆସୁଅଛି ।



# ସଙ୍ଗୀତ ଶିରୋମଣି ହରିବନ୍ଧୁ

କବି-କଳହଂସ ଗୋପାଳକୃଷ୍ଣଙ୍କର ଜନ୍ମର ପ୍ରାୟ ଚାଳିଶ ବର୍ଷ ଉତ୍ତାରେ ପାରଳାଖେମୁଣ୍ଡିରେ ହରିବନ୍ଧୁ ବେବର୍ତ୍ତାଙ୍କର ଜନ୍ମହୁଏ । ଗୋପାଳକୃଷ୍ଣଙ୍କ ତିରୋଧାନ ସମୟରେ ହରିବନ୍ଧୁ ଛତିଶ ବର୍ଷ ବୟସର ଯୁବକ । ଗୋପାଳକୃଷ୍ଣଙ୍କର ପ୍ରେମଭକ୍ତି ଓ ସାହିତ୍ୟ ରଚନା ଶୈଳୀ ହରିବନ୍ଧୁଙ୍କୁ ପ୍ରଭାବିତ କରିବା ସ୍ୱାଭାବିକ । ମାତ୍ର ଗୋପାଳକୃଷ୍ଣ ସମଗ୍ର ପ୍ରାକୃତିକ ଉତ୍କଳରେ ସୁପରିଚିତ ହେଲେ ମଧ୍ୟ ନିଜର ସାରସ୍ୱତ ସାଧନା ଓ ବୈଷ୍ଣବ ପ୍ରେମ ଚିନ୍ତାଧାରା ସତ୍ତ୍ୱେ ହରିବନ୍ଧୁ ଅପେକ୍ଷାକୃତ ଅଜ୍ଞାତ ।

୧୮୯୨ ମସିହାରେ ପ୍ରକାଶିତ ଚିଲିକା କାବ୍ୟରେ କବିବର ରାଧାନାଥ ଲେଖିଥିଲେ ।

ଦେବି ବୀଣାପାଣି ! କେଉଁ ପାପଫଳେ
କରୁଣା ତୋହର ଊଣା ଏ ଉତ୍କଳେ

ତୋର କୃପାବଳେ କ୍ଷୁଦ୍ର ମହୀୟାନ
ତୋ କୃପା ବିହୁନେ ବଡ଼ ହୁଏ ସାନ ।

....

ତୋ କୃପା ବିହୁନେ ଉତ୍କଳ ମାତାର
ନାମେ ଖ୍ୟାତିଗ୍ରନ୍ଥେ ପଡ଼ିନାହିଁ ଗାର ।
ଭାଗ୍ୟଦୋଷ ଅଙ୍ଗ ଅଜ୍ଞାନ-ଶର୍ବରୀ
ଅନ୍ଧାରେ ଅଭାଗୀ ରଖିଛି ଆବରି ।
ପାହିଲାଣି ଘୋର ତାମସୀ ଯାମିନୀ
ଫୁଟିବ ଉତ୍କଳ ଭାଷା କମଳିନୀ ।

ହରିବନ୍ଧୁଙ୍କ ଭାଗ୍ୟରେ ବୀଣାପାଣିଙ୍କର କରୁଣା ଥିଲେ ମଧ୍ୟ ପୃଷ୍ଠପୋଷକତାର ଅଭାବ ଥିଲା । ଏହି ରଚନାର ଠିକ୍ ତିରିଶ ବର୍ଷ ଆଗରୁ ଗୋପାଳକୃଷ୍ଣଙ୍କର ତିରୋଧାନ । ଛଅଷଠି ବର୍ଷ ଆଗରୁ ହରିବନ୍ଧୁଙ୍କ ଜନ୍ମ । ଆଗରୁ ହୁଏତ ଘୋର ତାମସୀ ରଜନୀ ପାହିଥିଲେ ହରିବନ୍ଧୁଙ୍କର ସମଗ୍ର ରଚନାବଳୀ ବିଦଗ୍ଧ ପାଠକମାନଙ୍କର ଦୃଷ୍ଟି ଆକର୍ଷଣ କରି ପାରିଥାନ୍ତେ

ମାତ୍ର ତଦାନୀନ୍ତନ ରାଜକୀୟ ବ୍ୟବସ୍ଥା, ଓଡ଼ିଆ ଭାଷାପ୍ରତି ମାନ୍ଦ୍ରାଜ ସରକାରଙ୍କର ପୃଷ୍ଟପୋଷକତାର ଅଭାବ ହରିବନ୍ଧୁଙ୍କର ପ୍ରତିଭା ବିକିରଣ ଦିଗରେ ଅନ୍ତରାୟ ଥିଲା, ଏହା ସହଜରେ ଅନୁମେୟ । କବିଙ୍କର ଆଦ୍ୟ ଜୀବନୀ ଲେଖକ ଲେଖିଛନ୍ତି ହରିବନ୍ଧୁଙ୍କ କବିତା ଯେପରି ସରଳ ରସମୟ ପ୍ରୀତ୍ୟୁଦ୍ରେକର ଥିଲା, କବିଙ୍କ ଜୀବନରଚିତ ସେହିପରି ଆଡମ୍ବରରହିତ ଓ ଆନନ୍ଦମୟ ଥିଲା । ଅବଶ୍ୟ ଗୋପାଳକୃଷ୍ଣଙ୍କର ଭାଷା ଲାଳିତ୍ୟ ତାଙ୍କର ନଥିଲା ।

ଜାତୀୟ ସଙ୍ଗୀତ 'ବନ୍ଦେମାତରଂ'ର ଲେଖକ ଔପନ୍ୟାସିକ, ପ୍ରାବନ୍ଧିକ, ଚିନ୍ତାନାୟକ, ଋଷି ବଙ୍କିମଚନ୍ଦ୍ର ଭାରତବର୍ଷରେ ସୁବିଦିତ । ତାଙ୍କର ବଡ଼ ଭାଇ ସଞ୍ଜୀବଚନ୍ଦ୍ର । ୧୮୭୩ ମସିହାରେ ବଙ୍କିମଚନ୍ଦ୍ରଙ୍କର ଚାରିଗୋଟି ଉପନ୍ୟାସ 'ଇନ୍ଦିରା' 'ଯୁଗଳାଙ୍ଗୁରୀୟ' 'ଚନ୍ଦ୍ରଶେଖର' ଓ 'ରଜନୀ' ପ୍ରକାଶିତ ହୁଏ । ଏହି ସମୟରେ ଅଗ୍ରଜ ସଞ୍ଜୀବଙ୍କର ମଧ୍ୟ ତିନୋଟି ଉପନ୍ୟାସ ପ୍ରକାଶ ପାଏ 'ରାମେଶ୍ୱର ଅଦୃଷ୍ଟ' 'କଣ୍ଠମାଳା' 'ଦାମିନୀ' । ସେମିତି ୧୮୮୨ ମସିହାରେ, ବଙ୍କିମଚନ୍ଦ୍ରଙ୍କର 'ଆନନ୍ଦମଠ' ଓ ସଞ୍ଜୀବଚନ୍ଦ୍ରଙ୍କ 'ମାଧବୀଲତା' ପ୍ରକାଶ ପାଏ, ୧୮୮୩ ମସିହାରେ ଜଣଙ୍କର 'ଦେବୀ ଚଉଧୁରାଣୀ' ଆଉ ଜଣଙ୍କର 'ଜାଲ ପ୍ରତାପ ଚନ୍ଦ୍ର' ପ୍ରକାଶିତ ହୁଏ । ଆଜିର ବଙ୍ଗୀୟ ସାହିତ୍ୟରେ ସଞ୍ଜୀବଚନ୍ଦ୍ରଙ୍କର ଉପନ୍ୟାସମାନ ଅପରିଚିତ । ଶହେ ବର୍ଷ ପରେ ସେ ବିସ୍ମୃତ ପ୍ରାୟ, ମାତ୍ର ଆଉ ଜଣଙ୍କର ମାନ୍ୟତା କ୍ରମଶଃ ବୃଦ୍ଧିପାଇବାରେ ଲାଗିଛି । ଏହାର କାରଣ କଣ ? କବିଗୁରୁ ରବୀନ୍ଦ୍ରନାଥ କହିଥିଲେ ସଞ୍ଜୀବଚନ୍ଦ୍ରଙ୍କର ପ୍ରତିଭାର ଐଶ୍ୱର୍ଯ୍ୟ ଥିଲେ, ମାତ୍ର ତାଙ୍କର ଘର କରଣା ବୁଦ୍ଧି ନ ଥିଲା । ତାଙ୍କଠାରୁ ଅଳ୍ପ କ୍ଷମତା ଧରି ଅନେକ ଯେ ପରିମାଣରେ ସାହିତ୍ୟର ଅଭାବ ମୋଚନ କରି ପାରିଛନ୍ତି ପ୍ରଚୁର କ୍ଷମତା ସତ୍ତ୍ୱେ ସଞ୍ଜୀବଚନ୍ଦ୍ର ତାହା କରିପାରି ନାହାନ୍ତି, ତାହାର କାରଣ ସଞ୍ଜୀବଙ୍କର ପ୍ରତିଭା ଧନୀ ମାତ୍ର ଗୃହିଣୀ ନୁହେଁ ।" ରବିବାସରୀୟ ଆନନ୍ଦବଜାର ପତ୍ରିକା ୨୨ ଜୁଲାଇ ୧୯୯୦ ଗୋପାଳକୃଷ୍ଣ ଓ ହରିବନ୍ଧୁଙ୍କର ଲୋକପ୍ରିୟତା ତୁଳନା କଲେ ସ୍ୱତଃ ଏହି ସାମଞ୍ଜସ୍ୟ ମନକୁ ଆସିଥାଏ ।

ପାରଳାଖେମୁଣ୍ଡି ସହରରେ କରଣ ସାହିରେ ୧୮୨୬ ମସିହା ଫେବୃଆରି ମାସ ତିନି ତାରିଖରେ ହରିବନ୍ଧୁ ବେବର୍ତ୍ତା ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ କୂର୍ମନାଥ । ମାତାଙ୍କ ନାମ ସୁବର୍ଣ୍ଣଦେବୀ । ଚାରିଭାଇଙ୍କ ମଧ୍ୟରେ ହରିବନ୍ଧୁ କନିଷ୍ଠ ଥିଲେ । କବିଙ୍କ ପୂର୍ବପୁରୁଷ ମଧ୍ୟରୁ ଜଣେ ଉତ୍କଳ ସମ୍ରାଟ ପୁରୁଷୋତ୍ତମ ଦେବଙ୍କ ଅମଳରେ

ଗଜପତି ମହାରାଜାଙ୍କ ଗହଣରେ ଦକ୍ଷିଣ ଦେଶକୁ ଆସି ପାରଳାଖେମୁଣ୍ଡିରେ ବସତି ସ୍ଥାପନ କରିଥିଲେ । କବିଙ୍କର ପିତାମହ ମଧ୍ୟ ହରିବନ୍ଧୁ । ସେ ନିଜେ ପାଣ୍ଡିତ୍ୟ ଦ୍ୱାରା ଗଜପତି ଜଗନ୍ନାଥ ଦେବଙ୍କ ଦ୍ୱାରା ସମ୍ମାନିତ ହୋଇ ବେବର୍ତ୍ତା ଉପାଧି ପାଇଥିଲେ ଓ ନିଜର କୌଳିକ ପଟ୍ଟନାୟକ ଉପାଧି ପରିତ୍ୟାଗ କରିଥିଲେ । ଅନକଣ୍ଡା ଗ୍ରାମ ସେ ରାଜାଙ୍କଠାରୁ ଜାଗିରି ଭାବରେ ପାଇଥିଲେ । ତାଙ୍କର ପୁତ୍ର କୂର୍ମନାଥ ବୈଦ୍ୟବୃତ୍ତି ଅବଲମ୍ବନ କରି ଜୀବିକା ନିର୍ବାହ କରୁଥିଲେ । କୁଶଳୀ ବୈଦ୍ୟ ଭାବରେ ତାଙ୍କର ସୁନାମ ଥିଲେ ମଧ୍ୟ ବ୍ୟାବହାରିକ ଜ୍ଞାନର ଅଭାବରୁ ସେ ରାଜଦତ୍ତ ଜାଗିରିର ପରିଚାଳନା ଦିଗରେ ଧ୍ୟାନ ଦେଇ ନଥିଲେ । ଫଳରେ କାଳକ୍ରମେ ସେ ନିଜ ଭୂସଂପତ୍ତିରୁ ଉଚ୍ଛେଦିତ ହେଲେ । ହରିବନ୍ଧୁ ବଲ୍ୟକାଳରେ ପିତୃମାତୃ ଶୂନ୍ୟ ହୋଇ ନିଜରଜ୍ୟେଷ୍ଠ ବିଧବା ଭଗିନୀଙ୍କ ଦ୍ୱାରା ଲାଳିତ ପାଳିତ ହୋଇଥିଲେ । ଭଉଣୀ ରାଧିକାଙ୍କର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନ ଥିଲେ ମଧ୍ୟ ସେ ହରିବନ୍ଧୁଙ୍କର- ଶିକ୍ଷାର ସମୁଚିତ ବ୍ୟବସ୍ଥା କରିଥିଲେ । ବାଲ୍ୟାବସ୍ଥାରୁ ପରିବାରର ଗଣକ ଜ୍ୟୋତିଷ ହରିବନ୍ଧୁଙ୍କର ବିଦ୍ୟା ପାରଙ୍ଗମତାର ଭବିଷ୍ୟତ ବାଣୀ କରିଥିଲେ । ଚାଟଶାଳୀରେ ବିଦ୍ୟା ଅଧ୍ୟୟନ ସମୟରେ ସଙ୍ଗୀତ ଓ ସାହିତ୍ୟ ଉଭୟ ପ୍ରତି ହରିବନ୍ଧୁ ଆକୃଷ୍ଟ ହୋଇଥିଲେ । ଅଧ୍ୟୟନ ପ୍ରିୟ ଓ ପ୍ରତ୍ୟୁତ୍ପନ୍ନମତି ଭାବରେ ତାଙ୍କର ଛାତ୍ର ସମାଜରେ ସୁନାମ ଥିଲା । ସେ ସମୟରେ ଲେଖିଥିବା କାଗଜ ବିରଳ, ପୁଣି ଦୁର୍ମୂଲ୍ୟ । ତେଣୁ ସେଇ କାଗଜ ଉପରେ ଲେଖା ଅଭ୍ୟାସ କରିବାକୁ ପଡୁଥିବା ସମୟରେ ହରିବନ୍ଧୁ ସୁନ୍ଦର ସୁନ୍ଦର ଅକ୍ଷର ଲେଖିପାରି ହଂସଲିପି, ରାଜଲିପି, ସିଂହଲିପି ଆଦି ବିଭିନ୍ନ ଲିପି ଲେଖିପାରୁଥିଲେ । ତାଳ ପତ୍ରରେ ଲେଖିବା ସମୟରେ ମଧ୍ୟ ସେ ଏପରି ଦକ୍ଷତା ଅର୍ଜନ କରିଥିଲେ ଯେ ବିନା ବାମ ବୃଦ୍ଧାଙ୍ଗୁଷ୍ଠି ସାହାଯ୍ୟରେ ଚ଼ାଲିବୁଲିବା ବେଳେ ତାଳପତ୍ରରେ ସୁନ୍ଦର ଅକ୍ଷର ଲେଖିପାରୁଥିଲେ । ସାହିତ୍ୟ ବ୍ୟତୀତ ଗଣିତ ବିଦ୍ୟାରେ ମଧ୍ୟ ତାଙ୍କର ପାରଦର୍ଶିତା ଥିଲା । ଜ୍ୟୋତିଷ ଶିକ୍ଷା କରି ଜ୍ୟୋତିଷ ଶାସ୍ତ୍ରରେ ସରଳ ଓଡ଼ିଆଭାଷାରେ ସେ 'ଜ୍ୟୋତିଷ ଶାସ୍ତ୍ର ସଂଗ୍ରହ'ନାମକ ଗ୍ରନ୍ଥ ପ୍ରଣୟନ କରିଥିଲେ । ଦୁଃଖର ବିଷୟ ୧୯୧୧ ମସିହାରେ ତାଙ୍କର ମୃତ୍ୟୁର ପନ୍ଦର ବର୍ଷପରେ ଅଗ୍ନିକାଣ୍ଡ ଫଳରେ ଅନ୍ୟାନ୍ୟ କେତେକ ଅପ୍ରକାଶିତ ଲେଖାସହିତ ଏହା ଅଗ୍ନିସାତ ହୋଇ ଯାଇଥିଲା । ମାତୃଭାଷା ଓଡ଼ିଆ ବ୍ୟତୀତ ସଂସ୍କୃତ ଓ ତେଲୁଗୁ ଭାଷାରେ ମଧ୍ୟ ସେ ପାରଦର୍ଶିତା ହାସଲ କରିଥିଲେ ସଙ୍ଗୀତ ତାଙ୍କର ପ୍ରିୟଥିବାରୁ ସେ ମଠ ମନ୍ଦିରମାନଙ୍କରେ ହରି ସଂକୀର୍ତ୍ତନ କରୁଥିଲେ । ସମାନ ରାଗ ତାଳ ସମନ୍ୱିତ ତାଙ୍କର ଗାନ ସବୁରି କର୍ଣ୍ଣସୁଖକର ଥିଲା । ଅବସର

ସମୟରେ କବି ଶିକ୍ଷା କାଳରେ ଜ୍ୟୋତିଷୀ, ପଣ୍ଡିତ ଓ ସଙ୍ଗୀତଜ୍ଞମାନଙ୍କ ଗହଣରେ ନିଜର ସମୟ ଅତିବାହିତ କରି ଜ୍ଞାନ ସଂଗ୍ରହ କରୁଥିଲେ । ବିଦ୍ୟାଲିପ୍ସୁ ଓ ସତ୍‌ସଙ୍ଗପ୍ରିୟ ଥାଇ କବି ନିଜର ବାଲ୍ୟ ଓ ଯୌବନ ଅତିବାହିତ କଲେ ।

ତାଙ୍କର ବାଲ୍ୟକାଳରେ ପାରଳାଖେମୁଣ୍ଡି ରାଜ୍ୟରେ ବିଦ୍ରୋହ ଦେଖା ଦେଇଥିଲା । ଏହାର ନିରାକରଣ ନିମିତ୍ତ ୧୮୩୨ ମସିହାରେ ଜର୍ଜ ରସେଲଙ୍କୁ ସ୍ପେଶାଲ କମିସନର ନିଯୁକ୍ତ କରାଯାଇଥିଲା ଓ ସେ ଏହି ବିଦ୍ରୋହର କାରଣ ଓ ଭବିଷ୍ୟତରେ କିପରି ନିବାରଣ କରାଯାଇ ପାରିବ ସେ ବିଷୟରେ ଇଂଗ୍ରେଜ ସରକାରଙ୍କୁ ନିଜର ରିପୋର୍ଟ ପ୍ରଦାନ କରିଥିଲେ । ସେତେବେଳେ ପାରଳାଖେମୁଣ୍ଡିରେ ଇଂଗ୍ରେଜ ଶିକ୍ଷାର ବ୍ୟବସ୍ଥା ନ ଥିଲା । ତେଣୁ ହରିବନ୍ଧୁ ଇଂଗ୍ରେଜି ଶିକ୍ଷାରୁ ବଞ୍ଚିତ ହୋଇଥିଲେ । ପାରଳାର ସମସାମୟିକ କବି ପଣ୍ଡିତ ଗୋପାଳକୃଷ୍ଣ, ଗୌରହରି ପରିଚ୍ଛା, ରଘୁନାଥ ପରିଚ୍ଛା, ଗାୟକରତ୍ନ ନରସିଂହ ପଟ୍ଟନାୟକ, ଶ୍ରୀ କରଣ ଗୌରାଙ୍ଗ ପଟ୍ଟନାୟକ ପ୍ରମୁଖ ପ୍ରଧାନ କବିମାନଙ୍କ ସଂସ୍ପର୍ଶରେ ଆସି ସେ କ୍ଷୁଦ୍ର କବିତାମାନ ରଚନା କରୁଥିଲେ । ଗୋପାଳକୃଷ୍ଣ ମଧ୍ୟ ରଚନା କରି ସେ ସବୁ ହରିବନ୍ଧୁଙ୍କୁ ଅର୍ପଣ କରୁଥିଲେ । କେହି ତାଙ୍କୁ ଗୀତ ମାଗିଲେ ଗୋପାଳକୃଷ୍ଣ ତାହା ତାଙ୍କର ସଙ୍ଗୀତପୁତ୍ର ସମୁଦ୍ର ପେଟୀ ହରିବନ୍ଧୁଙ୍କୁ ମାଗିବାକୁ ନିର୍ଦ୍ଦେଶ ଦେଉଥିଲେ ।

ସଙ୍ଗୀତ ରଚନା ସହିତ ହରିବନ୍ଧୁ କୁଶଳୀ ଗାୟକ ଓ ଦକ୍ଷ ବେହେଲା ବାଦକ ମଧ୍ୟ ଥିଲେ । ତାଙ୍କର ରାଗ ତାଳଜ୍ଞାନ ଅସାଧାରଣ ଥିଲା । ସଙ୍ଗୀତକାର ଗୌରହରି ଏ ଦିଗରେ ତାଙ୍କର ଆଦ୍ୟ ଗୁରୁ ଥିଲେ । ସଙ୍ଗୀତ ସ୍ୱର ତାଳ ଓ ବାଦ୍ୟବାଦନ ସେ ତାଙ୍କଠାରୁ ଶିକ୍ଷା ଲାଭ କରିଥିଲେ । ତଦୁତ୍ତାରେ ପାରଳାଖେମୁଣ୍ଡିରେ ଅବସ୍ଥାନ କରୁଥିବା ଦାକ୍ଷିଣାତ୍ୟର ଧାରବାଡ ମାଧବରାଓ ନାମକ ଜଣେ କର୍ଣ୍ଣାଟକୀ ସଙ୍ଗୀତକାରଙ୍କଠାରୁ ସେ ବାଦ୍ୟଯନ୍ତ୍ର ଓ ଗାନ ଶିକ୍ଷାକରି ପାରଦର୍ଶିତା ଲାଭ କରିଥିଲେ । ସେ ଏକକାଳୀନ ପଞ୍ଚତନ୍ତ୍ର ଓ ସପ୍ତଯନ୍ତ୍ର ବାଦନ କରିପାରିବାର ଗୌରବ ଅର୍ଜନ କରି ପାରିଥିଲେ । ବିଦେଶୀ ସଙ୍ଗୀତଜ୍ଞ ଓ ସଙ୍ଗୀତକାରମାନେ ମଧ୍ୟ ତାଙ୍କର ପ୍ରତିଭାର ପ୍ରଶଂସା କରୁଥିଲେ । ପାରଳାଖେମୁଣ୍ଡି ନିକଟ ମେଳିଆପୁଟି ଗ୍ରାମରେ ଶ୍ରୀରାଧାଗୋବିନ୍ଦ ମହାପ୍ରଭୁଙ୍କର ମନ୍ଦିର ପ୍ରତିଷ୍ଠା ଅବସରରେ ନାନାସ୍ଥାନରୁ ସଙ୍ଗୀତଜ୍ଞ ଓ ପଣ୍ଡିତମାନେ ଆମନ୍ତ୍ରିତ ହୋଇ ଆସିଥିଲେ । ମଞ୍ଜୁଷା ଗଡ଼ରୁ ଡଙ୍କା ଆପତୁ ନାମକ ଜଣେ ସଙ୍ଗୀତକାର ନିଜର କନ୍ୟା ସହିତ ସେହି ଉତ୍ସବକୁ ଆସି ନୃତ୍ୟ ଅଭିନୟର ଚାତୁର୍ଯ୍ୟ ପ୍ରଦର୍ଶାଇଥିଲେ । ରାଜାଙ୍କର ଆଦେଶକ୍ରମେ ହରିବନ୍ଧୁ ତାଙ୍କର

ସ୍ୱର କଳ୍ପନାଦିରେ କେତେକ ତ୍ରୁଟି ଦର୍ଶାଇଥିଲେ । ପ୍ରବଳ ଯୁକ୍ତି ପ୍ରତିଯୁକ୍ତି ପରେ ଆପଣ ନିଜ ଭ୍ରମ ସ୍ୱୀକାରକଲେ ଓ କବିଙ୍କ ରଚିତ 'ମାରୁଆବର୍ଣ୍ଣ' ଶିକ୍ଷା କରିଥିଲେ । ଆଶୁ କବି ହରିବନ୍ଧୁ ସେହି ଅବସରରେ ନିମ୍ନୋକ୍ତ "ଘେନାଇ କହିଲେ ଘେନିବି କି ମୁଁ ଚିତ୍ତେ, ଗୀତଟି ରଚନା କରି ସ୍ୱର ସଙ୍ଗୀତ ଓ ଅଭିନୟ ସହିତ ସଙ୍ଗୀତଜ୍ଞଙ୍କ ବିଦୁଷୀ କନ୍ୟାକୁ ଶିଖାଇ ଦେଇଥିଲେ । "

"ଘେନାଇ କହିଲେ ଘେନିବି ମୁଁ ଚିତ୍ତେ ।
ନିତି ଏହିପରି ହେଲେ ସହିବି ସେ ଦାଉ କେତେ । ପଦ
ଆଗରୁ ଅଣାଇ ମୋତେ । ଜଗାଇ କୁଞ୍ଜ ନିଶାନ୍ତେ
ଭଗାରି ହସାଇ ସେହି । ଦଗା କରିଅଛି ଯେତେ ।୧।
ଲେଖ ତା ଦେଖି ନିରତେ । ଦେଖ, କରିବାକୁ ପ୍ରତେ
ସୁଖକୁ ଲଭିବ ଥାଉ । ଦୁଃଖେ ସରିଲି ସଂତତେ ।୨।
କେଉଁ କାମିନୀ ସଙ୍ଗତେ । ନେଉ ଯାମିନୀ କି ରତେ
ଥାଉ କହିବାର ଆଜି । ଶ୍ରୀମୁଖ ଦେଖାଇ ପ୍ରାତେ । ୩ ।
ପଦ୍ମନାଭ ଦେବ ଗୀତେ । ଭାଷନ୍ତି ରାଧେ ସୁଚିତ୍ତେ
ଆସିଛନ୍ତି ଚାହାଁ ଶ୍ୟାମେ । କୃପା କଟାକ୍ଷେ କିଞ୍ଚିତେ । ୪ ।

ଆଉଥରେ ଦାକ୍ଷିଣାତ୍ୟରୁ ଜଣେ ପ୍ରବୀଣ ବୀଣାକାର ଆସ ନୃସିଂହନାଥ ମନ୍ଦିରରେ ବୀଣାଯନ୍ତ୍ରରେ ସଙ୍ଗୀତ ପ୍ରବୀଣତା ଦେଖାଉଥିଲେ । ସେ ରାଗ, ରାଗିଣୀ, ସ୍ୱର, କଳ୍ପନା ମଧ୍ୟରେ ବୁଦ୍ଧି ପୂର୍ବକ ଫରକ ରଖି ଶ୍ରୋତାମାନଙ୍କୁ ଭୁଲାଇବାରେ ପ୍ରବୃତ୍ତ ଥିଲେ । ଇତିମଧ୍ୟରେ ତତ୍‌କାଳୀନ ମନ୍ଦିରାଧିପତି ଶ୍ରୀ ବୃନ୍ଦାବନ ଦାସ ବାବାଜୀ ସଂଗୀତଜ୍ଞ ବେବର୍ତ୍ତାଙ୍କର ଦୃଷ୍ଟି ଏଥିପ୍ରତି ଆକର୍ଷଣ କଲେ । କବି ବୀଣାକାରଙ୍କ ଭ୍ରମ ଦର୍ଶାଇବା ଫଳରେ ସେ କବିଙ୍କ ଠାରେ ଗୁରୁଭାବ ପ୍ରଦର୍ଶନ କରି ଏହା ଗ୍ରହଣ କରିଥିଲେ ।

କ୍ରମେ କବିଙ୍କର ସାହିତ୍ୟ ଓ ସଙ୍ଗୀତ ଜଗତରେ ପ୍ରତିଷ୍ଠା ରାଜ ପୃଷ୍ଠ ପୋଷକତା ଲାଭ କରେ । ଶ୍ରୀ ପ୍ରତାପରୁଦ୍ର ଗଜପତି ତାଙ୍କର ସୁମଧୁର ଗାନ ଓ ବିଭିନ୍ନତାଳ ସମାବିଷ୍ଟ ଯନ୍ତ୍ର ବାଦନରେ ସାତିଶୟ ସନ୍ତୁଷ୍ଟହୋଇ ତାଙ୍କୁ ରାଜଦରବାରରେ ସମ୍ମାନିତ କଲେ । କବି ପାରିତୋଷିକ ସହିତ ରାଜ ଦରବାରୁ ରାଜ ସମ୍ମାନ ସୂଚକ ଶାଢୀ ମଧ୍ୟ ପାଇବାକୁ ଯୋଗ୍ୟ ହେଲେ । ସେ କାଳର ନିୟମ ଅନୁସାରେ କବିତା ରାଜପୁରୁଷମାନଙ୍କ ନାମରେ ଭଣିତା ହେଉଥିଲା । ଶ୍ରୀ ପ୍ରତାପରୁଦ୍ର ଗଜପତି ଦିନେ 'ଏହି କଥାଟି ଅସାର'

ଓ ବଞ୍ଚାଇ ନ କହ ହେ କିଛି' ଏହି ଘୋଷାପଦ ଦୁଇଟି କବିତା ରଚନା ନିମିତ୍ତ କବିଙ୍କୁ ବରାଦ ଦେଲେ । ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ କବି ରଚନା କରି ରାଜାଙ୍କୁ ଭେଟି ଦେଲେ ଦୁଇ କବିତା :-

"ଏହି କଥା ଅସାର । ହରଷ ବେଳେ ତୋହର
ତୁଷାର ମୟୂଖ ମୁଖି । ପ୍ରାଣେଶଙ୍କ ଅଙ୍କେ ବସି
ରୁଷିବାର ଏହି । ପଦ ।
ଚତୁର ସୁନ୍ଦର ମୋହନ । ହେଲା ଉତ୍ତାରୁ ତୋ ସ୍ୱାଧୀନ
ଘର ପରାୟରେ ରହିଯାଇ ନୀର । ନୟନୁଁ ବୁହାଇବାର ଏହି ।୧।
ନ ଦେଖିଣ ଲଭିଣ ଦୁଃଖ । ଲୋଡୁଥାଉ ତା ସଙ୍ଗ ସୁଖ
ପାଶକୁ ଆସିଲେ ମୁଖକୁ ନଚାହିଁ । ନଖେ କ୍ଷିତି ଖୋଳିବାର ।୨।
ଆରେ ପ୍ରୀତି କଳ୍ପଲତା । ତନ୍ୱାଙ୍ଗି ଚାତୁରୀ ପଣ୍ଡିତା
ଦୋଷଥିଲେ ରୋଷ ବହିବାର ବିଧି । ନିର୍ଦ୍ଦୋଷରେ ଦଣ୍ଡିବାର ।୩।
ତୋର ଅଭିପ୍ରାୟେ କଞ୍ଚନା । କରି ସୁବେଶକୁ ରଚନା
ମିଳାଇବା ବେଳେ ଅଙ୍ଗିଅଙ୍ଗ । ଲୁଚାଇ ଲୁଚିଯିବାର ।୪।
ଶ୍ରୀବୀର ପ୍ରତାପ ନରେଶ । ଭାସେ ଆଳୀଭାବରେ ବଶ
ହୋଇ ଶ୍ରୀ କିଶୋରୀ ଲାଜ ହରଷେ । ବଦନେ ବାସ ଦେବାର ।୫।
ବଞ୍ଚାଇ ନ କହ ହେ କିଛି । ତୁମ୍ଭ ତନୁତ ସାକ୍ଷୀ ହୋଇଅଛି
ଅଧରେ ଅଞ୍ଜନ । ଯେ କଲା ରଞ୍ଜନ
କଞ୍ଜ ସୁଲେପନେ ଚୁମ୍ବ ବିହି ଅଛି ।୧।
ନୀଳେନ୍ଦୀବର ବରନକୁ । ନୀଳଶାଢ଼ୀ ଲାଗି ମୋହେ ମନକୁ
ଲୀଳାରେ ଯେ ଆଜି । ଭୋଳ କରି କେଳି
କଳରେ ତୁମ୍ଭ ଚିତ୍ତ ବିତ୍ତ ହରିଛି ।୨।
ସେ ସୁରସବତୀ ସଦନ । ଚଳ ଏ ବିରସେ କିସୁଖମାନ
ସ୍ମର ଜିତକରି । କରଜ ଘାତେ ଯେ
ତରଜି କାଲି ରାତିରେ ଲେଖିଅଛି ।୩।
ଶ୍ରୀ ପ୍ରତାପେଶ୍ୱର ରାଜନ । ଦେବ ଭାଷେ ଯେ ଯାହାର ଜୀବନ
ତାହାଠାରେ ମାନଯୁକ୍ତ କିରେ ସୁମନା ।

ଅନ୍ୟ ଏକ ସମୟରେ ପଦ୍ମନାଭ ଗଜପତିଙ୍କ ଆଦେଶ କ୍ରମେ ଶ୍ୟାମ ସୁନ୍ଦର ରାଜଗୁରୁ ପ୍ରସ୍ତାବ କଲେ ଆଦ୍ୟମଧ୍ୟ ପ୍ରାନ୍ତ 'ପା' ଅନୁପ୍ରାସ ରଖି କ୍ଷପାକର ମୁଖୀ କିଂପା ବସିଛୁ ତ୍ରପାରେ' କବିତା ରଚନା ଲାଗି । କବି ହରିବନ୍ଧୁ ରଚନା କଲେ :-

"କ୍ଷପାକର ମୁଖୀ କିଂପା ବସିଛୁ ତପାରେ
ଏ ପାପ ମଦନ ତାପ ନାଶି କୀର୍ତ୍ତି ପାରେ । ପଦ
କୃପାଲୋକ ନେତ୍ର ମୋର । କପାଳି ସେବାରେ ବର
ଚମ୍ପାଗୋରୀ ଅନୁକଂପାକର ତୋ କୃପାରେ ।୧।
ଉପାଧି ବଚନ ଯାକ । ଦଫା ଶୁଣି ଏଡ଼େ ଟେକ ।
ଉପାଡ଼ି ନ ଦିଅ ପାପ ହେବଟି ମୋ ପାରେ ।୨।
ନ ପାସୋରି ସୁମାନସ । ହୋପାକରି ନାଗରୀଶ
ନ ଫା ହେବ ବୋଲି ଝୁମ୍ପ କରିଛି ତୋ ପାରେ ।୩।
ତୋ ପାବନ ଦେହଛୁଇଁ । ଅପାବନ ହେବି କାହିଁ
କେ ପାଳିବ ତୁ ପାଳିବା ପ୍ରୀତିକି ହେବି କାହିଁ
କେ ପାଳିବ ତୁ ପାଳିବା ପ୍ରୀତିକି ଏ ପାରେ ।୪।
ଶ୍ରୀ ପାରଳା ପୁରୀବର । ଭୂପାଳ ଗୌରଚନ୍ଦର
ଗୋପାଳ କୃଷ୍ଣଙ୍କୁ ଚିନ୍ତିଲେ କହିଲେ ଅପାରେ ।୫।

ବୋଲିବା ବାହୁଲ୍ୟ ପ୍ରଶଂସିତ କବିତା ନିମିତ୍ତ ରାଜଭ୍ରାତା ତାଙ୍କୁ ଉପଯୁକ୍ତ ପୁରସ୍କାର ପ୍ରଦାନ କଲେ ।

ଓଡ଼ିଆ ତେଲୁଗୁ ସଂସ୍କୃତ ବ୍ୟତୀତ କବି ପରିଣତ ବୟସରେ ବୈଷ୍ଣବ ସାହିତ୍ୟ ଅଧ୍ୟୟନ ନିମିତ୍ତ ବଙ୍ଗଳା ଭାଷା ଶିକ୍ଷାକରି ସେଥିରେ ମଧ୍ୟ ବ୍ୟୁତ୍ପତ୍ତି ଲାଭ କରିଥିଲେ । "ଲକ୍ଷ୍ମୀଙ୍କ ସପତ୍ନୀ ହେବାରୁ ବରଦା ଦାରିଦ୍ର୍ୟ ତୁମ୍ଭଙ୍କୁ ସାଥି ହେଲାସଦା" । କବିଙ୍କ ଆର୍ଥିକ ଅସ୍ୱଚ୍ଛଳତା ରାଜ ପୃଷ୍ଠ ପୋଷକତାରେ ସଂପୂର୍ଣ୍ଣ ଦୂର ହେଉ ନ ଥାଏ ।
କବି ଲେଖିଲେ -

ଗାଢ଼ ଦାରିଦ୍ର୍ୟ ଦୁଃଖ ରଖିବାକୁ କେ ଦକ୍ଷ
ଗୌରଚନ୍ଦ୍ର ପ୍ରଭୁଥାଇ ଯଦି ମୋରେ ନ ପଡିବ କୃପାକଟାକ୍ଷ
ଗୁଣଗ୍ରାହୀ ହେ ଗୁପତ ମୁଁ ନକରି ଜଣାଉଛି ଥରଥରକୁ
ଗ୍ରାହତାପୁ କରି ଉଦ୍ଧାରିଲେ ହରି, ସେପରି ଏ ହରିବନ୍ଧୁକୁ

ସନ୍ତାନ ଗୋକୁଳାନନ୍ଦଙ୍କ ଜନ୍ମପରେ ପ୍ରଥମା ପତ୍ନୀଙ୍କର ମୃତ୍ୟୁ ହୁଏ । ୩୩ବର୍ଷ ବୟସରେ କବି ୨ୟ ଦାର ପରିଗ୍ରହ କରନ୍ତି । ଏହି ପଦ୍ମାବତୀଙ୍କ ଗର୍ଭରୁ ତାଙ୍କର ନନ୍ଦ କିଶୋର, ଶ୍ୟାମସୁନ୍ଦର, ଗୋପୀନାଥ, ନୀଳମଣି, ଚକ୍ରପାଣି ନାମକ ପାଞ୍ଚପୁତ୍ର ଜନ୍ମ ନେଲେ । ସେମାନେ ମଧ୍ୟ ଗାନ ରାଗ ତାଳ ଓ ବାଦ୍ୟଯନ୍ତ୍ର ବାୟନରେ ସୁଦକ୍ଷ ଥିଲେ ।

ପାରମାର୍ଥିକ ବୈଷ୍ଣବ ଓ ଭକ୍ତିମାର୍ଗରେ ନିମଜ୍ଜିତ କବି ହରିକୃଷ୍ଣ ମଠ ମନ୍ଦିରମାନଙ୍କରେ ହରି ଭକ୍ତି ରସୋଦ୍ରକ ନାମ କୀର୍ତ୍ତନରେ ଓ ସାଧୁ ସନ୍ନ୍ୟାସୀମାନଙ୍କ ଗହଣରେ କାଳାତିପାତ କରୁଥିଲେ । କବି ଗୌଡ଼ୀୟ ବୈଷ୍ଣବ ଥିବାରୁ ସର୍ବଦା ଭକ୍ତରୂପୀ ଭଗବାନ ଶ୍ରୀ ଚୈତନ୍ୟଙ୍କର ପ୍ରେମ ଭକ୍ତିରେ ବିହ୍ୱଳିତ ଥିଲେ । ଶଚ୍ଚିନନ୍ଦନ ନବଦ୍ୱୀପ ଚ଼ନ୍ଦ୍ରମା ଗୌରଚ଼ନ୍ଦ୍ର ଚ଼ୈତନ୍ୟ ମହାପ୍ରଭୁଙ୍କ ଗୁଣଗାନ ପ୍ରସଙ୍ଗରେ ତାଙ୍କର ପ୍ରସିଦ୍ଧ କବିତା ମାନ ହେଲା :-

ବନ୍ଦ ଗଉରଚ଼ନ୍ଦ୍ର ଶ୍ରୀ ଶଚ଼ିନନ୍ଦନ ପଦକୁ ସଦା
ଦ୍ୱନ୍ଦ୍ୱ ତେଜ ଆନନ୍ଦରେ ଭଜ କୁନ୍ଦାନାଭ ସୁନ୍ଦରାଙ୍ଗ ।୧।
ଅନ୍ତର କର ଅନ୍ତରୁ ଭବ ଯନ୍ତର ଦୂରରୁ
ସ୍ୱାନ୍ତ କହୁଛି ସନ୍ଥଜନରେ ସନ୍ତତେ ରହନାହିଁ ଟି ଭୀରୁ ।୨।
ଦଣ୍ଡଧରର ଦଣ୍ଡ ଏବେ ଖଣ୍ଡନ କରିବେ
ମଣ୍ଡନ କର ମଣ୍ଡରେ ରଜ ତୁଣ୍ଡରେ ରଟ ନାମକୁ ଭାବେ ।୩।
ବାସର ନିଶି ବାସରେ ରହି କୀର୍ତ୍ତନ କରରେ
ତୋଷରେ ହରିବନ୍ଧୁ ଭାଷ ଦୋଷ ରହିତ ନିଶ୍ଚୟ ଧୀରେ ।୪।
ଭଜମନ ଅନ୍ତରେ ଶ୍ରୀ ଚୈତନ୍ୟଙ୍କୁ
ସଚ୍ଚିଦାନନ୍ଦ ସ୍ୱରୂପ ଭାବୁ ଘୁଞ୍ଚୁଛି ତ୍ରିତାପ
ଯତିକୁଳଙ୍କ ଅଧିପ ପ୍ରେମମୟଙ୍କୁ ।୧।
ଶ୍ରୀ ନିତ୍ୟାନନ୍ଦ ଅଦ୍ୱୈତ ଆଦି ପ୍ରଭୁତ ଆବୃତ
ଭବ ବ୍ରହ୍ମାଦିରେ ସ୍ତୁତ ଶଚିସୁତଙ୍କୁ ।୨।

| | | | |
|---|---|---|---|
| ଭବାବ୍ଧୀ ତାରଣ ତରୀ | । | ବୃଷଭାନୁ ସୁତାହରି | |
| ଏକ ହୋଇ ଅବତରି | । | ଛନ୍ତି ତାହାଙ୍କୁ | ।୩। |
| ସାଷ୍ଟାଙ୍ଗ ଦଣ୍ଡ ପ୍ରଣତି | । | ହୋଇ ହରିବନ୍ଧୁ ନିତି | |
| ଜଣାଉଛି ବ୍ରଜ ପ୍ରେମ | । | ଲଭ୍ୟ ହେବାକୁ | |

ଶଚିସୁତ ଶ୍ରୀକୃଷ୍ଣ ଚୈତନ୍ୟ ଭଜ । ପଦ
ସଚ୍ଚିଦାନନ୍ଦ ସ୍ୱରୂପ ସଦାନନ୍ଦ
ନିଗମାରଣ୍ୟ ବିରହ ବିମୋହନ
ପୁରଟ ସୁନ୍ଦର ରକ୍ତାମ୍ବର ଧର
ଭକ୍ତ ବରଜବର । ପରି ପାଳନ କର ।୨।
ପାଷାଣ୍ଡ ନିକର । ମର୍ଦ୍ଦନ ଶ୍ରୀକର
ହରି ସଂକୀର୍ତ୍ତନ । ନର୍ତ୍ତନ ତତ୍ପର ।୩।
ପ୍ରେମା ମୃତ ମୟ । ସ୍ୱସ୍ୱ ଭକ୍ତଚୟ
ଭାବ ବିନୋଦୟ । ଧେୟ ହରିବନ୍ଧୁର ।୪।

ଚିନ୍ତ ଶ୍ରୀଚୈତନ୍ୟଚନ୍ଦ୍ରଙ୍କୁ ସନ୍ତତଚିତ୍ତ । ପଦ
ଚିନ୍ତ ଶ୍ରୀ ଚୈତନ୍ୟ ଚନ୍ଦ୍ର ସ୍ମରଣ କର ଯତୀନ୍ଦ୍ର
ଦୂରୀକୃତ ହେବ ଘୋର । କଳ୍ମଷ ହୋଇ ଆନନ୍ଦ ।୧।
ଆଜାନୁଲମ୍ବିତ କର । କୋଟି କନ୍ଦର୍ପ ସୁନ୍ଦର
କନକ ଜିତ ଶରୀର । କୃପାମ୍ବୁଧି ବିଧୁବର ।୨।
ସଚ୍ଚିଦାନନ୍ଦ ସ୍ୱରୂପ । ସର୍ବ ଦେବାଧି ଅଧିପ
ପରଂବ୍ରହ୍ମ ସନାତନ । ଚିନ୍ତୁ ଘୁଞ୍ଚୁଛି ତ୍ରିତାପ ।୩।
ଦଣ୍ଡଧର ଦଣ୍ଡନରୁ । ଖଣ୍ଡନ କରିବେ ଦୂରୁ
ମଣ୍ଡନ କର ମସ୍ତକେ । ଶ୍ରୀଗୁରୁ ଆଜ୍ଞା ଆଦ୍ୟରୁ ।୪।
ଶ୍ରୀନନ୍ଦ ନନ୍ଦନ ହରି । ଶ୍ରୀରାଧିକା ମନୋହରୀ ।
ନବ ଦୀପେ ଅବତରି । ସ୍ୱଭକ୍ତି ଦେଲେ ପ୍ରଚାର ।୫।
ଗୁରୁଗୋବିନ୍ଦ ଶରଣ । ଗୋସ୍ୱାମୀ ମନ ପୂରଣ
କରିବେ ରାଧାରମଣ । ବୋଲି ରଚିଲେ କୀର୍ତ୍ତନ ।୬।

ଭଜ ମାନସ ଗୌରଚନ୍ଦ୍ର । ଶ୍ରୀନବଦ୍ୱୀପ ବିହାରୀ
କୁନ୍ଦନ ଜିତ ସୁନ୍ଦର ତନୁ । ଜଗଜନ ମନହାରୀ ।୧।
ଶୁକ ସନକ ବ୍ରହ୍ମଯୋଗୀ । ଧ୍ୟାନ କରେ ଯାହାରି

ଶରଦାମ୍ବୁଜ ଅରୁଣତେଜ | ଜିତ ଚ଼ରଣ ମାଧୁରୀ |୨|
କୋଟି ମଦନ ଦର୍ପଦଳନ | ମୋହନ ରୂପଧାରୀ
ଶର୍ବରୀ ପତି ଗର୍ବ ଖର୍ବ | କରୁଛି ଯା ମୁଖଶିରୀ |୩|
କୁନ୍ଦ ଦଶନ ମନ୍ଦ ହସନ | ବେଦବନ ସଂଚ଼ାରୀ
କଞ୍ଜ ନୟନ ଭକ୍ତ ନିକର | ରଞ୍ଜନ ଦୁଃଖହାରୀ |୪|
ଅଗ୍ରଜ ଅବଧୂତ ପ୍ରଭୁ | ଅଦ୍ୱୈତ ଆଚାରି
ସଙ୍ଗରେ ଅତି ରଙ୍ଗରେ | ନିଜ ଭକ୍ତି ଯେ ପ୍ରଚାରୀ |୫|
ହରି କୀର୍ତ୍ତନ ନର୍ତ୍ତନାବ୍ଧି | ପ୍ରେମାମୃତ ବାରି
ବିନ୍ଦୁ ନ ଲଭି ହରିବନ୍ଧୁର | ଆଖିରୁ ବହେ ବାରି |୬|

ସ୍ୱାନ୍ତ ସଂତତ ଚିନ୍ତରେ ଶଚ଼ିନନ୍ଦନ | ଶ୍ରୀଚୈତନ୍ୟଙ୍କୁ ଶାନ୍ତରେ
ସଚ୍ଚିଦାନନ୍ଦ ସ୍ୱରୂପ ସନାତନ | ବଞ୍ଚନ ନ କର ତୁ
ମଞ୍ଚଭବ ଭୋଳରେ (ପଡ଼ି) କୁନ୍ଦ କୁସୁମ ସୁରଦନ ସୁନ୍ଦର
କୁନ୍ଦନ ବରନ ମୃଦୁ ମନୋହର । ଚନ୍ଦ୍ର ଆନନ୍ଦ ଗମନ କୁଞ୍ଜର ।
ମନ୍ଦ ଧୀର ଗମ୍ଭୀର କୃପାକର । ।୧।
ଇତ୍ୟାଦି

ଗଭୀର ଚୈତନ୍ୟ ପ୍ରେମରେ ନିମଜ୍ଜିତ ଥାଇ ଦୈନନ୍ଦିନ ସକଳ କର୍ମରେ ସେ ଶ୍ରୀକୃଷ୍ଣ ଚୈତନ୍ୟଙ୍କର ଭାବ ଅନୁଭବ କରୁଥିଲେ । ଦିନେ ନିଜର ଶିଶୁ ବାଳକଟିକୁ କ୍ରୋଡରେ ଧରି ବସିଥିବା ସମୟରେ ଶିଶୁଟି ନିଜ ପଦ ବୃଦ୍ଧାଙ୍ଗୁଷ୍ଠି ମୁଖରେ ଦେଇ ଅକପଟ ଦୃଷ୍ଟିରେ ପିତାଙ୍କୁ ଚାହିଁବା ମାତ୍ରେ କୃଷ୍ଣ ପ୍ରେମରେ ଗଦଗଦ ହୋଇ ତତ୍‌କ୍ଷଣାତ ରଚନା କଲେ;

ନବଦ୍ୱୀପ ଚନ୍ଦ୍ରମାଙ୍କ ଦାସଟି ଏହି
ଶ୍ରୀକୃଷ୍ଣ ଚୈତନ୍ୟ ନାମ ରଟୁଛି ରହି

ଶୁଣ ହେ ସାଧୁଜନ ଏ ଶ୍ରବଣ କୀର୍ତ୍ତନ
କାହା ମୁଖ ଏହି ପରିରେ ଶୁଣା ନାହିଁ ।୧।
ପରମ ଭାଗବତ ତତ୍ତ୍ୱକୁ ନିରୂପିତ
କିରଣ କହୁଅଛନ୍ତି ଆନନ୍ଦ ହୋଇ ।୨।

ମହାପ୍ରଭୁଙ୍କୁ ଯାଇ ଜଣାଇ ଦିଅ କେହି
ବୋଲୁ ଶ୍ରୀ ଗଉରଚନ୍ଦ୍ର ଆସିଲେ ତହିଁ ।୩।
ଶ୍ରୀ ଲୋକନାଥ ଦାସ । ଦେବ ଭାବି ହରଷ
ହୋଇଣ ଭାଷିଲେ ଭକ୍ତଭାବକୁ ଧ୍ୟାଇ ।୪।

ଅନ୍ୟ ଏକ ସମୟରେ ପାରଳାଖେମୁଣ୍ଡି ନିକଟବର୍ତ୍ତୀ ଲିହୁରି ଗ୍ରାମରେ ଶ୍ରୀ ଗୋପୀନାଥ ମହାପ୍ରଭୁଙ୍କ ଦର୍ଶନରେ କବିଙ୍କ ପ୍ରାଣରେ ବ୍ରଜଭାବର ଉଦ୍ରେକ ହେବାରୁ ସେ ସେହିକ୍ଷଣି ରଚନା କଲେ;

ଗୋପୀନାଥ ମୁରାରି ଗୁପତରେ ହରି
ବୃନ୍ଦାବନ କରି ନାମ ବହିଛ ଲିହୁରି
ଗୋକୁଳରୁ ଗୋଚାରଣ କଲାକାଳେ ।
ଗୋପୀଙ୍କି ହେ ବଂଶୀଧାରୀ
ଗାଢ଼ ପ୍ରଣୟରେ ନୟନ ପ୍ରାନ୍ତରେ ।
ଠାରି ହସିବା ମାଧୁରୀ
ଯାହାର ଯେ ବାଞ୍ଛା ସଂକଳ୍ପେ ତୁମ୍ଭର ।
ଶ୍ରୀମୁଖ ଦର୍ଶନ କରି
ଜଣାଇ ଆନନ୍ଦେ ଚାହିଁଲା ମାତ୍ରକେ ।
ଲଭ୍ୟ ହେଉଛି ତାହାରି,
ନିକୁଞ୍ଜ ବିହାରୀ ବୃନ୍ଦାବନଚାରୀ ।
ରାସ ବିନୋଦଦିଆ ହରି
ତୁମ୍ଭ ପରା ପ୍ରଭୁ ଥାଉ ଥାଉ
ସେବା ନୋହିଲା ମୋହରି
ଭାଷଇ ହରିବନ୍ଧୁ ପଟ୍ଟନାୟକ ।
ଶ୍ରୀପଦାବ୍ଜୁ ଧ୍ୟାନ କରି
ଦର୍ଶନରେ ତୃଣ ଧରି ଜଣାଉଛି ।
ଦୁଃଖରୁ ରଖ ଉଦ୍ଧରି ।

କବି ପରମ ବୈଷ୍ଣବ ଥିଲେ । ସଂସାର ସୁଲଭ ସକଳ ସ୍ୱାର୍ଥ, ଲୋଭ, ମୋହ ଆଦି ଓ ଦାରିଦ୍ର୍ୟ ଜନିତ ଜଞ୍ଜାଳ ମଧ୍ୟରେ ପରମ ପ୍ରେମମୟ ଶ୍ରୀକୃଷ୍ଣ ଚୈତନ୍ୟଙ୍କର

ରସାମୃତ ପାନ କରି ସେ ନିଜକୁ ପରମ ଆହ୍ଲାଦିତ କରି ରଖୁଥିଲେ । ପରମାତ୍ମାଙ୍କ ଶ୍ରୀଚରଣରେ ନିଜକୁ ଅର୍ପଣ କରି ନିରବଧି ହରିନାମ ଜପି ସକଳ ଅଭାବ ଅସୁବିଧା ଓ ଦୁଃଖ ଅକାଳେ ଦୂର ହେବ ବୋଲି ବିଶ୍ୱାସ ରଖି କବି କାଳାତିପାତ କରୁଥିଲେ । ପରମ ନିଷ୍ଠାପର ପାରମାର୍ଥିକ ଭକ୍ତ ଶିରୋମଣି ହରିବନ୍ଧୁ ପ୍ରତ୍ୟହ ବ୍ରାହ୍ମ ମୁହୂର୍ତ୍ତରେ ଶଯ୍ୟାତ୍ୟାଗ କରି ନିତ୍ୟ ନୈମିତ୍ତିକ ସ୍ନାନ ଶୌଚାଦି ସମାପନ ଉତ୍ତାରେ ସ୍ତବ ସ୍ତୋତ୍ରାଦି ଗାନ ଶ୍ରୀମଦ୍ ଭାଗବତ ରାସ ପଞ୍ଚାଧ୍ୟାୟୀ ଓ ଗୀତଗୋବିନ୍ଦ ପାରାୟଣ ସହିତ ଶ୍ରୀଠାକୁରଙ୍କର ଦର୍ଶନ ତୁଳସୀ ଚରଣାମୃତ ସେବନ କରି ଭୋଜନ କରୁଥିଲେ । ଶାରୀରିକ କ୍ଳେଶ ଅସୁସ୍ଥତା ସତ୍ତ୍ୱେ ଏହି ନିୟମ କଠୋର ଭାବେ ପ୍ରତିପାଳନ କରୁଥିଲେ । ଅପରାହ୍ନରେ ଶ୍ରୀ ଚୈତନ୍ୟ ଭାଗବତ, ଶ୍ରୀଚୈତନ୍ୟମଙ୍ଗଳ, ଶ୍ରୀଚୈତନ୍ୟ ଚିରତାମୃତ ଆଦି ଭାଗବତ ବିଷୟକ ଗ୍ରନ୍ଥମାନ ନିୟମିତ ପାଠ, ମନ୍ଦିରମାନଙ୍କରେ ସନ୍ଧ୍ୟା ଆରତି ଦର୍ଶନ ଓ ତଦୁତ୍ତାରେ ରାଜପ୍ରାସାଦରେ ରାଜଦର୍ଶନ ହରିବନ୍ଧୁଙ୍କର କାର୍ଯ୍ୟ ଥିଲା । ରାଜଦରବାରରେ ସମୟୋଚିତ ପ୍ରସ୍ତାବମାନଙ୍କ ଆଲୋଚନା ଓ ସାହିତ୍ୟ ସଙ୍ଗୀତ ଚର୍ଚ୍ଚାରେ ସେ ସର୍ବଦା ଅଂଶଗ୍ରହଣ କରୁଥିଲେ ।

୧୮୯୬ ମସିହା ସେପ୍ଟେମ୍ବର ମାସ ୧ ତାରିଖ ଦିବା ଘ ୧୦ ସମୟରେ ୭୦ ବର୍ଷ ବୟସରେ କବି ନଶ୍ୱର ଶରୀର ତ୍ୟାଗ କଲେ । ଗୋପାଳକୃଷ୍ଣଙ୍କ ପରି ମଧ୍ୟ ଶୁଣାଯାଏ, ସେ ନିଜର କୋଷ୍ଠୀ ଗଣନା କରି ଅନ୍ତିମ ସମୟ ନିରୂପଣ କରି ସାରିଥିଲେ । ମୁମୂର୍ଷ ଅବସ୍ଥାରେ ପୁତ୍ର ଶ୍ୟାମସୁନ୍ଦରଙ୍କୁ ଦରସ୍ଫୁଟ କଣ୍ଠରେ ଭକ୍ତି ରସାତ୍ମକ ଶ୍ଳୋକଟି ଡାକି ଦେଇ ସେ ବ୍ରଜଲାଭ କଲେ ।

ଭକ୍ତାନାମଭୟ ପ୍ରଦୋଯଦିଭବେନ୍ନୈ ତତ୍‌ବିଚିତ୍ରଂ ବିଭୋ
କୀଟୋଽପି ସ୍ୱଜନସ୍ୟ ରକ୍ଷଣାବିଧାବେକାନ୍ତ ମୁଦେବ୍‌ଗିତଃ
ଯେ ଯୁଷ୍ମଚ୍ଚରଣାରବିନ୍ଦ ବିମୁଖାଃ ସ୍ୱପ୍ନେଽପିବାମାଦୃଶା
ସ୍ତେଷାଂ ମୁଦ୍ଧରଣ କ୍ଷମୋ ଯଦି ଭବେତ୍କାରୁଣ୍ୟସିନ୍ଧୁସ୍ତଦା ॥

ମୃତ୍ୟୁର ୩୭ ବର୍ଷ ଉତ୍ତାରେ ପାରଳା ଗଜପତି ମହାରାଜାଙ୍କ ଆନୁକୂଲ୍ୟରେ ତାଙ୍କର ପଦ୍ୟାବଳୀମାନ ହରିବନ୍ଧୁ ପଦ୍ୟାବଳୀ ନାମରେ ୧୯୩୩ ମସିହାରେ ଗଜପତି ପ୍ରେସରେ ମୁଦ୍ରିତ ହୋଇ ପ୍ରକାଶିତ ହେଲା । ବଙ୍ଗୀୟ ସାହିତ୍ୟ ଦ୍ୱାରା ପ୍ରଭାବିତ, ନଦିଆନାଗରଙ୍କ ସନ୍ୟାସରସ ସମ୍ବଳିତ ସଂକୀର୍ତ୍ତନ ପଦମାନ ବର୍ତ୍ତମାନ ମଧ୍ୟ ଉତ୍କଳର ବିଭିନ୍ନ ସ୍ଥାନରେ ଗାନ କରାଯାଇ କବିଙ୍କର ସଂକୀର୍ତ୍ତନ ମାଧୁରୀ ପ୍ରଚାର କରୁଅଛି । କବିଙ୍କ ସ୍ମୃତିରକ୍ଷା ନିମିତ୍ତ କୌଣସି ଉଦ୍ୟମ ନହୋଇଥିବା ପରିତାପର ବିଷୟ ।

# କୃଷ୍ଣପ୍ରେମୀ ଦ୍ୱିଜ ପଦ୍ମନାଭ

ପାରଳାଖେମୁଣ୍ଡିର କଟିକିଆ ସାହି (ବର୍ତ୍ତମାନ କବିଚନ୍ଦ୍ର ସାହି)ରେ ଊନବିଂଶ ଶତାବ୍ଦୀର ଆଦ୍ୟ ଭାଗରେ ପଦ୍ମନାଭ ପରପିଚ୍ଛାଙ୍କର ଜନ୍ମ । ଆପନ୍ନା ପଣ୍ଡା ପ୍ରଥମେ ତାଙ୍କର କବି ଜୀବନୀ ପୁସ୍ତକରେ ଏହାଙ୍କର ପରିଚୟ କରିଥିଲେ । ସେ ଟିକିଳିର ରାଜା, ଭଗବତୀ କାବ୍ୟ ପ୍ରଣେତା ଓ ଛଅଗୋଟି ସଙ୍ଗୀତ ସାଗରର ରଚୟିତା ପଦ୍ମନାଭ ଦେବ (ଖ୍ରୀ ୧୭୮୦-୧୮୩୬)ଙ୍କର ସମକାଳୀନ କବି । ସେ ଦକ୍ଷତାର ସହିତ ସଙ୍ଗୀତ ଶିକ୍ଷା କରି ଗୀତ ଓ ତାଳ ସମ୍ବନ୍ଧରେ ଗୋଟିଏ ପ୍ରବନ୍ଧ ଲେଖିଛନ୍ତି ବୋଲି ୧୯୨୬ ମସିହାରେ ଆପନ୍ନା ପଣ୍ଡା ସୂଚାଇ ଅଛନ୍ତି । ଏହିପରି ପୁସ୍ତକ ପୂର୍ବେ ଉତ୍କଳରେ ନଥିଲା । ତାଙ୍କର ଚଉପଦୀସବୁ ଦାକ୍ଷିଣାତ୍ୟ ରାଗରେ ପ୍ରଣୀତ ହୋଇଅଛି । ଭାଷା ସୁନ୍ଦର ଓ ପ୍ରାଞ୍ଜଳ । ସ୍ୱକୃତ ଉତ୍କଳସାହିତ୍ୟ ଐତିହାସିକ ରଥ (ଖ୍ରୀ. ୧୮୮୩-୧୯୨୨) ଓ ପୂର୍ଣ୍ଣଚନ୍ଦ୍ର ଓଡିଆ ଭାଷାକୋଷରେ ଗୋପାଳଚନ୍ଦ୍ର ପ୍ରହରାଜ, ତାଙ୍କ ବିଷୟରେ ଏହାଠାରୁ ଅଧିକ ତଥ୍ୟ ଦେଇ ପାରିନାହାନ୍ତି । ଜଣାଯାଏ, ପଦ୍ମନାଭ ଶ୍ୟାମସୁନ୍ଦର ରାଜଗୁରୁଙ୍କର ସମସାମୟିକ ଥାଇ ପଦ୍ମନାଭ ନାରାୟଣ ଗଜପତି (ଚନ୍ଦ୍ରମହାରାଜା)ଙ୍କର ଗୃହଶିକ୍ଷକ ଥିଲେ । ତାଙ୍କର ଚଉପଦୀମାନ ମୁଖ୍ୟତଃ ରାଧାକୃଷ୍ଣ ପ୍ରେମ ବିଷୟକ । ତେଲୁଗୁ ସଙ୍ଗୀତରେ କୃତି ପଲ୍ଲବୀ ରାଗର ଅବଲମ୍ବନରେ ସେ ଓଡ଼ିଆ ସଙ୍ଗୀତ ଆରମ୍ଭ କରିଥିଲେ । ତାହାଙ୍କର ସଙ୍ଗୀତ ମଧ୍ୟରେ "ଭିନ୍ନେ ଆଜ ତୋ ରୀତିରେ ପଙ୍କଜନୟନା ମାନେ ବଳିଛି ମତିରେ" ସମଗ୍ର ଓଡିଶାରେ ବିଶେଷ ଲୋକପ୍ରିୟ । ଅନ୍ଧ ଗାୟକ ଆପନ୍ନା ପାଣିଗ୍ରାହୀ ଏହାକୁ ଗ୍ରାମଫୋନ୍ ରେକର୍ଡରେ ପ୍ରସ୍ତୁତ କରାଇ ଓଡିଶାରେ ସର୍ବଜନ ଆଦୃତ କରିପାରିଥିଲେ । ତାଙ୍କ ରଚିତ 'ଗୀତ ରତ୍ନାକର' ନାମକ ଏକ ପୁସ୍ତକ ଆମ୍ଭେମାନେ ପାରଳାଖେମୁଣ୍ଡିର ଚୈତନ୍ୟ ମଠରୁ ପାଇଅଛୁ ଓ ସେଥିରେ ଏହି ସଙ୍ଗୀତଟି ୧୨୩ ନମ୍ବର ଗୀତ ଭାବେ ସ୍ଥାନ ପାଇଅଛି । ଅକ୍ଷର 'ଆ'ରୁ 'ଆହା ତେଜିଲେ ମୋ ନାହାରେ ଏ ଘନ କାଳେ ମୋରେ' ଆରମ୍ଭ ହୋଇ ବର୍ଣ୍ଣମାଳା କ୍ରମେ 'ହ' 'ହରିବି କେସନେ ନିଶି ନାଗର ବିନାରେ 'ଗୀତରେ ଏଗୁଡିକ ଶେଷ ହୋଇଅଛି । 'ରାଧା କୋଇଲି'ନାମରେ ଅନ୍ୟ ଏକ ସଙ୍ଗୀତ ପୁସ୍ତକ ମଧ୍ୟ ସେ ରଚନା କରି ପ୍ରସିଦ୍ଧି ଲାଭ କରିଥିବାର କୁହାଯାଏ । ସେଥିରେ ସେ ଶ୍ରୀରାଧାଙ୍କ ମୁଖରେ କୁହାଇଛନ୍ତି:-

କୋଇଲି କୃଷ୍ଣ ବିନୁ ନ ସରଇ ଦିନ
ଆଲୋ କାହାଗେ କହିବି ଯାଇ ଏ ମୋର କଦନ
ଲୋ କୋଇଲି
କୋଇଲି ଖଣ୍ଡିଲା ଦଇବ ମୋର ସୁଖ
ଖଣ୍ଡ ଖଣ୍ଡ ଦେହ କଲା କୁସୁମ ବିଶିଖ
ଲୋ କୋଇଲି
ଇତ୍ୟାଦି

କବିସୂର୍ଯ୍ୟ ବଳଦେବ ରଥ ପାରଳା ଆସିବା ସମୟରେ (ଖ୍ରୀ ୧୮୩୧-୩୪) ତାଙ୍କର କବି ପ୍ରତିଭାର ପରିଚୟ ପାଇ ତାହାର ପ୍ରଶଂସା କରିଥିବାର ଶୁଣାଯାଏ । ପଦ୍ମନାଭଙ୍କର ପିତୃମାତୃକୁଳ ନିର୍ଣ୍ଣୟ ସମ୍ଭବ ହୋଇ ପାରିନାହିଁ । ତାଙ୍କର ରଚନାମାନ ପାରଳାଖେମୁଣ୍ଡିର ବ୍ରାହ୍ମଣସାହି ନିକଟ ଶ୍ରୀଚୈତନ୍ୟ ମଠରେ ଥିଲା । ସେ ମଠର ଶେଷ ଗୋସ୍ୱାମୀ ବର୍ତ୍ତମାନ କାଳ କବଳିତ । ପଦ୍ମନାଭଙ୍କର ଏକମାତ୍ର ପୁତ୍ର ଗୋପୀନାଥ ରାଜମଣିଙ୍କୁ ବିବାହ କରିଥିଲେ ତାଙ୍କର ଗୋଟିଏ ପୁତ୍ର ସିମାଦ୍ରି ଓ ଚାରିଗୋଟି ଝିଅ ଥିଲେ । ସିମାଦ୍ରିଙ୍କର ପୁତ୍ର ହୀରାଲାଲ ପାରଳାଖେମୁଣ୍ଡିରେ ବାସ କରୁଥିଲେ । ସେ ନିକଟରେ ୧୯୮୦ ମସିହାରେ ପ୍ରାଣତ୍ୟାଗ କରିଅଛନ୍ତି । ଆମ୍ଭଙ୍କୁ ୧୯୬୭।୬୮ ମସିହାରେ ମଧ୍ୟ ତାଙ୍କ ନିକଟରୁ ପଦ୍ମନାଭ ପରିଛାଙ୍କର କୌଣସି ଗ୍ରନ୍ଥ ମିଳିପାରି ନଥିଲା । ଆମ୍ଭମାନଙ୍କୁ ମିଳିଥିବା 'ଗୀତ ରତ୍ନାକର' ଚୈତନ୍ୟ ମଠକୁ କେଉଁ ସୂତ୍ରରେ ମିଳିଥିଲା ଓ ପୋଥିରୁ ବା ପୁସ୍ତକରୁ ନକଲ ହୋଇ ରଖାଯାଇଥିଲା ତାହା ମଧ ଜାଣିବା ସମ୍ଭବପର ହୋଇ ନଥିଲା । ଆମ୍ଭମାନଙ୍କର ବିଶ୍ୱାସ ଭବିଷ୍ୟତରେ କେହି ଗୁଣଗ୍ରାହୀ ପଣ୍ଡିତ ଏହି ଗ୍ରନ୍ଥର ସମ୍ୟକ୍ ଆଲୋଚନା କରି ରଚନା କାଳ ନିର୍ଣ୍ଣୟ କିରବେ । ପାଠକମାନଙ୍କର କୌତୁହଳ ନିମିତ୍ତ ଓ ତାଙ୍କ ରଚନାର ନମୁନା ସ୍ୱରୂପ ପାଞ୍ଚଗୋଟି ଚଉପଦୀ ଦିଆଗଲା । ପ୍ରଥମଟି ତାଙ୍କର ବହୁଜନ ଗୀତ ସଙ୍ଗୀତ ।

(ରାଗ ଆରଭି ତାଳ ଆଦିତାଳ)
ଭିନ୍ନେ ଆଜ ତୋ ରୀତରେ ପଙ୍କଜନୟନା
ମାନେ ବଳିଛି ମତିରେ ।
ମାର ମାରଣାକୁ ବାରଣ ମୋର ତୁହି
ଦାରୁଣ କହୁ କି କେ ବାରଣ ଜିତଗତି ଭିନ୍ନେ.... .... (ଘୋଷ)
କାହୁଁ ଶିଖିଲୁ ଏମାନ କିଶୋରିମଣି

କହରେ ସଖି ମୋ ଆନ ।
ତୋ ବିନୁ କେ ମୋ ଆନ । ନାହିଁ ମାନ ସେ ମାନ ।
ଏ କି ଦିନକୁ ଦିନ । ଦେଖ ତୋର ଗୁମାନ
ଶାଣ ଦେଇ ସ୍ମରରାଣ ଧରି ଫୁଲ
ବାଣ ବାଣରେ ମୋ ପ୍ରାଣ ନେବ ବୋଲି
ଟାଣ କରିମାରେ । ବାଣ ସୁଚି଼ରରେ
ପ୍ରାଣଧନ ପରି ତ୍ରାଣ କର ତୁ ବାରେ ଭିନ୍ନେ (୧)
ଧରି କହୁଛି ତୋ କର ସୁଜାଣୁବର । ନିରତେ ନ ହସାପର
ନେତ୍ରୁ ଯା ତେଜୁ ନୀର ଧାର ଭରଜପର
ସାର କରିଛୁ କିରେ ସାର ବିରସ ଛାର
ଆସ ବନ୍ଧୁମାନ ନାଶ ତୋର ନିଜ ଦାସ ପରିରେ
ସିରସ ରଙ୍ଗିନ ଭାଷ ନ କରି ନିରାଶ
ବହି ଅଛୁ କାଶ ଶଶିଜିତ ହାଡିନୀ ଏ କି ତୋର । (୨)
ଭିନ୍ନେ ଆଜ ତୋ ରୀତିରେ
ଗଣ୍ଡଦେଶରେ ମଣ୍ଡନା ପଲ୍ଲବପାଣି ରାମା ପ୍ରୀତିକି ଖଣ୍ଡନା
ମହୀ ଚାହିଁ ବସନା. ଚାରୁ ନୀଳ ବସନା, କିଞ୍ଚିତେ ଥରେ ଅନା
ଅନାଦରେ ରସନା
ରଙ୍ଗ ଅଧରୀକି ରଙ୍ଗ ପରିହରି ରଙ୍ଗେ ବିହର ମୋ
ସଙ୍ଗେ ଆରେ ଗୋରୀ
ତୁଙ୍ଗସ୍ତନା ତୁ ମୋ ଅଙ୍ଗଭର କରି ସଙ୍ଗିନୀରେ ମୋର ସଙ୍ଗକୁ ତେଜନା । (୩)
ଭିନ୍ନେ ଆଜ ତୋ ରୀତିରେ
ମୁଖ ଶଶିକୁ ପ୍ରକାଶ । ମୁକୁନ୍ଦ ରଦନା । ମୋ ଦୁଖ ତମ ବିନାଶ
ସରଜ ପ୍ରୀତି ବିଶେଷ । ଅରଜନା ଏ ଅଯଶ
ବରଜ ମଣ୍ଡନୀ ଆସ ତରଜନ କୋଳେ ବସ
ଶ୍ୟାମ ବିନୟରେ ହେମସ ବରନୀ
ନାମ ତେଜି ଅତି ପ୍ରେମେ ମଜ୍ଜିଲେ ସେ
ତାମରସ ପଦ ଧ୍ୟାନେ ଦ୍ୱିଜ ପଦ୍ମନାଭ ରସରେ

ଗାନ କଲେ ରସେ
ଭିନ୍ନେ ଆଜ ତୋ ରୀତିରେ ।
ଗୀତ ରତ୍ନାକର ପ୍ରଥମ ଗୀତଟି ଏହିପରି
( ରାଗ ଭୈରବୀ ଆଦି ତାଳ )
୨ ) ଆହା ତେଜିଲେ ମୋ ନାହାରେ
ଏ ଘନ କାଳରେ ମୋରେ,
ଆହା ବୋଲିବାକୁ ସାହା ନାହିଁ କେହି
ଯାହା କରେ ରତି ନାହାରେ ସଖି ।
ବାରବାର କରି କହିଥିଲେ ହରି
ସାର ଏ ଅବଧି ଗାର କରିଛି ମୁଁ,
ନୀର ଧର ବରନକୁ ନିରତେ
ପାଶୋରି ନୁହେଁ ସୁତନୁ,
ଚିର ପୀରତି ଅଚିର କରି ସେ ଗୋ
ଥିର ହେଲେ ମୁଁ ଅଥିରରେ ସଖି ।
କାହିଁ ମୋର ସମ ନାହିଁ ଦୁଖିନୀ
ଏ ଦୁଖ ସହିବ କେହି
ପ୍ରାଣ ମୋର ପରିତ୍ରାଣ କରି ଯିବ
ନାଥ ବୋଲି ମୁଁ ଅନାଥରେ ସଖି ।
ଭାଷେ ଦ୍ଵିଜ ପଦ୍ମନାଭ ଏ ରସେ
ନ ଭାଳ କିଶୋରୀମଣି
ସାଜ ତନୁକୁ ବିରାଜ ଆସିବେ
ଆଜ ବ୍ରଜଯୁବରାଜ ବଂଶୀଧାରୀ

.....

ରାଗ ରାମକ୍ରି ଏକତାଳ
(ସରସ୍ଵତୀ ବନ୍ଦନା)
୩- କୁନ୍ଦ ବୃନ୍ଦ ନଭ ଅତି ରୁଚି ଭୈରବ
ସୁନ୍ଦର ଶୁଚି ତନୁ ବିରାଜତେ

ବୀଣା ପୁସ୍ତକ ରଞ୍ଜିତ କରଯୁଗ ଭାରତୀ ଗୁଣମୟୀ ନମୋସ୍ତୁତେ
ଶାରଦ ଶଶଧର ପୂର୍ଣ୍ଣ ଦୀପ୍ତକର ମଦହରସହ ମୁଖ ବିଭ୍ରାଜତେ
ସକଳ ଶାସ୍ତ୍ର ବିଶାରଦ ଭଗବତୀ ଆଶ୍ରିତ ଜନହୃଦ ସମୁଦିତେ ।
ନାରଦାଦି ମୁନି ବୃନ୍ଦାରକୁଚୟ ବନ୍ଦିତ କୃତ ତବ ପଦାମ୍ବୁଜେ ।
ଶୁକ୍ଳାମ୍ବରଧାରିଣୀ ଯୋଗତାରିଣୀ ନାରାୟଣୀ ତ୍ୱାଂ ସଦା ଭଜେ
ବାସୁଦେବ କର୍ଣ୍ଣ ଛନ୍ଦ ସିଞ୍ଜିତ ତାନ ଗାନ ରସ ପ୍ରମୋଦିନୀ
ବର୍ଣ୍ଣିତ କରେ ଦ୍ୱିଜ ପଦ୍ମନାଭ ସପନ ମନ ବିହାରିଣୀ ।

....

ରାଗ-ମାଳବ, ତାଳ-ତ୍ରିପୁଟ

(ସରସ୍ୱତୀ ବନ୍ଦନା)

୪- ନିତମ୍ବିନୀ ଚୁମ୍ବିତ ବକ୍ତ୍ରବିଶୁକୁଜଂ କୁଣ୍ଡଳବାନ ପ୍ରମତ୍ତ
ସଙ୍ଗୀତଶାଳା ପ୍ରବିସନ ପ୍ରଦୋଷେ ମାଳଧରୋ ମାଳବରାଗ ରାଜଃ
ଶରଣ ଶରଣ ହାଂ ଶରଣ ଭଗବତୀ ଦେବୀ ଭାରତୀ ପୂର୍ଣ୍ଣଚ଼ନ୍ଦ୍ର ନିଭାନନେ
ମତ୍ତ କଞ୍ଜରଗତି ମନୋହର କଞ୍ଜ ଖଞ୍ଜନ ଲୋଚନେ ।୧।
ପଦ୍ମବାସିନୀ ବିପଦନାଶିନୀ କୁମୁଦହାସଂ ପ୍ରକାଶିନୀ
ତାର ମୌକ୍ତିକ ହାରଶୋଭିନୀ ସୁପ୍ରିୟ ସଙ୍ଗ ବିଳାସିନୀ ।୨।
ପକ୍ୱ ବିମ୍ବାଧର ସୁମାଧୁରୀ କୁନ୍ଦ ହୀରକ ସୁଦନ୍ତିନୀ
ଗଣ୍ଡମଣ୍ଡଳ ମୁକୁର ସମଦ୍ୟୁତି ତ୍ରିପୁର ମାନସ ମୋହିନୀ ।୩।
ସକଳ ଶାସ୍ତ୍ର ବିଶାରଦମୟୀ ବୀଣା ପୁସ୍ତକଧାରିଣୀ
ଗୀତ ସଙ୍ଗୀତ ପାନ ରସଭରେ ଶ୍ରୀହରି ମାନସ ହାରିଣୀ ।୪।
ଭାଷେ ଦ୍ୱିଜ ପଦ୍ମନାଭ ରସେ ଜଗଦ୍ଧାତ୍ରୀ ଗୁଣନିଧି ସାରଦେ
ଜାଣି ଜନ ସୁଖ କାରିଣୀ କ୍ଷଣ ବସତୁ ସନ୍ତତ ମମ ହୃଦେ ।୫।

ରାଗ-ସାବେରୀ

(ଶ୍ରୀକୃଷ୍ଣ ବନ୍ଦନା)

୫- ଜୟ ଜୟ ବ୍ରଜପୁର ନରନାୟକ
ଆଶ୍ରିତ ଜନପୋଷକ ନନ୍ଦକଧର
ପରମ ଆନନ୍ଦମୟ ମଣି ମୁକୁଟଧର

ସନ୍ତତଃହଂ ବନ୍ଦେ ତବ ପୁରତେ ।୧।
ଗୋପୀଗଣ ରଞ୍ଜନ ଅମ୍ବୁଜ ଲୋଚନ
ଦୁଃଖ ମୋଚନ ପୀତାମ୍ବର
ରସିକ ବର ମୁରଲୀଧର ବ୍ରଜ ବିପିନଘନ ଚଞ୍ଚରିତଂ
ହରି ଲୋକପତେ ।୨।
ଚନ୍ଦ୍ରବଦନ ଗୋବର୍ଦ୍ଧନଧର ନନ୍ଦ ତନୟ ସୁନ୍ଦର
ଚନ୍ଦ୍ରକଧର ନବ ନୀରଦଂ
ରୁଚିର ତନୁ ରାଧାସରସମୁଖ
ପଙ୍କଜ ମଧୁକର ଧୀର ମତେ ।୩।
ଦୁଷ୍ଟ ଦନୁଜ ସମୁଦାୟ ଗଞ୍ଜନ ଯାମଳାର୍ଜ୍ଜୁନ ଭଞ୍ଜନ
କେଶବ ହରି
ମମ କଲୁଷ ନିକର ହରି ଅଭୟ ପଦଯୁଗ
ପଦ୍ମନାଭ ଦ୍ୱିଜ ନମୋସ୍ତୁତେ ।୪।
୬- ଜୟ ଜୟ ଶଙ୍କର ଦୂରିତ ଭୟଙ୍କର
ବନ୍ଦିତ ମେ ତବ ପଦାମ୍ବୁଜେ
ନାରଦାଦି ଶୁକ ସନାତନ ତବଗୁଣ କୀର୍ତ୍ତନ
ସଦା ଭଜେ ।୦।
ପାର୍ବତୀ ଧବ ଧବଳାଙ୍କିତ ଲୋଚନ
ଗଙ୍ଗାଧର ହର ଧୀର ମତେ
ସଙ୍ଗୀତ ପ୍ରବୀଣ ଗାନରସ ପଣ୍ଡିତ ଦଣ୍ଡିତ ଦୁର୍ଜ୍ଜୟ ସ୍ୱଭାବତେ ।୧।
ବ୍ରହ୍ମାନନ୍ଦ ମୂର୍ତ୍ତି ମୃତ୍ୟୁଞ୍ଜୟ କୀର୍ତ୍ତି ଯଶ ବିଭାଜିତେ
ଦର୍ପକ ତ୍ରିପୁରା ଦର୍ପହର ଆଶ୍ରିତବତ୍ସଳ ଶ୍ରୀଧର ନମସ୍ତୁତେ ।୨।
ରାଜ ଚର୍ମାମ୍ବର ପିନାକ ପାଣି ରାମ ନାମ ଜପ ସଦା ହୃଦେ
ପଦ୍ମନାଭ ଦ୍ୱିଜ ମେ ତବ କିଙ୍କର
ମମ ଭବ ଭୟ ହର କୃପାନିଧେ।୩।



# ତିନି ଆପନ୍ନା

ସୀମାଚ଼ଳ ବା ସିଂହାଚ଼ଳ ଉତ୍କଳର ଦକ୍ଷିଣ ସୀମାରେ ଅବସ୍ଥିତ । ସେଠାରେ ପୂଜିତ ସିଂହାଚଳାଧୀଶ୍ୱର ସିଂହସ୍ୱାମୀ ଶ୍ରୀ ନରସିଂହସ୍ୱାମୀ ଉଗ୍ର ରୂପ ଧାରଣ କରି ମାର୍ଜାର ନରସିଂହ ନାମରେ ବିରାଜମାନ । ସ୍କନ୍ଦ ପୁରାଣର ବିଷ୍ଣୁଖଣ୍ଡରେ ଶ୍ରୀ ସିଂହାଚଳ କ୍ଷେତ୍ର ମାହାତ୍ମ୍ୟ ବର୍ଣ୍ଣନା ଅନୁସାରେ କ୍ଷେତ୍ରମାନଙ୍କ ମଧ୍ୟରେ ପୁରୁଷୋତ୍ତମ କ୍ଷେତ୍ର ଯେପରି ସର୍ବଶ୍ରେଷ୍ଠ ସେହିପରି ବିଷ୍ଣୁଙ୍କର ସମସ୍ତ ଅବତାର ମଧ୍ୟରେ ନରସିଂହ ନରସିଂହ ଅବତାର ସର୍ବଶ୍ରେଷ୍ଠ ଓ ପ୍ରଧାନ ଏବଂ ପର୍ବତମାନଙ୍କ ମଧ୍ୟରେ ସିଂହାଚଳ ସର୍ବଶ୍ରେଷ୍ଠ । ଶ୍ରୀ ନରସିଂହ ସ୍ୱାମୀଙ୍କର ଅନ୍ୟତମ ନାମ ସିମାଦ୍ରି ଆପାନ୍ନା । (ପଣ୍ଡିତ ଅନନ୍ତ ତ୍ରିପାଠୀ ଶର୍ମାଙ୍କ ଶ୍ରୀ ସିଂହାଞ୍ଚଳ କ୍ଷେତ୍ର ମାହାତ୍ମ୍ୟ ପୁସ୍ତକରୁ ) ସେହି ଅନୁସାରେ ଗଞ୍ଜାମ , ଶ୍ରୀକାକୁଲମ, ପାରଳାଖେମୁଣ୍ଡିରେ ବହୁ ବ୍ୟକ୍ତିଙ୍କର ନାମ ସିମାଦ୍ରି ବା ଆପାନ୍ନା । ପ୍ରାକୃତିକ ଉତ୍କଳରେ ତିନିଜଣ ଆପନ୍ନା ପାରଳାଖେମୁଣ୍ଡି ସହରର ଅଧିବାସୀ ଥାଇ ବିଶେଷ ଖ୍ୟାତି ସମ୍ପନ୍ନ । ସେମାନେ ହେଲେ-

୧-ଅନ୍ଧ ଗାୟକ ଶିରୋମଣି ସଂଗୀତଜ୍ଞ ଆପନ୍ନା ପାଣିଗ୍ରାହୀ

୨-ଦେଶପ୍ରିୟ ଆପନ୍ନା ପଣ୍ଡା, ସାହିତ୍ୟିକ ଓ

୩-ଦେଶଭକ୍ତ ଆପନ୍ନା ପରିଚ୍ଛା, ସମାଜସେବୀ ।



# ଗାୟକ ଶିରୋମଣି ଆପନ୍ନା ପାଣିଗ୍ରାହୀ

"ହୋଇଥାରେ ବେଶ କୁଞ୍ଜକୁ ଯିବୁପରା
ସଙ୍କେତ ଦେଇଛନ୍ତି ସେ ମୁରଲିଧରା"

ଗୀତଟି ରସିକ ଗାୟକ ମଣ୍ଡଳୀରେ ପ୍ରାକୃତିକ ଓଡ଼ିଶାର ସର୍ବତ୍ର ଶୁଣିବାକୁ ମିଳିଥାଏ । ଗୀତର ରଚକ ଗୌରହରି ପରିଚ୍ଛା । ଗୀତକୁ ଲୋକପ୍ରିୟ କରାଇଥିଲେ ପାରଳା ରାଜସଭାର ଅନ୍ଧଗାୟକ ଆପନ୍ନା ପାଣିଗ୍ରାହୀ । ତାଙ୍କର ଜନ୍ମ ୧୮୯୩ ମସିହାରେ ପାରଳାଖେମୁଣ୍ଡି ଜମିଦାରୀ ଅନ୍ତର୍ଗତ ବର୍ତ୍ତମାନ ଆନ୍ଧ୍ର ପ୍ରଦେଶର ନରସନ୍ଧରା ଗ୍ରାମରେ । ସହରଠାରୁ ଏହା ମାତ୍ର ପାଞ୍ଚ ମାଇଲ ଦୂର । ଆପନ୍ନା ପ୍ରାୟ ପାଞ୍ଚବର୍ଷ, ବୟସରେ ବସନ୍ତ ରୋଗରେ ଆକ୍ରାନ୍ତ ହୋଇ ଦୃଷ୍ଟିଶକ୍ତି ହରାଇଥିଲେ । ତାଙ୍କର ମାଆ ରୂପମଞ୍ଜରୀ ଅଳ୍ପ ବୟସରେ ବିଧବା ହେବାରୁ ଏକମାତ୍ର ପୁତ୍ରକୁ ଧରି ପାରଳାଖେମୁଣ୍ଡି ସହରକୁ ଆସି ଭାଇ ଯୁଗଳ କିଶୋର ପାଣିଗ୍ରାହୀଙ୍କର ଆଶ୍ରିତା ହୋଇ ରହିଲେ । ଯୁଗଳ କିଶୋର ମହାରାଜା ଶ୍ରୀକୃଷ୍ଣଚନ୍ଦ୍ରଙ୍କର ଶିକ୍ଷକ ଥାଇ ପାରଳା କଲେଜର ପଦାର୍ଥବିଜ୍ଞାନରେ ଅଧ୍ୟାପକ ହୋଇଥିଲେ । ପରେ ସେ ରାଜପ୍ରାସାଦର ନିୟନ୍ତକ ହୋଇଥିଲେ ଓ ମହାରାଜାଙ୍କ ସହିତ ଗୋଲଟେବୁଲ ବୈଠକରେ ଯୋଗ ଦେବାକୁ ବିଲାତ ଯାଇଥିଲେ । ବାଲ୍ୟକାଳରୁ ଆପନ୍ନାଙ୍କର ସଙ୍ଗୀତରେ ରୁଚିଥିବାରୁ ସେ ଚୈତନ୍ୟ ମଠ ମହନ୍ତ ଅଦ୍ୱୈତବଲ୍ଲଭ ଦାସଙ୍କୁ ଗୁରୁ ରୂପେ ଗ୍ରହଣ କରି ତାଙ୍କଠାରୁ ସଙ୍ଗୀତ ଶିକ୍ଷା କଲେ । ସ୍ଥାନୀୟ ଅନ୍ୟତମ ବିଶିଷ୍ଟ ସଙ୍ଗୀତଜ୍ଞ ବୁଚିଆନା ପାନ୍ତୁଲୁଙ୍କ ଠାରୁ ସେ କର୍ଣ୍ଣାଟକୀ ଓ ଓଡ଼ିଶୀ ସଙ୍ଗୀତରେ ବିଶେଷ ବ୍ୟୁତ୍ପତ୍ତି ଲାଭ କରି ଓଡ଼ିଶାର ବିଭିନ୍ନ ରାଜଦରବାରର ଓ ରାଜଧାନୀ କଟକର ସଙ୍ଗୀତ ସମ୍ମିଳନୀରେ ନିଜର ପ୍ରତିଭା ପ୍ରମାଣିତ କରିଥିଲେ ।

ତାଙ୍କର ଜାମାତା କିଶୋର ଚନ୍ଦ୍ର ପରିଚ୍ଛାଙ୍କ ପ୍ରବର୍ତ୍ତନାରେ ଏକଦା ଆପନ୍ନା ଆଲାହାବାଦଠାରେ ଅନୁଷ୍ଠିତ ପ୍ରୟାଗ ସର୍ବଭାରତୀୟ ସଙ୍ଗୀତ ସମ୍ମିଳନୀରେ ଯୋଗଦେବାକୁ ଯାଇଥିଲେ । ଆପନ୍ନା ଅନ୍ଧ । ସେଠାରେ ସଂପୂର୍ଣ୍ଣ ଅପରିଚିତ । ପୃଷ୍ଠପୋଷକତାର ଅଭାବ । ବଙ୍ଗଳାର ଅନ୍ଧ ଗାୟକ କେ.ସି.ଦେଙ୍କୁ ଗାନର ସୁଯୋଗ ମିଳିବାରୁ ସେ ଉଦ୍ୟୋକ୍ତାମାନଙ୍କର ସାହାଯ୍ୟ ଲୋଡ଼ିଥିଲେ । ସେମାନେ ତାଙ୍କୁ ପାଞ୍ଚ ମିନିଟ୍ ମାତ୍ର ସମୟ ଦେଲେ । ଆପନ୍ନା ମଞ୍ଚ ଉପରକୁ ଉଠିଲେ । ତାଙ୍କର ନିର୍ଦ୍ଦିଷ୍ଟ ସମୟ

କେବଳ ଆଳାପରେ ଶେଷ ହୋଇଗଲା । ଉପସ୍ଥିତ ଦର୍ଶକମାନଙ୍କର ଦାବୀ ଫଳରେ ତାଙ୍କୁ ଅଧଘଣ୍ଟାରୁ ଊର୍ଦ୍ଧ ସମୟ ଦିଆଗଲା । ତାଙ୍କର ଗାୟନ ଶୈଳୀ ଉଚ୍ଚପ୍ରଶଂସିତ ହେଲା ଓ ସେ ପ୍ରଶଂସାପତ୍ର ଧରି ପାରଳା ରାଜସଭାକୁ ଫେରି ଆସିଲେ । ଏହାପରେ ୧୯୩୪ ମସିହାରେ କଟକରେ ଉତ୍କଳ ସମ୍ମିଳନୀ ନ୍ୟୁନତମ ଦାବୀ ଅଧିବେଶନ ଆରମ୍ଭ ହୁଏ । ଏହି ସମୟରେ ଆପନ୍ନା କଟକ ଆସିଥିଲେ । ଉତ୍କଳ ସଙ୍ଗୀତ ସମାଜର ପ୍ରତିଷ୍ଠାତା ଅଧ୍ୟାପକ ଲକ୍ଷ୍ମୀକାନ୍ତ ଚୌଧୁରୀଙ୍କ ସାହାଯ୍ୟରେ ସେ ନିଜର ସଙ୍ଗୀତରେ ବ୍ୟୁତ୍ପତ୍ତି ପ୍ରଦର୍ଶନର ସୁଯୋଗ ପାଇଥିଲେ । ଏହାପରେ ବ୍ରହ୍ମପୁର ଓ ଗଞ୍ଜାମର ଅନ୍ୟତ୍ର ତାଙ୍କର ସଙ୍ଗୀତ ଗାୟନ ସଭା ଅନୁଷ୍ଠିତ ହୋଇ ତାଙ୍କୁ ବିଶେଷ ଲୋକପ୍ରିୟ କରିଥିଲା । ଉତ୍କଳର ବିଖ୍ୟାତ ସଙ୍ଗୀତଜ୍ଞ ହୋଇ ମଧ୍ୟ ଆପନ୍ନାଙ୍କର  ନିଜ ବେଶଭୂଷା ପ୍ରତି ଧ୍ୟାନ ନଥିଲା । ମୁଣ୍ଡରେ ପଗଡ଼ି ଓ ଲମ୍ବା ଇସ୍ତ୍ରୀ ନ ହୋଇଥିବା ଜରିଦିଆ କୋଟ ପିନ୍ଧି ସେ ମଞ୍ଚ ଉପରେ ଗୀତ ଗାଇଲେ ସବୁରି ଚିତ୍ତାକର୍ଷକ ହେଉଥିଲା । ଖାଦ୍ୟପେୟ ବ୍ୟତୀତ ତୈଳ ମର୍ଦ୍ଦନ ତାଙ୍କର ବିଳାସ ଥିଲା । ଏକଟଙ୍କା ଚାରଣା ମୂଲ୍ୟର ଲାଲଗୋଲାପ (ରେଡରୋଜ) ବାସନା ତେଲ ତାଙ୍କର ଦୈନିନ୍ଦିନ ବ୍ୟବହାର ଥିଲା ଓ ଅନ୍ୟମାନଙ୍କର ପ୍ରତିବାଦ ସତ୍ତ୍ୱେ ପାଦ ତଳିପାରେ ମଧ୍ୟ ସେ ତାହା ମାଲିସ କରୁଥିଲେ । ମୃତ୍ୟୁ ସମୟକୁ କରଣସାହିରେ ଚାରିହାତ ଓସାରର ଚାଳଘର ବ୍ୟତୀତ ତାଙ୍କର ଅନ୍ୟକୌଣସି ସମ୍ପତ୍ତି ନଥିଲା । ଏକନିଷ୍ଠ ସଙ୍ଗୀତ ସାଧନା ତାଙ୍କୁ ଖ୍ୟାତି ଓ ରାଜପୃଷ୍ଠପୋଷକତା ଆଣିଥିଲେ ମଧ୍ୟ ନିଜର ବିଷୟସୁଖ ଭୋଗ ବିଳାସରେ ଓ ଧନ ଅର୍ଜନରେ ସେ ସର୍ବଦା ବିମୁଖ ଥିଲେ ।

ପଣ୍ଡିତ ଚନ୍ଦ୍ରଶେଖର ମିଶ୍ର 'ସତ୍ୟବାଦୀରେ ସାତବର୍ଷ,'(ପ୍ରକାଶନ ୧୯୫୩) ପୁସ୍ତକରେ ଗୋପବନ୍ଧୁଙ୍କର ସର୍ବତୋମୁଖୀ ପ୍ରତିଭା ଆଲୋଚନା ପ୍ରସଙ୍ଗରେ 'ସଙ୍ଗୀତ ଓ ଛାନ୍ଦଶିକ୍ଷା' ବିଷୟରେ ଲେଖିଛନ୍ତି (ପୃ୧୪୬)

"୧୯୧୬ ସାଲରେ ଗୋପବନ୍ଧୁ ବାବୁ ପାରଳାଖେମୁଣ୍ଡିରୁ ଫେରିବାବେଳକୁ ସୁଦକ୍ଷ ଓ ବିଚକ୍ଷଣ ସଙ୍ଗୀତ-ଛାନ୍ଦ-ବିଜ୍ଞାନ ପ୍ରବୀଣ ଅନ୍ଧ ଆପନ୍ନା (ଅପର୍ଣ୍ଣା) ପାଣିଗ୍ରାହୀଙ୍କୁ ସଙ୍ଗରେ ଆଣିଥିଲେ । ସେ କାହିଁକି ଆସିଥିଲେ ଆମ୍ଭେମାନେ ଜାଣି ନଥିଲୁ । ଦି ତିନିଦିନ ପରେ ଶନିବାର Block meeting ରେ ଅପର୍ଣ୍ଣାଙ୍କୁ ବସାଇ ଗୋପବନ୍ଧୁଙ୍କ ସଭାପତିତ୍ୱରେ ନୀଳକଣ୍ଠ ବାବୁ 'ସଙ୍ଗୀତ' ବିଷୟରେ ଗୋଟିଏ ସାରଗର୍ଭକ ବକ୍ତୃତା ଦେଲେ ଏବଂ ଛାନ୍ଦ ଓଡ଼ିଶାର ଅନନ୍ୟ ସାଧାରଣ ବିଶେଷତ୍ୱ ଏହା ବୁଝାଇଥିଲେ । ପରେ ଗୋପବନ୍ଧୁବାବୁ ସଙ୍ଗୀତ ଶିକ୍ଷା ଦେବାପାଇଁ ପାରଳାଖେମୁଣ୍ଡି ମହାରାଜାଙ୍କ ଠାରୁ ଅପର୍ଣ୍ଣାଙ୍କୁ ଉଧାର ଆଣିଛନ୍ତି

ବୋଲି କହି ଯେଉଁମାନେଙ୍କର ଛାନ୍ଦ-ସଙ୍ଗୀତ ଶିଖିବାକୁ ଇଚ୍ଛା ହେବ, ସେମାନେ ଶିଖିବେ ବୋଲି ଜଣାଇଦେଲେ । ତାହାପରେ ନୀଳକଣ୍ଠବାବୁ ଛାନ୍ଦ ବିଷୟକ ଯେଉଁ ଯେଉଁ ସୌନ୍ଦର୍ଯ୍ୟ ଓ ଉପଯୋଗିତା ବୁଝାଇଥିଲେ ତହିଁରେ ଉଦାହରଣ ସ୍ୱରୂପ ଛାନ୍ଦମାନଙ୍କର ଗାନଭଙ୍ଗୀ ଶୁଣାଇଦେବାକୁ ଅପର୍ଣ୍ଣାଙ୍କୁ ଅନୁରୋଧ କଲେ । ଅପର୍ଣ୍ଣା ଅନ୍ଧ, ମାତ୍ର ସେ ବସିଥିବା ଅବସ୍ଥାରେ କବିତା ନବରସ ବୁଝାଇ ସାରିବା ପରେ କରୁଣ ରସରେ ବେହେଲା ସାହାଯ୍ୟରେ "ଆହା ଧନୁର୍ଦ୍ଧର ବୀରବର" କବିତାଟି ବିଚିତ୍ର ରାମାୟଣରୁ ଏପରି ଗାନ କରିଥିଲେ ଯେ ଆମ୍ଭେମାନେ ଅଶ୍ରୁମୋଚନ ନକରି ରହିପାରିଲୁ ନାହିଁ । ଭାବପ୍ରବଣ ଗୋପବନ୍ଧୁ ବେଶି ଶୁଣି ନପାରି ନାନା ରସଯୁକ୍ତ 'ବିନାଶ ନାସା ଶ୍ରବଣ ସୂର୍ପଣଖା ପ୍ରବେଶ ଲଙ୍କାର' ଏହି ଗୀତଟି ବୋଲିବାକୁ କହିଲେ । ସେ ଜଳତରଙ୍ଗ ଯନ୍ତ୍ରକୁ ଗୋଡ ଆଙ୍ଗୁଠିରେ ଓ ବେହେଲା ହାତରେ ରଖି ସେହି ଛାନ୍ଦର ଭଙ୍ଗୀ ବଦଳାଇ ବଦଳାଇ ଗୀତଟିର ରସାଭିବ୍ୟକ୍ତି କରି ତାହା ଗାନ କରିପାରିଥଲେ । ତହିଁ ଆରଦିନୁଁ ସଙ୍ଗୀତ ଶ୍ରେଣୀ ଖୋଲିଲା । ପ୍ରଥମେ ବିଦ୍ୟାଳୟ ଗୃହରେ ବିଦ୍ୟାଳୟ ସମୟରେ ଯେତେବେଳେ ସେ ଯନ୍ତ୍ର ସାହାଯ୍ୟରେ ଗୀତ ଆରମ୍ଭ କରିଦେଲେ କୌଣସି ଶ୍ରେଣୀରେ ଛାତ୍ରମାନେ ସମ୍ଭାଳି ହୋଇ ରହିପାରିଲେ ନାହିଁ । ହେଡମାଷ୍ଟରଙ୍କ ଉପସ୍ଥିତିରେ ସ୍କୁଲରେ ପିଲା ନଥିବା ପରି ଜଣାଯାଏ । ଘଟଣାକ୍ରମେ ସାମାନ୍ୟ ପାଟିତୁଣ୍ଡ ହେଲେ ଅଫିସ ଦୁଆର ମୁହଁରେ ଠିଆ ହୋଇ **Silence** ବୋଲି ହେଡମାଷ୍ଟରେ କହିବାମାତ୍ରେ ସ୍କୁଲ ନିର୍ବାକ ହୁଏ । ସେଦିନ ସଙ୍ଗୀତର ଝଙ୍କାର ଏବଂ ସ୍ୱର-ଆକର୍ଷଣ ନୀଳକଣ୍ଠ ବାବୁଙ୍କ ଉପସ୍ଥିତି ବା **Silence**ର ମୂଲ୍ୟ ରହିଲା ନାହିଁ । ସ୍କୁଲ ଘଣ୍ଟା ବଜାଇ ଦିଆଗଲା । ଗୋପବନ୍ଧୁ ଆସି ବୁଝାଇ ଦେଲେ ଯେ ଆପର୍ଣ୍ଣା ଯନ୍ତ୍ରବାଦ୍ୟ ନ ଶିଖାଇ କେବଳ ଭାବର ଓ ରସର ପୂର୍ଣ୍ଣତା ସାଧନ ପାଇଁ ବୋଲିବାର ଭଙ୍ଗୀ ଓ ଛାନ୍ଦମାନଙ୍କର ନିୟମ ଶିକ୍ଷା ଦେବେ । ତହିଁ ଆରଦିନୁ ଅନ୍ୟତ୍ର ସେ କ୍ଲାସ ଖୋଲିଲା । ମୁଁ ତାହାର ଜଣେ ଛାତ୍ର ଥିଲି । ସେ ତିନିମାସ ପାଇଁ ଆସିଥିଲେ । ଆମ୍ଭମାନଙ୍କୁ କେତେକ ସଙ୍ଗୀତ ଏବଂ ସମସ୍ତ ଛାନ୍ଦ ସେ ଶିଖାଇ ଦେଇଥିଲେ । ବର୍ତ୍ତମାନ ଗାୟକମାନେ ବିକୃତ ଭାବେ ଉତ୍କଳ ଛାନ୍ଦ-ସାହିତ୍ୟର ଗାନ-ବିଜ୍ଞାନ ଗଢୁଥିବାର ଦେଖି କଷ୍ଟ ଲାଗୁଅଛି । ମାତ୍ର ବର୍ତ୍ତମାନର ପ୍ରଣାଳୀ ଯେ ଶ୍ରୁତି ସୁଖକର ଅଥଚ ରସାନୁସାରିଣୀ ନୁହେଁ ତାହା କେହି ବୁଝୁନାହାନ୍ତି । ଆପନ୍ନା ଗାଇବା ରୀତି ରସାଭିବ୍ୟଞ୍ଜକ ଥିଲା ।"

ଆଉ ଗୋଟିଏ ଘଟଣା ତାଙ୍କ ଅନନ୍ୟ ପ୍ରତିଭାର ପରିଚୟ ଦିଏ । ପାରଳା ମହାରାଜାଙ୍କ ସାଂଗରେ ଆପନ୍ନା ପାଣିଗ୍ରାହୀ କଲିକତା ଯାଆନ୍ତି । ମହାରାଜାଙ୍କ ସବୁବେଳେ

ଗୋଟିଏ ସାଲୁନ ରିଜର୍ଭ ଥାଏ । ସେ ମାନ୍ଦ୍ରାଜ ଗଲେ ପଲାସା ଷ୍ଟେସନରେ ଚଢ଼ନ୍ତି । କଲିକତା ଗଲେ ମଧ୍ୟ ସେଇଠୁ ଯାଆନ୍ତି ମାତ୍ର ରିଜର୍ଭ କରାଯାଏ ଏ ମୁଣ୍ଡରୁ ସେମୁଣ୍ଡ ଯାଏ । ତତ୍‌କାଳୀନ ବେଙ୍ଗଲ ନାଗପୁର ରେଲୱେ କମ୍ପାନୀ ତାଙ୍କୁ ଏ ସୁବିଧା ଦେଇଥାଏ । କାରଣ ମହାରାଜା ଭାରତବର୍ଷରେ ଏକମାତ୍ର ଜମିଦାର ଯାହାଙ୍କର ନିଜର ରେଳୱେ ଥାଏ-ନଉପଡ଼ା ଗୁଣୁପୁର ପାରଳାଖେମୁଣ୍ଡି ଲାଇଟ ରେଲୱେ । ଆପନ୍ନା ପାଣିଗ୍ରାହୀ କଲିକତାରେ ଓଡ଼ିଆ ସଙ୍ଗୀତ ଗାଆନ୍ତି ମହାରାଜା ଓ ତାଙ୍କ ଦର୍ଶନାର୍ଥୀ ଓ ବନ୍ଧୁମାନଙ୍କର ନିମିତ୍ତ । ଅପନ୍ନା ଅନ୍ଧ, ତେଣୁ ତାଙ୍କ ସାଙ୍ଗରେ ଗୋଟିଏ ଭୃତ୍ୟ (ବାରିକ) ସବୁ ସମୟରେ ରହିବାର ମହାରାଜା ବ୍ୟବସ୍ଥା କରିଥାଆନ୍ତି । ନିଜର ଓ ସହଯୋଗୀ ବେହେଲାରେ ସୂର୍ଯ୍ୟନାରାୟଣ ଓ ତବଲାରେ ରଙ୍ଗନାୟକଙ୍କର ସମସ୍ତ ବ୍ୟବହାର ଯନ୍ତ୍ର, ତବଲ, ବେହେଲା, ହାରମୋନିୟମ୍ ଆଦି ଆପନ୍ନା ନିଜେ ଖରିଦ କରିଥାଆନ୍ତି । ଥରେ ସେ ମହାରାଜାଙ୍କ ଗହଣରେ କଲିକତା ଯାଇଥାନ୍ତି । ଯାତ୍ରା ସମୟରେ ପଦବ୍ରାଜରେ ତାଙ୍କର ପ୍ରଧାନ ଆଶ୍ରୟ ଚ଼ିତାଏ ଉଚ୍ଚର ଲାଠି । କଲିକତା ଅଧୁନା ରବିନ୍ଦ୍ର ସରଣୀରେ Esplanade ନିକଟରେ ସେତେବେଳେ ପ୍ରଧାନ ହାରମୋନିୟମ ନିର୍ମାତା Dwarkinson ଙ୍କ ଦୋକାନ ଥାଏ । ଦ୍ୱାରକାନାଥ ସେନ ନିଜେ ଜଣେ ବାଦ୍ୟଯନ୍ତ୍ର ନିର୍ମାତା ଥାଇ ପ୍ରତିଷ୍ଠା ଲାଭ କରି ପରବର୍ତ୍ତୀ କାଳରେ ସାହେବୀ ପରମ୍ପରା ଅନୁକରଣ କରି ନିଜର କମ୍ପାନୀ ନାମ ଦ୍ୱାରକିନସନ ରଖିଥାନ୍ତି । ଆପନ୍ନାଙ୍କର ଗୋଟିଏ ହାରମୋନିୟମ ଖରିଦ କରିବାରେ ଥାଏ, ସେ ତାହା ମାଗିଲେ । ଯନ୍ତ୍ର ଆସିଲା । ବିକ୍ରେତା ସ୍ୱର କେମିତି ବାହାରୁଛି ଦେଖାଇଲେ । ଆପନ୍ନା ଯନ୍ତ୍ରରେ ସ୍ୱର ଆସିବା ଠିକ୍ ହୋଇନାହିଁ ବୋଲି ଦର୍ଶାଇଲେ । ଆଉ ଗୋଟିଏ ହାରମୋନିୟମ ଆସିଲା । ତାହା ମଧ ତ୍ରୁଟିଯୁକ୍ତ । ୩ୟଟି ସେମିତି । ୪ର୍ଥଟି ମଧ ସେମିତି । ବେହେଲା ବଜାଇବାବେଳେ ସୁର ବନ୍ଧାଯାଏ ମାତ୍ର ହାରମୋନିୟମର ନିର୍ମାତା ବାନ୍ଧିଥାଆନ୍ତି ସ୍ୱର, ଯାହା ତ୍ରୁଟିପୂର୍ଣ୍ଣ ଓ ତାହା ନିର୍ମାଣଜନିତ । ଆପନ୍ନା ନିଜ ସାଥୀ ଜଣକୁ ଏହା ଓଡ଼ିଆରେ କହିବା ବଙ୍ଗବାସୀ ବିକ୍ରି ସହକାରୀ ଶୁଣୁଥାଆନ୍ତି । ଚ଼ାରିଥର ତ୍ରୁଟି ଦେଖାଇବା ପରେ ସେ ରାଗିଯାଇ ବଙ୍ଗଳାରେ କହିଲେ କୁଆଡୁ ଗୋଟିଏ ଓଡ଼ିଆ ମୂର୍ଖ ଆମର ଭୁଲ ଦେଖାଉଛି । ଜାତିନିନ୍ଦା ଆପନ୍ନାଙ୍କୁ ବାଧିଲା । ସେ ଧରିଥିବା ଠେଙ୍ଗା ଉଚ୍ଚାଇ ପ୍ରହାର ଉଦ୍ୟତ ସମୟରେ ସୋ କେସର କାଚ଼ରେ ଲାଠିଟି ବାଜି ଦି ଚାରିଟି ବାଦ୍ୟଯନ୍ତ୍ର ଧମାଧମ ଖସିପଡିଲା । କାଚ଼ ମଧ ଶବ୍ଦକରି ଭାଙ୍ଗିଗଲା । ମାଡ଼ରୁ ମଧ ବିକ୍ରୟ-ସହକାରୀ ରକ୍ଷା ପାଇଲେ । ଶବ୍ଦ ଓ 'ଧର'

'ଧର' ରବ ଶୁଣି ଦ୍ୱାରକାନାଥ ନିଜେ ଆସି ଘଟଣା ବୁଝିଲେ । ସେ ନିଜେ ଉଚ୍ଚକୋଟିର ବାଦ୍ୟଯନ୍ତ୍ର ନିର୍ମାତା; ଖ୍ୟାତି ସମ୍ପନ୍ନ କାରିଗର । ତାଙ୍କୁ ଆପନ୍ନା ସ୍ୱର ସଙ୍ଗୀତର ତ୍ରୁଟି ବୁଝାଇ ଦେଲେ । ସେ ବୁଝିଗଲେ । ଯନ୍ତ୍ର ପରୀକ୍ଷା କଲେ । ଦେଖିଲେ ଆପତ୍ତି ଯୁକ୍ତିସଂଗତ ଓ ଗ୍ରହଣୀୟ, ନିର୍ମିତ ବାଦ୍ୟଯନ୍ତ୍ର ନିଶ୍ଚିତରେ ଦୋଷଯୁକ୍ତ । ସେ ଭୁଲ ସ୍ୱୀକାର କଲେ । ନିଜର କ୍ଷତି ନିଜେ ସହିଲେ । ଗୋଟିଏ ହାରମୋନିୟମ ସଜାଡ଼ି ତାକୁ ଆପନ୍ନାଙ୍କୁ ତାଙ୍କ ସ୍ୱର ସଂଯୋଜନା ଦକ୍ଷତାର ପ୍ରମାଣ ସ୍ୱରୂପ ଉପହାର ଦେଲେ । ବହୁଦିନ ଯାଏ ଏହା ଆପନ୍ନାଙ୍କର ଚିରସଙ୍ଗୀ ଥିଲା । ବହୁ ଦରବାର ଓ ସଂଗୀତ ସଭାରେ ସେ କେବଳ ଏହି ଯନ୍ତ୍ର ବ୍ୟବହାର କରି ନିଜର ସଙ୍ଗୀତ ପରିବେଷଣ କରୁଥିଲେ ।

ମହାରାଜା ବୁଝାଉଥାନ୍ତି ମାତ୍ର ନିଜ ସ୍ୱର ଗ୍ରାମଫୋନ ରେକର୍ଡରେ ଗ୍ରହଣ ନିମିତ୍ତ ଆପନ୍ନା ରାଜି ହେଉ ନଥାନ୍ତି । ପ୍ରୟାଗ ସଙ୍ଗୀତ ସଭାରେ ସ୍ୱୀକୃତି ପାଇଲା ପରେ ମହାରାଜା ଥରେ ଏ କଥା କଲିକତାରେ ସେନୋଲା ଗ୍ରାମଫୋନ ରେକର୍ଡ କମ୍ପାନୀର ମ୍ୟାନେଜରଙ୍କୁ ଜଣାଇଲେ । ହିଜ ମାଷ୍ଟରସ ଭଏସ କମ୍ପାନୀ ଭାରତର ସର୍ବଶ୍ରେଷ୍ଠ ସୁପ୍ରସିଦ୍ଧ ଗ୍ରାମଫୋନ ରେକର୍ଡର ନିର୍ମାତା । ସେମାନେ ୧୯୩୩ ମସିହାରେ ନିମାଇଁଚରଣ ବାଣୀକଣ୍ଠଙ୍କର 'ବିତଳକୁ ଆଲିଙ୍ଗନ' ରେକର୍ଡ଼ ପ୍ରସ୍ତୁତ କରିଥିଲେ । ଏ ଘଟଣା ତାହା ଆଗରୁ ବୋଧହୁଏ ପ୍ରଥମ ଓଡ଼ିଆ ରେକର୍ଡ଼ । ମହାରାଜାଙ୍କର କଲିକତା ସଙ୍ଗୀତ ଆସରରେ ତାଙ୍କର ଓ ତାଙ୍କର ଅତିଥିମାନଙ୍କର ମନୋରଞ୍ଜନ ନିମିତ୍ତ ଆପନ୍ନା ଗୀତ ବୋଲିଥାନ୍ତି । ସେନୋଲାର ମେନେଜର ମହାରାଜଙ୍କର ସଙ୍ଗୀତ ଆସରରେ ଯନ୍ତ୍ର ଖଞ୍ଜି ତାଙ୍କର ଦୁଇଟି ଗୀତ ରେକର୍ଡ କରାଇଦେଲେ । ଏହା ଆପନ୍ନାଙ୍କର ଅଲକ୍ଷ୍ୟରେ ହୋଇଥାଏ । ଗୀତ ଦିଓଟିରୁ ଗୋଟିଏ ବୃନ୍ଦାବନଚନ୍ଦ୍ର ପାଣିଗ୍ରାହୀଙ୍କର 'ରାଧା ଧର ସୁମଧୁରା' ସଂପୂର୍ଣ୍ଣ ଗୀତଟି ହେଲା-

ରାଧାଧର ସୁମଧୁରା,
ଅମୃତ ରସିକ ମୁରଲୀଧରା ।
ହେ ହରି ! ହେ ମାର ସୁନ୍ଦର
ସୁକୁମାର ବ୍ରଜ ରାଜକୁମାର
ସୁରନାରୀ ମନୋହରା ।
ନନ୍ଦ ହୃଦୟାନନ୍ଦ ସୁରଭିବୃନ୍ଦ
ଗୋବିନ୍ଦ ଗୋପାଳ ତବ ଶ୍ରୀପଦ ସୁରା-

ସୁର ମୁନୀନ୍ଦ୍ର ନତ ମୁରାରି
ପରାତ୍ପର ପୁଣ୍ୟ ପୁରୁଷ ।

ଅନ୍ୟପଟେ ଗୋପାଳକୃଷ୍ଣଙ୍କର 'ମୋ ନିଦ କେଣେ ଦେଲୁ ଭାଙ୍ଗିରେ' । ରେକର୍ଡ ହେବା ପରେ ମହାରାଜା ଆପନ୍ନାଙ୍କୁ ଗୀତ ଦିଓଟି ଶୁଣାଇଲେ । ତା'ପରେ ତାଙ୍କର ଆଉ କେତେଗୋଟୀ ଗୀତ ଯଥା ଗୌରହରି ପରିଚ୍ଛାଙ୍କର 'ହୋଇଥାରେ ସଜ କୁଞ୍ଜକୁ ଯିବୁ ପରା' ଅଭିମନ୍ୟୁ ସାମନ୍ତସିଂହାରଙ୍କର 'ରାଧା ଧରି ସଖି କର' ଏମିତି ମୋଟରେ ଚାରିଗୋଟି ରେକର୍ଡ ପ୍ରସ୍ତୁତ କରାଯାଇଥିଲା । ମାତ୍ର ଆପନ୍ନାଙ୍କର ମନରେ ଦୃଢ ବିଶ୍ୱାସ ଥିଲା, ଯଦି କେହି ତାଙ୍କର ସ୍ୱର ବାନ୍ଧିଦିଏ ତାଙ୍କର ପରମାୟୁ ଶେଷ ହୋଇଯିବ । ସେଠାରୁ ଫେରି ତାଙ୍କର ଶାରୀରିକ ଓ ମାନସିକ ଭାରସାମ୍ୟ ନଷ୍ଟ ହେଲା । ଏହାର ଅଳ୍ପଦିନ ପରେ ୧ ୯୩୯ ମସିହା ଫେବୃଆରୀ ମାସରେ ପାରଳାଖେମୁଣ୍ଡିରେ ସେ ଶେଷ ନିଶ୍ୱାସ ତ୍ୟାଗ କଲେ ।

'କାବ୍ୟ ସଞ୍ଚୟନ'ରେ କବି ବୈକୁଣ୍ଠନାଥ ତାଙ୍କ ବିୟୋଗରେ 'ବନ୍ଦି ଅପର୍ଣ୍ଣା' କବିତାରେ ଯଥାର୍ଥରେ ଲେଖିଯାଇଛନ୍ତି (ବୈକୁଣ୍ଠନାଥ ଗ୍ରନ୍ଥାବଳୀ, ପୃଷ୍ଠା-୪୦୧)

**ବନ୍ଦୀ ଅପର୍ଣ୍ଣା**

(ପାରଳାର ସ୍ୱର୍ଗତ ଅନ୍ଧ ଗାୟକ)

ଦରିଦ୍ର ଦେଶର ଶିଳ୍ପୀ ଦୃଷ୍ଟି ଅନ୍ତରାଳେ
ଜନମି ମୁଦିଲା ଆଖି ଲେଖାଥିଲା ଭାଲେ
ଲେଖିଲା ବା ନାହିଁ କାଳ ଅମର ଅକ୍ଷରେ
ତୁମ କୀର୍ତ୍ତି ଗାଥା କେହି ନ ପୁଛିବେ ଥରେ ।
ନ କରିବେ ଭ୍ରମେ ଯାତ୍ରୀ ଅଙ୍ଗୁଳି ନିର୍ଦ୍ଦେଶ
ତୁମରି ସମାଧି ଚାହିଁ ଭସ୍ମ ଅବଶେଷ ।
କ୍ଷଣକ ମୂର୍ଚ୍ଛନା ତୁମେ ପାରି ନ ସମଜି
ଜୀବନ ରହସ୍ୟ, ମୌନ ଗଲ ହଜି ।

ଲାଭହାନି ସେ ଜୀବନେ କରିବା ଗଣନା-
କିବା ଫଳ ? ତିଳେ ମୋତେ ପଡୁନାହିଁ ଜଣା ।
ନୀରବେ ଏକଇ କଥା ନିଭେ ନାହିଁ ମନେ-
ଅନ୍ଧାରେ ଆଲୋକ ଅମୃତ ଏ ପ୍ରାଣ

ସୁଲଭ ଆନନ୍ଦେ ତହିଁ ପରମ ପ୍ରମାଣ ।

(୨)

କାନନ ମଲ୍ଲିକା ଅବା ଶ୍ମଶାନ ତୁଳସୀ
କାବ୍ୟକୁଞ୍ଜେ କବିକୁଳ କହୁଥାନ୍ତୁ ବସି,
ମୋ ନୟନେ ମୋ କଳ୍ପନା ନୋହୁ ପଛେ ଘେନା
ରୁଧିର ଆପ୍ଲୁତ ଆତ୍ମା ଭଗ୍ନଜାନୁ ସେନା !
ଯୁଝିଛି ଅକ୍ଳାନ୍ତ ପ୍ରାଣେ ଲଭିନାହିଁ ଖ୍ୟାତି
ଲକ୍ଷ ନିପୀଡନେ ଥରେ ଦମିନାହିଁ ଛାତି ।
ନଷ୍ଟେଷଣ ବ୍ୟଥା କ୍ଷତ ସେ ବୀଣା ଝଙ୍କାରେ,
ହୋଇଛି ସୁନ୍ଦର ଇନ୍ଦ୍ରଧନୁ ପରକାରେ ।
ଦୈନ୍ୟ ବରି କଲ ତାକୁ ଗୌରବ ମଣ୍ଡିତ
ସୁନ୍ଦର ପରଶେ ତବ କାଳିମା କୁତ୍ସିତ ।

ନିଃସ୍ୱ ବନ୍ଦୀ ଧନ୍ୟ ତୁମେ ରାଜଦରବାରେ
ଗାଇ ରାଜପ୍ରଶସ୍ତି ସେ ଜୀର୍ଣ୍ଣ ବୀଣା ତାରେ ।
କି ଭୟ ଭାବନା ? ସୁଖେ ମୁଦ ହେ ନୟନ
ଧନମାନ ଖ୍ୟାତି ଦେଖୁ ଆପଣା ସ୍ୱପନ ।
ଦାରିଦ୍ର୍ୟ ଅଶ୍ରୁରେ ବନ୍ଦୀ ତବ ଅଭିଷେକ
କ୍ଷୁଣ୍ଣ କରିନାହିଁ ମାତ୍ର ତବ ରାଜଟେକ
ଅପୂର୍ବ ମୂର୍ଚ୍ଛନା ତାନ ସେହି ଜୀର୍ଣ୍ଣତାରେ
କୌମୁଦି ବିହାର ପ୍ରାଣ ଅଶ୍ରୁ ପାରାବାରେ ।

ନୀରବେ ରହିଛି ଶିରେ ପୂର୍ଣ୍ଣ ରାଜାଦେଶ
ଚିତ୍ତେ ବୃନ୍ଦାବନେ ନିତ୍ୟ ମାଧୁର୍ଯ୍ୟ ଆବେଶ
ସେହି ତବ ପୁରସ୍କାର ଜୀବନ ଅନ୍ଧାରେ
ନୋହୁ ତବ ମୂଲ୍ୟ ଘେନା ମର୍ତ୍ତ୍ୟ ଦରବାରେ ।
ଧନ୍ୟ ସେହି ମାଟି ଯାର ଅଧିବାସୀ–
ମରେ ଦେଶେ କେବେ ଆତ୍ମା ଉପବାସୀ,
ଯେ ଦେଶେ ଦାରିଦ୍ର୍ୟ ଦୀକ୍ଷା ପରମ ପ୍ରମାଣ,

ଯହିଁ ନିତ୍ୟ ଲଭେ ନିଃସ୍ୱ ରାଜାର ସମ୍ମାନ,
ସେ ଦେଶେ ନମସ୍ୟ ତୁମେ । ତବ ଅବସାନ
ଅଶ୍ରୁ ଅନ୍ଧକାରେ ଆଣେ ଆଲୋକ-ସନ୍ଧାନ ।



# ଦେଶପ୍ରିୟ ଆପନ୍ନା ପଣ୍ଡା

ଆପନ୍ନା ପଣ୍ଡାଙ୍କର ଜନ୍ମ ୧୮୬୪ ମସିହାରେ ପାରଳାଖେମୁଣ୍ଡି ସହରରେ । ତାଙ୍କର ଶିକ୍ଷା ଓ ବାଲ୍ୟକାଳ ଏହି ସହରରେ ଅତିବାହିତ ହୁଏ । ମାଟ୍ରିକ୍ ପାସ୍ କରି ୧୮୮୫ ମସିହାରେ ସେ ପାରଳାଖେମୁଣ୍ଡି ସହରରେ ଓଡ଼ିଆ ଛାତ୍ରମନଙ୍କ ସକାଶେ ଗୋଟିଏ ପ୍ରାଇଭେଟ ସ୍କୁଲ ବସାଇଲେ । ତହିଁରେ ମିଡ଼ିଲ ସ୍କୁଲ ପର୍ଯ୍ୟନ୍ତ ଛାତ୍ରମାନଙ୍କୁ ପଢ଼ିବାକୁ ହେଉଥିଲା । ମାତ୍ର ୧୮୯୭ ମସିହାରେ ଟେଲର ସାହେବ ଓ ଶ୍ୟାମସୁନ୍ଦର ରାଜଗୁରୁଙ୍କ ପରାମର୍ଶରେ ସମସ୍ଥାନ (ଜମିଦାର) ତରଫରୁ ଗୋଟିଏ ହାଇସ୍କୁଲ ପ୍ରତିଷ୍ଠା କରାଯାଏ । (୧୮୮୪ ବେଳକୁ ହାଇସ୍କୁଲରେ ପ୍ରତିଷ୍ଠିତ ଥିବା .........ତଥ୍ୟ ପାରଳାଖେମୁଣ୍ଡି ଇତିହାସ)ମାଟ୍ରିକ୍ ପାସ କରିଥିବା ଯୋଗୁଁ ଆପନ୍ନା ପଣ୍ଡା ସେଠାରେ ପ୍ରଥମେ ଶିକ୍ଷକଭାବରେ ନିଯୁକ୍ତି ପାଇଥିଲେ । ପରେ ସେ ରାଜକୁମାର ଶ୍ରୀକୃଷ୍ଣଚନ୍ଦ୍ରଙ୍କର ଗୃହ ଶିକ୍ଷକ ଥିଲେ । ଶ୍ୟାମସୁନ୍ଦର ଓ ଅନ୍ୟମାନଙ୍କର ସହିତ ମିଶି ସେ ପାରଳାଖେମୁଣ୍ଡି ଉତ୍କଳ ହୈତିଷିଣୀ ସମାଜ ପ୍ରତିଷ୍ଠା କରିଥିଲେ । ୧୮୮୬ ମସିହାରେ ଏହି ସମାଜରେ ସେ ଗଞ୍ଜାମ ଜିଲ୍ଲାର ପ୍ରତି ସରକାରୀ ଅଫିସରେ ତେଲୁଗୁ ଭାଷା ବ୍ୟବହୃତ ହେବା ନିମିତ୍ତ ଜିଲାର ଅଧିବାସୀମାନଙ୍କଠାରୁ ଏକ ଲକ୍ଷ ସ୍ୱାକ୍ଷର ସଂଗ୍ରହ କରି ମାନ୍ଦ୍ରାଜ ସରକାରଙ୍କୁ ଏକ ଆବେଦନ ପତ୍ର ଦେବାକୁ ଏକ ପ୍ରସ୍ତାବ ଉତ୍ଥାପନ କରିଥିଲେ । ଏହି ପ୍ରସ୍ତାବଟି ଗୃହୀତ ହୋଇ ତଦନୁସାରେ ଏକଲକ୍ଷ ସ୍ୱାକ୍ଷର ସଂଗ୍ରହ କରାଗଲା ଓ ତିନିବର୍ଷର କଠିନ ଉଦ୍ୟମ ପରେ ୧୮୮୯ ମସିହାରେ ମାନ୍ଦ୍ରାଜର ଗଭର୍ଣ୍ଣର ଲର୍ଡ କାନୋମରା କାଞ୍ଚୁଲି (ସୋମପେଣ୍ଟ) ଠାରେ ଦରବାର କରୁଥିବା ସମୟରେ ଗଞ୍ଜାମ କଲେକ୍ଟର ହାରସ ପାଲଙ୍କ ଉପସ୍ଥିତିରେ ଏହି ଆବେଦନ ପତ୍ରଟି ତାଙ୍କୁ ଦିଆଯାଉଥିଲା । ତଦନୁସାରେ ୧୮୯୦ ଜନୁଆରୀ ମାସରୁ ଜିଲ୍ଲାର ସବୁ ସରକାରୀ ଅଫିସରେ ଓଡ଼ିଆ ଭାଷା ପ୍ରଚଳିତ ହେଲା । ପାରଳାଖେମୁଣ୍ଡି ଜମିଦାରିର ବିଭିନ୍ନ ବିଭାଗରେ ଆପନ୍ନା କାର୍ଯ୍ୟ କରିଥିଲେ । ତାଙ୍କର ଯତ୍ନ ଓ ଟେଲର ସାହେବଙ୍କ ଉଦ୍ୟମ ଏବଂ ରାଜା ଗୌରଚନ୍ଦ୍ର ଗଜପତିଙ୍କର ଶ୍ରଦ୍ଧା ଫଳରେ ୧୮୯୬ ମସିହାରେ ମାନ୍ଦ୍ରାଜର ଗଭର୍ଣ୍ଣର ଲର୍ଡ ୱେନଲକ୍ ପାରଳାଖେମୁଣ୍ଡି କଲେଜ ଉଦ୍‌ଘାଟନ କରିଥିଲେ । ପାରଳାମହାରାଜାଙ୍କ ବୃତ୍ତିଭୋଗୀ ଥାଇ ଆପନ୍ନା ତାଙ୍କ ଛାପାଖାନାରେ ମେନେଜର ଥିଲେ । ୧୯୧୭ ମସିହାରେ ସେ ସ୍ୱଲିଖିତ 'ନବ ଗଞ୍ଜାମ' ପୁସ୍ତିକା

ପ୍ରକାଶ କରିଥିଲେ । ୬୦ପୃଷ୍ଠାର ଏହି ପୁସ୍ତିକା ପୁରୀ ଜଗନ୍ନାଥ ପ୍ରେସରେ ମଧୁସୂଦନ ପଣ୍ଡାଙ୍କ ଦ୍ୱାରା ମୁଦ୍ରିତ ହୋଇ ପ୍ରକାଶିତ ହେଲା । ଏହାର ମୂଲ୍ୟ ଚ଼ରିଅଣା ଥିଲା । ଉତ୍କଳରତ୍ନ ନୀଳମଣି ବିଦ୍ୟାରତ୍ନଙ୍କ ଅନୁରୋଧରେ ସେ ଏହା ଲେଖାଥିବାର ବ୍ୟକ୍ତ କରିଅଛନ୍ତି ଓ ଏହା ତା ୫.୬.୧୯୧୭ରେ ଜଷ୍ଟିସ ଦଳର ନେତା ମାନ୍ଦ୍ରାଜର ମନ୍ତ୍ରୀ ହାଇକୋରର୍ଟ ଓକିଲ ଶ୍ରୀମାନ ପରଶୁରାମ ପାତ୍ରଙ୍କ ପବିତ୍ର ନାମରେ ଉତ୍ସର୍ଗ କରାଯାଇଥିଲା । ୮ଗୋଟି ପରିଚ୍ଛେଦରେ ସଂପୂର୍ଣ୍ଣ ଏହି ପୁସ୍ତକରେ ଗଞ୍ଜାମ ଜିଲ୍ଲାର ବହୁ ଜ୍ଞାତବ୍ୟ ତଥ୍ୟ ଦିଆଯାଇଥିଲା । ପ୍ରଥମ ପରିଚ୍ଛେଦରେ ପ୍ରଥମାବସ୍ଥାରେ ୨ୟରେ ମହମ୍ମଦମାନଙ୍କର ପରିପାଳନ, ୩ୟରେ ଇଂରେଜ ଗଭର୍ଣ୍ଣମେଣ୍ଟଙ୍କ ପ୍ରବେଶ, ୪ର୍ଥରେ ପାରଳାର ଉତ୍କଳ ହିତୈଷିଣୀ ସମାଜ, ୫ମରେ ଗଞ୍ଜାମର ଉନ୍ନତି, ୬ଷ୍ଠରେ ପାରଳାରେ ବିଭ୍ରାଟ, ୭ମରେ ଉତ୍କଳ ଭାଷା ଓ ୮ମ ପରିଚ୍ଛେଦରେ ଗଞ୍ଜାମର ରାଜନ୍ୟବର୍ଗ (ଯଥା ପାରଳା, ବୃହଦ୍‌ଖେମଣ୍ଡି, ଧରାକୁଟ, ସୁରଙ୍ଗୀ, ସେରଗଡ, ଟିକାଲି, ନନ୍ଦିଗ୍ରାମ, ଚିକିଟି, ବରଗଡ. ଖଲ୍ଲିକୋଟ, ତରଳା ଓ ଜରଡା ) ବର୍ଣ୍ଣନା କରାଯାଇଛି ।

୧୮୬୨ ମସିହାରେ ସେ ଉତ୍କଳ ସାହିତ୍ୟର ଇତିହାସ ରଚନା କଲେ । ଏହାର ୨ୟ ଭାଗ "କବି ଜୀବନୀ" ବ୍ରହ୍ମପୁର ଆଶା ପ୍ରେସରେ ଶଶିଭୂଷଣ ରଥଙ୍କ ଦ୍ୱାରା ମୁଦ୍ରିତ ହୋଇ ଏକ ଟଙ୍କା ମୂଲ୍ୟରେ ବିକ୍ରି ହେଉଥିଲା । ମୁଖବନ୍ଧରେ ଦର୍ଶାଯାଇଥିଲା ଯେ ଗ୍ରନ୍ଥ ୩ ଭାଗରେ ବିଭକ୍ତ । ପୌରାଣିକ ସାରଳାଦାସଙ୍କ ଠାରୁ ଉପେନ୍ଦ୍ର ଭଞ୍ଜଙ୍କ ପର୍ଯ୍ୟନ୍ତ । କାବ୍ୟ-କବି ଶିରୋମଣି ଉପେନ୍ଦ୍ର ଭଞ୍ଜଙ୍କ ଠାରୁ କବି ରାଧାନାଥଙ୍କ ପର୍ଯ୍ୟନ୍ତ । କବିପ୍ରବର ରାଧାନାଥ ରାୟଙ୍କ ଠାରୁ ଅନୁବାଦ ବା ଉପନ୍ୟାସ ଯୁଗର ସୃଷ୍ଟି । ପୁସ୍ତକଟି ତା ୨୧.୧.୨୫ ରିଖରେ ପାରଳାଧୀଶ୍ୱର ଶ୍ରୀ କୃଷ୍ଣଚନ୍ଦ୍ର ଗଜପତିଙ୍କ ନାମରେ ଉତ୍ସର୍ଗୀକୃତ ଜଣାଯାଏ, ଉତ୍କଳ ସାହିତ୍ୟର ଇତିହାସ ପ୍ରଥମ ଭାଗ ଏହା ପୂର୍ବରୁ "ଛାନ୍ଦ ଚନ୍ଦ୍ରିକା" ନାମରେ ହାଇକୋର୍ଟ ଓକିଲ ପରଶୁରମ ପାତ୍ର B.A.B.Lଙ୍କ ଆର୍ଥିକ ସହାୟତରେ ୧୯୨୧ ମସିହାରେ ପ୍ରକାଶିତ ହୋଇଥିଲା । ଏହି ପୁସ୍ତକ ପ୍ରକାଶନରେ ଲେଖକଙ୍କର ପରିଶ୍ରମ ଅବଲୋକନ କରି ତାହାଙ୍କ ଉତ୍ସାହ ବର୍ଦ୍ଧନ ନିମିତ୍ତ ସାହିତ୍ୟ ପ୍ରେମିକ ମୟୂରଭଞ୍ଜ ମହାରାଜା ଏକଶତ ଟଙ୍କା ଧରାକୋଟ ଅଧୀଶ୍ୱର ଏକଶତ ଟଙ୍କା, ମଞ୍ଜୁଷା ନରପତି ଅର୍ଦ୍ଧଶତ ଟଙ୍କା ଅନୁଗ୍ରହ ପୂର୍ବକ ପ୍ରଦାନ କରିଥିବା ବିଷୟ ଲେଖକ ଭୂମିକାରେ ଉଲ୍ଲେଖ କରିଅଛନ୍ତି । ପୁସ୍ତକ ତିନିଗୋଟି ବର୍ତ୍ତମାନ ଦୁଷ୍ପ୍ରାପ୍ୟ । ଆପନ୍ନା ୧୯୨୬ ମସିହାରେ ପାରଳାରେ ଗଜପତି ପ୍ରେସରେ ଗୌରହରି ପରିଚ୍ଛାଙ୍କ ପଦ୍ୟାବଳୀ

ସଂପାଦନ କରି ମହାରାଜାଙ୍କର ଆନୁକୂଲ୍ୟରେ ପ୍ରକାଶ କରିଥିଲେ ।

ଏହାବ୍ୟତୀତ ଲୋକଗୀତ ସଂଗ୍ରହ ଦିଗରେ ଆପନ୍ନାଙ୍କର ଉଦ୍ୟମ ପ୍ରଶଂସାର୍ହା । ସେ ଢଗଢମାଳି ସଂଗ୍ରହ ଓ ତତ୍ତ୍ୱବୋଧିନୀର ସଂଗ୍ରାହକ ଓ ପ୍ରକାଶକ । ଦୀର୍ଘ ଉଦ୍ୟମ ପରେ ସେ ୧୯୦୫ ମସିହା ସୁଦ୍ଧା ଏହି ଢଗମାନ ସଂଗ୍ରହ କଲେ, ମାତ୍ର ବିନା ଟିପ୍ପଣୀରେ ତାହା ପ୍ରକାଶ କରିଦେଲେ ମନୋମୁଗ୍ଧକର ହେବ କି ନାହିଁ ବିଚାର କରି ସେମାନଙ୍କର ମୂଳ ତତ୍ତ୍ୱ ବିବେଚ଼ନାରେ ଦୀର୍ଘ ୧୮ ବର୍ଷ ବିତାଇ ଦେଲେ । ଶେଷରେ ୧୯୩୧ ମସିହାରେ ଏହି ୩୨୦ ଗୋଟି ସଂଗୃହୀତ ଢଗ ପାରଳାଖେମୁଣ୍ଡିର ଶ୍ରୀ ଗଜପତି ପ୍ରେସରେ ଶ୍ରୀ ବିନାୟକ ପଟ୍ଟନାୟକଙ୍କ ଦ୍ୱାରା ମୁଦ୍ରିତ ହୋଇ ପ୍ରକାଶ ପାଇଥିଲା । ଏହାର ମୂଲ୍ୟ ଆଠଅଣା ରଖାଯାଇଥିଲା । ଇଂରେଜ ଲୋକପ୍ରିୟ ଇସଫ ଗଳ୍ପମାନ ମନେ ପଡିବାରୁ ସେ ପ୍ରତି ଢଗର ଅର୍ଥଭାବ, ପ୍ରଚଳିତ ବା ରଚ଼ିତ ଗଳ୍ପର ତାତ୍ପର୍ଯ୍ୟରେ ବୁଝାଇଥିଲେ । ଅକ୍ଷର ନିୟମରେ ସଜ୍ଜିତ ନ ହୋଇଥିଲେ ମଧ ଢଗର ତତ୍ତ୍ୱ ହୃଦୟଙ୍ଗମ କରିବା ଲାଗି ଏହା ଖଣ୍ଡିଏ ଉପାଦେୟ ପୁସ୍ତକ ବୋଲି ପରବର୍ତ୍ତୀ କାଳରେ ଓଡ଼ିଶାର ବିଖ୍ୟାତ ଲୋଗଗୀତ ସଂଗ୍ରାହକ ଲୋକରତ୍ନ ଡକ୍ଟର କୁଞ୍ଜବିହାରୀ ଦାସ ଇଉନିଭରସିଟି ଗ୍ରାଣ୍ଟ କମିଶନର ଅର୍ଥାନୁକୂଲ୍ୟରେ ପ୍ରକାଶିତ ତାଙ୍କର ଲୋକବାଣୀ ସଞ୍ଚୟନ ଗ୍ରନ୍ଥରେ ସ୍ୱୀକାର କରିଅଛନ୍ତି ଉଦାହରଣ ସ୍ୱରୂପ :-

ଓଡ଼ିୟା ଢଗଢମାଳିକା

ଆଗତ କୁହା । ପର ଗାଈ ଦୁହାଁ
ଆଗ ଚଲା । ଦୀପ ପେଲା ।।

ଅର୍ଥ-ନପଚାରୁଣୁ କେହି ପ୍ରଥମେ କହିବା ଭଲ ନୋହେ, ଅନ୍ୟର ଆଦେଶ ବିନା କାହା ଗାଭୀ ଦୋହନ କରିବା ଅନୁଚିତ, କେହି କୌଣସି କାର୍ଯ୍ୟରେ ଅଗ୍ରଣୀ ହେବନାହିଁ, ତୈଳ ନଥିବା ଦୀପ ସହିତ ବତୀ ଠେଳିଲେ, ସେହି ବତୀ ନଷ୍ଟ ହୁଏ । ଅତଏବ ଦୀପ ଜଳିବା ନିମନ୍ତେ ତୈଳ ଦେବା ଆବଶ୍ୟକ । ତୈଳ ନ ଦେଲେ, ଠେଳିବା ଦ୍ୱାରା ବତୀ ନଷ୍ଟ ହୁଏ ଏବଂ ଦୀପ ଲିଭିଯାଏ ।

## ଆଗତକୁହା

ଗଳ୍ପ-ମାର୍କଣ୍ଡେୟ ନାମକ ଜଣେ ଋଷି ଥିଲେ । ତାହାଙ୍କର ଅନେକ ଶିଷ୍ୟ, ସେ ଶିଷ୍ୟମାନଙ୍କୁ ସମସ୍ତେ ବେଦରେ ପାରଙ୍ଗମ କରାଇଥିଲେ । ମାର୍କଣ୍ଡେୟ ବୃଦ୍ଧ ସମୟରେ ଅଜ୍ଞାତରେ ଗୁରୁତର ଦୋଷ କଲେ, ଚାନ୍ଦ୍ରାୟଣ ବ୍ରତ କଲେ ସେହି ଦୋଷ ପରିହାର ହେବ ବୋଲି

ଶାସ୍ତ୍ରରୁ ସେ ଅବଗତ ହୋଇ ମନେ ମନେ ଚିନ୍ତା କରୁଅଛନ୍ତି । ଏମନ୍ତ ସମୟେ ବିନା ପ୍ରଶ୍ନରେ ଜ୍ୟେଷ୍ଠ ଶିଷ୍ୟ ଉକ୍ତ ଚାନ୍ଦ୍ରାୟଣ ବ୍ରତ ଗୁରୁଙ୍କ ସକାଶେ କରିବାକୁ ସଗର୍ବରେ ଗୁରୁଙ୍କ ନିକଟରେ କହିଲେ । ଋଷି ତାହା ପ୍ରତି କ୍ରୁଦ୍ଧ ହୋଇ ପଢ଼ାଇଥିବା ବେଦ ସବୁ ବମନ କରିବାକୁ ତାହାକୁ ଆଦେଶ ଦେଲେ । ଆଦେଶାନୁସାରେ ଶିଷ୍ୟ ବେଦ ସବୁ ବମନ କରି ମୂର୍ଖ ହୋଇ ବସିଲେ । ଅତଏବ ନପଚ଼ାରୁଣୁ କୌଣସି କଥା କହିବ ନହିଁ ।

## ପର ଗାଈ ଦୁହାଁ

ରାମ ରଥର ଗୋଟିଏ ଦୁଷ୍ଟା ଗାଈ ଥିଲା । ତାହାକୁ ଯେ ଦୋହନ କରିବାକୁ ଗଲେ ତାହାକୁ ଗୋଡରେ ଲାତ ମାରେ ଏବଂ ଶିଙ୍ଘଂରେ ମୁଣ୍ଡିଆ ମାରେ । ଅଗାଧୁପାଲ ସେହି ଗାଈର ଗୁଣଗ୍ରାମ କିଛି ନ ଜାଣି ଦିନେ ରାମରଥର ବିନା ଉପସ୍ଥିତିରେ ତାହାକୁ ଦୋହନ କରିବାକୁ ଗଲା । ଦୋହନ ସମୟରେ ଗାଈ ଅଗାଧୁ ପାଳକୁ ଲାତ ମାରିବାରୁ ସେହି ଆଘାତରେ ସେ ଅନେକ ଦିନ କଷ୍ଟପାଇଲା । ତାତ୍ପର୍ଯ୍ୟ-ଗାଈର ଗୁଣା ଗ୍ରାମ ନବୁଝି ପରଗାଈ ଦୋହନ କରିବ ନାହିଁ ।

## ଆଗଚଲା

ଗୋଦାବରୀ ତୀରରେ ଗୋଟିଏ ବରବୃକ୍ଷ ଥିଲା । ସେହି ବୃକ୍ଷରେ ଅନେକ ପକ୍ଷୀ ବାସ କରୁଥିଲେ । ତନ୍ମଧ୍ୟରେ ଜରଦ୍‌ଗବ ବଡ଼ ଅଟେ । ଦିନେ ଗୋଟିଏ ବିରାଡ଼ି ସେଠାରେ ଉପସ୍ଥିତ ହେଲା । ବିରାଡ଼ିକୁ ଜରଦ୍‌ଗବ ପଚ଼ାରିଲା 'ତୁମ୍ଭେ ଏଠାକୁ କହିଁକି ଆସିଲ କହ ?' ବିରାଡ଼ି କହିଲା "ମୁଁ ବୃଦ୍ଧ ହେବାରୁ ମତ୍ସ୍ୟ, ମାଂସ ସମସ୍ତ ତ୍ୟାଗ କରି ଜୀବ ପାପରୁ ମୁକ୍ତି ପାଇବା ସକଶେ ଏଠାରେ ଚାନ୍ଦ୍ରାୟାଣ ବ୍ରତ କରି କାଳଯାପନ କରିବାକୁ ଆସିଅଛି । " ଜରଦ୍‌ଗବ ତାହା କଥାରେ ବିଶ୍ୱାସ କରି ତାହାକୁ ସେଠାରେ ବାସସ୍ଥାନ ଦେଲା । ବିରାଡ଼ି ପକ୍ଷୀମାନଙ୍କର ଅନୁପସ୍ଥିତିରେ ବୃକ୍ଷ ଚଢ଼ି ପକ୍ଷୀଶାବକମନଙ୍କୁ ଖାଉଥାଏ । ଏହିପରି କେତେଦିନ ଗଲାପରେ ପକ୍ଷୀମାନେ ଏହି ବିଷୟ ଜାଣିବାରୁ ବିରାଡ଼ି ସେହି ସ୍ଥାନରୁ ଗୋପନରେ ବାହାରିଗଲା । ଏହି ଜରବ୍‌ଗବ ହେତୁ ସେମାନଙ୍କ ପକ୍ଷୀଶାବକମାନେ ମରିଗଲେ ବୋଲି ପକ୍ଷୀମାନେ ଐକ୍ୟ ହୋଇ ଜରଦ୍‌ଗବକୁ ମାରି ପକାଇଲେ ।

ଏହାର ତାତ୍ପର୍ଯ୍ୟ ଏହି-ମନୁଷ୍ୟ କୌଣସି କାର୍ଯ୍ୟରେ ଅଗ୍ରଣୀ ହେବ ନାହିଁ ।

## ଦୀପପେଲା

ଭୀମସେନ ନାମକ ଜଣେ ବଣିକ ଆପଣାର ମୂଳଧନ ଚାରିହଜାରଟଙ୍କାରେ

ବଣିଜ କରୁଥିଲା । ପ୍ରତିବର୍ଷ ତଦ୍ୱାରା ଯାହା ଲାଭ ବା ନଷ୍ଟ ଘଟେ, ହିସାବ ନ ଦେଖି ସେହି ଧନରୁ ଗୃହର ସମସ୍ତ କାର୍ଯ୍ୟରେ ବ୍ୟୟ କରୁଥାଏ । ଦୀପ ଡିବାରେ ତୈଳ ଅଛି କି ନାହିଁ ତାହା ନ ବୁଝି ଦୀପର ଆଲୁଅ ଉଜ୍ଜ୍ୱଳ ଦିଶିବା ନିମନ୍ତେ ବାରମ୍ବାର ବତୀ ଟେଙ୍କିବା ଯୋଗୁଁ ଶେଷରେ ସମସ୍ତ ବତୀ ଯେପରି ଭସ୍ମ ହୋଇଯାଏ ସେହିପରି ବଣିକ ପ୍ରତିବର୍ଷ ଲେଖା ନଦେଖି ବ୍ୟୟ କରୁଥିବାରୁ କେତେକ ବର୍ଷ ପରେ ତାହାର ମୂଳଧନ ମଧ ନଷ୍ଟ ହେଲା ।

ତାତ୍ପର୍ଯ୍ୟ-ବିବେଚନ କରି କାର୍ଯ୍ୟ କଲେ କାହାରି କିଛି ନଷ୍ଟ ହୁଏ ନାହିଁ ।

ଅନ୍ୟ କେତେ ଗୋଟି ଢଗ ଦେଖିଲେ ସଂଗ୍ରହର ଉପାଦେୟତା ଜଣାପଡେ ।

ଅନ୍ତେ ପିତା, ଦନ୍ତେ ଲୁଣ । ପେଟ ପୂରିବ ତିନିକୋଣ ।

ମୁଣ୍ଡେ ଠେକା ପାଦେ ତେଲ । ବଇଦ ଆଗେ ହୋଇବ ଗେଲ ।

ମା କଇଁଖଡ଼ା ଖାଇ କଚ୍‌କଚ୍
ପୁଅ ପାଣ୍ଡେଇ ମାଡ଼ଇ ମଚ୍‌ମଚ୍

ଅଯୋଗ ଯୋଗ, କୁଣ୍ଡା ଖାଇକି ଦେଖ ନୃପତି ଭୋଗ । ଅର୍ଥ-ଦରିଦ୍ରା, ଅଶିକ୍ଷିତା, ଗୁଣହୀନା, ଅସୁନ୍ଦରୀ ସ୍ତ୍ରୀ ସତକୂଳ ପ୍ରସୂତ ପ୍ରସୂତ ଧନୀ ଏବଂ ଗୁଣବାନ ବ୍ୟକ୍ତି ସହ ପରିଣୟ ସୂତ୍ରରେ ଆବଦ୍ଧ ହେଲେ ସେହି ସ୍ତ୍ରୀ ଲୋକଙ୍କୁ ଲୋକେ ଏହିପରି ଟାପୁଳି କରନ୍ତି । ମାଳତୀ ଗଳ୍ପଟି ଉଦାହରଣ ଦିଆଯାଇଛି । ତାତ୍ପର୍ଯ୍ୟ-ସ୍ୱାମୀ ସୁନ୍ଦର ବା ନହେଉ ତାଙ୍କର ଅନୁଗତ ହେବା ସ୍ତ୍ରୀଙ୍କ ଧର୍ମ ।

ଉଚ ଚାଳି, ଦାଣ୍ଡେ ବସ । ନିଚ ଚାଳି ଘରେ ପଶ ।

ଅର୍ଥାତ୍ - ଆପଣା ସମାନ ନତୁବା ଉଚ୍ଚତର କୂଳ ପ୍ରସୂତ ବ୍ୟକ୍ତି ସହିତ ବିବାଦ କଲେ ଲୋକେ ତାହାକୁ ଗୌରବ ନତୁବା ଅମାନ୍ୟ କରନ୍ତି ନାହିଁ । ମାତ୍ର ତାହାଠାରୁ ନୀଚ ବ୍ୟକ୍ତି ସହିତ ବହିରଙ୍ଗରେ ବିବାଦ କଲେ ଲୋକେ ତାହାକୁ ଘୃଣା ଚକ୍ଷୁରେ ଦେଖନ୍ତି ।

ସରୁ କୋରଣା ବହୁତ ଖାଇ, ଧୂମା ଗଣ୍ଡିକି ଅନେଇ ଥାଇ ।

ଅର୍ଥ- ସରୁ କୋରଣାର ଦାନ୍ତଗୁଡିକ ତୀକ୍ଷଣ । ତଦ୍ୱାରା ବଡ଼ ବଡ଼ କଖାରୁଗୁଡ଼ିକ ଶୀଘ୍ର କୋରାଯାଏ, ଅତଏବ ଗୋଟିଏ କୋରାଗଲା ବାଦ ଆଉ ଗୋଟିଏ ବଡ଼ କଖାରୁକୁ ଚ଼ାହିଁ ରହିଥାଏ ।

ତାତ୍ପର୍ଯ୍ୟ- ଏହି ଯେ କ୍ଷୁଦ୍ର ସାପର ବିଷ ଯେପରି ଉକ୍ରଟ ।

ଉଇ,ଓଡ଼ଶ, ପିମ୍ପୁଡି, ଘରୁ ଦିଅନ୍ତି ଘଉଡ଼ି ।

ବାବୁ ଭାଙ୍ଗୁଥାଇ ମାଣ୍ଡିଆ ତଳି,
ପୁଅ ପକାଇଛି ସୋରିଷ ମାଳି ।
ଶାଗ ଖରଡ଼ାକୁ ନାହିଁ ଲୁଣ,
ପୁଅ ଲୋଡୁଥାଇ ତିନି ତୁଣ ।
ଛିଙ୍କର ପରେ-ଦହି ଗୌଡୁଣୀ ସିକା ।
ବିରାଡ଼ିର ମୁଖ ମଜା-ଏହି ଅନୁକୂଳ ରଜା ।

ଅର୍ଥ - ବାରମ୍ବାର ଛିଙ୍କିବା ବ୍ୟକ୍ତିକୁ ଦେଖିଲେ, ସିକା ଦହି ଧରିଥିବା ଗୌଡୁଣୀକୁ ଦେଖିଲେ, 'ବିରାଡ଼ି ମୁଖ ନିର୍ମଳ କରି ଅନାଇବାର ଦେଖିଲେ ମନୁଷ୍ୟର ଯାତ୍ରା ବା କାର୍ଯ୍ୟ ନଷ୍ଟ ହୁଏ ।

ଠୁକା ଠୁକା କାନ ଲଡ଼କା, ବାଟରେ ଦେଖିଲେ ବାମୁଣ ଏକା ।
ପାଖେ ସାପ କୋଶକେ ତେଲି,
ବାବୁଘର ହେଲେ ନ ଯିବ ପେଲି ।

ଘୋଡ଼ା କୋଳଥ ନଖାଇଲେ ପୁରାଣ ପଣ୍ଡାର ଦୋଷ ।
ଅର୍ଥ-ଅସମ୍ବନ୍ଧ ବ୍ୟକ୍ତିଠାରେ ଦୋଷାରୋପ ଅନୁଚିତ ।

ଟୋକା ଟୋକୀର ଘର, ଖରାପ ଦିଖଣ୍ଡ ଧର ।
ଅର୍ଥ-ବୁଢ଼ାବୁଢ଼ୀ ନଥିଲେ ଯୁବକ ଯୁବତୀ ସଂପତ୍ତି ଅପବ୍ୟୟ କରି ଶେଷରେ ଦରିଦ୍ର ହୁଅନ୍ତି ।

ଅଭାଗ୍ୟ କାଳକୁ ଭଞ୍ଜ ପକାଇଲେ କେରଣ୍ଡିମାଳକୁ ।

ଅର୍ଥ-ଯେଉଁ ସମୟରେ ଘୁମୁସରରେ ଫିତୁରୀ( ବିଦ୍ରୋହ)ଉପସ୍ଥିତ ହେଲା ରାଜା ଉପେନ୍ଦ୍ର ଭଞ୍ଜ କିଂକର୍ତ୍ତବ୍ୟବିମୂଢ଼ ହୋଇ କେରାଣ୍ଡିମାଳକୁ ଆତ୍ମରକ୍ଷାର୍ଥେ ବାହାରିଗଲେ । ପରେ ପରେ ଯେବେ ଫିତୁରୀ ଶାନ୍ତ ହେଲା ସେହି ସମୟରେ ଫେରି ସ୍ୱରାଜ୍ୟକୁ ଶାସନ କଲେ ।

ଅର୍ଥାତ୍-ମନୁଷ୍ୟ ଯେବେ ଦୀନଦଶା ଉପସ୍ଥିତ ହେବ ସେହି ସମୟରେ ଆତ୍ମମର୍ଯ୍ୟାଦା ରକ୍ଷା ସକାଶେ ଅନ୍ୟ ସ୍ଥାନକୁ ବାହାରିଯିବ । ସୁଦିନ ଆସିବ ପରେ ପୁନରପି ସ୍ୱସ୍ଥାନରେ ପ୍ରବେଶ କରିବ ।

ଗୀତ ନାଶ ଗଲା ବାଟରେ, ପାଣି ନାଶ ଗଲା ଘାଟରେ ।
ସ୍ତିରୀ ନାଶ ଗଲା ଯାତରା ପରବେ, ସୁତା ନାଶ ଗଲା ହାଟରେ ।

ମା କହୁଛି ଧାନ, ପୁଅ ଖାଉଛି ବଙ୍ଗଳା ପାନ ।

ଭାଗିଲା ଭୂଆଲି, ଛିଣ୍ଡିଲା ଜୋତା,
ଝିଅ ମଲେ ଜ୍ୱାଇଁ କାର ଗୋତା ।

ତାତ୍ପର୍ଯ୍ୟ-ଝିଅ ମଲେ ଜୋଇଁଙ୍କୁ କେହି ଆଦର କରନ୍ତି ନାହିଁ ।

ଝିଅ କା'ର ପୁଅ କା'ର । ବାଜଦ ବାଉଛି ଆର ତାର ।

ଅର୍ଥ-କାହାର ପୋଷ୍ୟ ପୁତ୍ର କାହାର ପୋଷ୍ୟ ଝିଅ ସହିତ ବାହାଘର ଆଡ଼ମ୍ବରରେ ହେଉଛି । ତହିଁକି ଉପଲକ୍ଷ୍ୟ-ଏପ୍ରକାର ବିଭାଘର ନିରାଡ଼ମ୍ବରରେ ହେବା ଉଚିତ ।

କରଣ ଜାତି । ଲାଗୁଆ ମିଳିଲେ କିଣନ୍ତି ହାତୀ ।

ଅର୍ଥ-କରଣମାନେ ସାଧାରଣରେ ଦରିଦ୍ର । ମାତ୍ର ସେମାନଙ୍କୁ ଯେଉଁ ସମୟରେ ଯେତେ ଧନ ମିଳେ ସେହିସବୁ ବ୍ୟୟ କରିଦିଅନ୍ତି । ମାତ୍ର ଭବିଷ୍ୟତ ଲାଗି କିଛି ହିଁ ସଞ୍ଚୟ କରନ୍ତି ନାହିଁ । ଏହିପରି ଏଠାରେ ଏହି ଢଗର ବ୍ୟବହାର ।

ତାତ୍ପର୍ଯ୍ୟ-ମନୁଷ୍ୟ ଧନ ଥିବା ସମୟରେ ଅତିରିକ୍ତ ଖର୍ଚ୍ଚ କରିବ ନାହିଁ ।

ତେଲତୁଣୀ କାନ୍ଦୁଛି
ନଡ଼ିଆତୁଣୀ କାନ୍ଦୁଛି

ତାତ୍ପର୍ଯ୍ୟ-ତେଲ ନଷ୍ଟ ହେବା ବ୍ୟକ୍ତି କାନ୍ଦୁଚ ତେଲ ତଳେ ପଡ଼ିବାରୁ । ନିଜର ନଷ୍ଟ ନ ହେବା ବ୍ୟକ୍ତି ନଡିଆ ତଳେ ପଡ଼ିବାରୁ ମଧ କାନ୍ଦୁଛି ।

ଦିନ ଯାକ ହେଣ୍ଡା ହେଣ୍ଡା
ରାତି ହେଲେ ଚୁଲୀରେ ଲୁଣ୍ଡା

ତପ୍ର୍ଯ୍ୟ-ଯେତବେଳେ ଯାହା କରିବା ଯୋଗ୍ୟ ତହା କରିବ ।

ପରଶା, ପରଶୁ, ପରଶୁରାମ
ଏକ ଟଙ୍କାରେ ତିନି ନାମ

ତାତ୍ପର୍ଯ୍ୟ-ଧନ ସଙ୍ଗେ ମନୁଷ୍ୟର ଗୌରବ ବଢ଼େ ।

ଆମ୍ବର ବଉଳ ମାଛର ମଞ୍ଜି
ଖଚୁଆ ବଚନ ଜ୍ୟୋତିଷ ପାଞ୍ଜି
ଏହିମାନେ ଯେବେ ସତ ହୁଅନ୍ତେ
ମନୁଷ୍ୟ କି ପାଇଁ ମରି ଯାଆନ୍ତେ ।

ତାତ୍ପର୍ଯ୍ୟ-ସଂସାରର ସମସ୍ତ ବିଷୟ ଅନିଶ୍ଚିତ । ଗୋଟିଏ ହେଲେ ନିୟମିତ ରୂପେ ଘଟେ

ନାହିଁ ।
ଆପେ ଚଷା ଉତ୍ତମ ଦଶା । ଛତା ଧରିଥା ମଧ୍ୟମ ଚଷା ।
ଘରେ ଥାଇ କହେ ଯେ । ମାଇପ ଅଇଁଠା ଖାଏ ସେ ।
ନୋହିଲା ଗାଁକୁ ହୋଇଲା ଚିଠି । କରଣ ଖାଇଲା ବାରପୁଟି
ଅର୍ଥ-କରଣ (ଲେଖକ) ନଥିବା ଲୋକ ନାଁରେ ନିରର୍ଥକ ଚିଠି ସାମନ୍ତ ଠାରୁ ଠକି ଖାଇଯାଏ ।
ଲୁକା ଦେଇ ଭୁକା ଦେଇ,
ଦାନ୍ତ କେରକେଟିଆ କେବେ ନ ଦେଇ ।
ଅର୍ଥ-ଲୁଚିବା, କଳି କରିବା, ଖାତକ ଋଣ ସୁଝିଦିଅନ୍ତି, ମାତ୍ର ଦାନ୍ତ ଲେସଡ଼ା ଲୋକ ଋଣଧନ ଦିଏ ନାହିଁ ।
ମାଆ ତୁଡୁକାଣୀ ବାବୁ ତୁଡୁକ
ପୁଅ ହୋଇଛି ଭଲ ଲୋକ
ଅର୍ଥ-ମାଆ ଦୁଷ୍ଟ ବାପା ଦୁଷ୍ଟ
ପୁଅ ଜନ ସମାଜରେ ଭଲ ବୋଲାଇବା ଅସମ୍ଭବ ।
ଅନ୍ଧ କି ଚିହ୍ନିବ ମାଣିକ୍ୟ ମୁଦି ଯେ
କନ୍ଧ କି କହିବ ସଂସ୍କୃତ ବାଣୀ,
ଚଣ୍ଡାଳ ସଭାରେ ପଢ଼ିଛି ବେଦ
ସୁଧା ଠୁ ମଦ ଲାଗୁଛି ମୋଦ ।
ଅର୍ଥ- ଆଜନ୍ମ ଚକ୍ଷୁହୀନ ବ୍ୟକ୍ତି ମାଣିକ୍ୟ କିମ୍ବା ଅନ୍ୟ ମୁଦି ଚ଼ିହ୍ନି ନ ପାରେ । କନ୍ଧ ସଂସ୍କୃତ ଭାଷାରେ କଥା କହି ନପାରେ । ଲୋକେ ଅମୃତ ତ୍ୟାଗ କରି ମଦ୍ୟପାନରେ ଯେପରି ପ୍ରମୋଦ ହୁଅନ୍ତି ସେହିପରି ଚ଼ଣ୍ଡାଳ ସଭାରେ ବେଦ ଶୋଭାପାଏ ।
ଘୋଡ଼ାକୁ ଚିହ୍ନିଲି ନିଶ୍ୱାସେ, ହୀରାକୁ ଚିହ୍ନିଲି ଉଶ୍ୱାସେ,
ଜେମାକୁ ଚିହ୍ନିଲି ଚାନମାନେ, ରାଜାକୁ ଚିହ୍ନିଲି ଦାନପଣେ,
ତାତ୍ପର୍ଯ୍ୟ-କାର୍ଯ୍ୟକୁ ଲକ୍ଷ୍ୟ କରି ଉପଯୁକ୍ତ ଦରମା ନଦେଲେ ସେହି ପ୍ରଭୁ ଲୋକରେ ନିନ୍ଦିତ ହୁଅନ୍ତି ।

ଆପନ୍ନା ଜ୍ୟୋତିଷ, ବିଦ୍ୟାରେ ମଧ୍ୟ ପାଣ୍ଡିତ୍ୟ ଅର୍ଜନ କରିଥିଲେ । ସିଦ୍ଧାନ୍ତ ନୀଳମଣି ପାଣିଗ୍ରାହୀଙ୍କ ସହିତ ସମସ୍ଥାନର ପୃଷ୍ଟପୋଷକତାରେ ସେ ଶ୍ରୀଗଜପତି ପ୍ରେସରୁ

ଗଜପତି ପଞ୍ଜିକା ପ୍ରକାଶ କରୁଥିଲେ । ମହାରାଜା ଶ୍ରୀକୃଷ୍ଣଚନ୍ଦ୍ର ଗଜପତିଙ୍କର ପ୍ରଥମ ସନ୍ତାନ ପଟ୍ଟଦେଓଙ୍କର କୋଷ୍ଠୀ ଗଣନା କରି ସେ ଦୁହେଁ ଜାତକରେ ରାଜଯୋଗର ଅଭାବ ଓ ଅପମୃତ୍ୟୁ ଥିବାର ଭବିଷ୍ୟତ ବାଣୀ କରି ରାଜପୃଷ୍ଟ,ପୋଷକତା ହରାଇଥିଲେ ସିଦ୍ଧାନ୍ତୀ ନୀଳମଣି ପାଣିଗ୍ରାହୀ ଜ୍ୟୋତିଷ ଚର୍ଚ୍ଚା ଛାଡି ଆୟୁର୍ବେଦକୁ ନିଜର ଜୀବିକା ଅର୍ଜନ ନିମିତ୍ତ ଅବଲମ୍ବନ କଲେ ଓ ନିଜର ଔଷଧାଳୟ ଖୋଲିଥିଲେ । ପରେ ସେ ମଧ ଜୟପୁର ଚାଲି ଯାଇଥିଲେ । ଆପନ୍ନା ପଣ୍ଡା ମହାରାଜାଙ୍କର ପ୍ରଦତ୍ତ ବେତନ ବ୍ୟତୀତ ରାଜମାତାଙ୍କର ହାତପାଣ୍ଠିରୁ ଟ୧୦୦୦ଙ୍କା ଓ ଖୁଡିମାଆଙ୍କର ହାତପାଣ୍ଠିରୁ ପାଞ୍ଚଶ ଟଙ୍କା ଆର୍ଥିକ ସାହାଯ୍ୟ ଜ୍ୟୋତିଷ ବିଦ୍ୟାରେ ନିପୁଣତା ନିମିତ୍ତ ପାଉଥିଲେ । ଉତ୍ତରକାଳରେ ଜୀବିକା ଅର୍ଜନ ନିମିତ୍ତ ସେ ମଧ ପାରିକୁଦ ରାଜାଙ୍କ ଆଶ୍ରୟ ନେଲେ

୧୯୦୬ ମସିହାରେ ରମ୍ଭାରୁ ଶ୍ରୀ ଭୁବନେଶ୍ୱର ରଥଙ୍କର ସଂପାଦନାରେ ବାହାରୁଥିବା 'ପ୍ରଜାବନ୍ଧୁ' ପତ୍ରିକାରେ "ଗଞ୍ଜାମ ଭ୍ରମଣ" ପଦ୍ୟରେ କବିଶେଖର ଚିନ୍ତାମଣି ମହାନ୍ତି ଲେଖିଥିଲେ-

"ହେ ବାବୁ ଅପର୍ଣ୍ଣା ପଣ୍ଡା ଶାନ୍ତ ଶିଷ୍ଟ ଧୀର
ଦେଶୋନ୍ନତି କାର୍ଯ୍ୟେ ତୁମ୍ଭେ ଅଟ ବାକ୍ୟ ବୀର
ମାତ୍ରକ କାର୍ଯ୍ୟରେ କିଛି ଜଣା ଯାଉନାହିଁ
ଶରତକାଳ ମେଘ ସିନା ଗର୍ଜେ ଖାଲି ଭାଇ
ପୃଥିବୀରେ ଅଭାବ କି ଅଛି ବାକ୍ୟ ବୀର
କାର୍ଯ୍ୟେ ପରିଚୟ ଦିଅ ସ୍ୱଦେଶ ପ୍ରୀତିର
ଅଛି କିଛି ଶକ୍ତି ଗଦ୍ୟ ପଦ୍ୟ ରଚନାରେ
ଯତ୍ନକର ତାର ବୃଦ୍ଧି ସଦବ୍ୟବହାରେ ।"

ଏହି ରଚନାର ୨୬ବର୍ଷ ପରେ ଆପନ୍ନାଙ୍କର ୧୯୩୨ ମସିହା ଜୁଲାଇ ମାସ ପାଞ୍ଚ ତାରିଖରେ ମୃତ୍ୟୁ ହୁଏ । ତାଙ୍କ ଜୀବନରେ ସେ ବାକ୍ୟ ବୀର ଥାଇ ଗଦ୍ୟ ପଦ୍ୟ ରଚନାରେ ମନୋନିବେଶ କରି କର୍ମବୀର ବୋଲି ପ୍ରମାଣିତ କରିଗଲେ । ଓଡ଼ିଆ ସାହିତ୍ୟର ବିକାଶ ନିମିତ୍ତ ତାଙ୍କର ଉଦ୍ୟମ ଅବିସ୍ମରଣୀୟ । ସେ ଜଣେ ଅସାଧାରଣ ବାଗ୍ମୀ ଥିଲେ । ଉତ୍କଳ ସମ୍ମିଳନୀର ଜଣେ ନିରଳସ କର୍ମୀ ଥାଇ ସେ ଉତ୍କଳ ହିତୈଷିଣୀ ସଭାର କର୍ମକର୍ତ୍ତା ଥିଲେ । ନିଜର ସମସ୍ତ ବ୍ୟକ୍ତିଗତ ସ୍ୱାର୍ଥରେ ଜଳାଞ୍ଜଳି ଦେଇ ଦେଶ ମିଶ୍ରଣ ଆନ୍ଦୋଳନରେ ସେ ନିଜର ସମସ୍ତ ଶକ୍ତି ଓ ଅର୍ଥବ୍ୟୟ

କରି ସବୁ ଶ୍ରେଣୀର ନାଗରିକମାନଙ୍କର ସ୍ନେହଭାଜନ ଓ ଉତ୍କଳଭାଷୀ ଅଞ୍ଚଳରେ ମାନ୍ୟଗଣ୍ୟ ହୋଇପାରିଥିଲେ ।



# ଦେଶଭକ୍ତ ଆପନ୍ନା ପରିଛା

ପ୍ରତିଷ୍ଠିତ ସାମାଜିକ ଓ ରାଜନୈତିକ ବ୍ୟବସ୍ଥାରେ ପୂର୍ଣ୍ଣ ବିଶ୍ୱାସୀ ଥାଇ ପରବର୍ତ୍ତୀ ସାମାଜିକ ପରିସ୍ଥିତିରେ ମଧ୍ୟ ନିଜକୁ ଲୋକପ୍ରିୟ ଓ ସର୍ବଜନ ଆଦୃତ କରାଇ ପାରିବା ଦକ୍ଷତା ଅଳ୍ପସଂଖ୍ୟକ ବ୍ୟକ୍ତିଙ୍କର ଥାଏ । ବ୍ରିଟିଶ ଶାସନ କାଳରେ କ୍ଷମତା ଉପଭୋଗ କରୁଥିବା ବାବାସାହେବ ଆମ୍ବେଦକର, ଚିନ୍ତାମଣି ଦେଶମୁଖ, ଗୋପାଳସ୍ୱାମୀ ଆୟଙ୍ଗାର, ଜନ ମାଥାଇ, ସାର୍ ସମ୍ମୁଖମ୍ ଚେଟି ପ୍ରଭୃତି ଏହି ଶ୍ରେଣୀର ନେତା । ସେମାନେ ପରବର୍ତ୍ତୀ କାଳରେ ସ୍ୱାଧୀନ ଭାରତରେ ଉଚ୍ଚକୋଟୀର ଜନନାୟକ ଭାବେ ପରିଚିତ ହୋଇ ପାରିଥିଲେ । ସେମାନଙ୍କର ଉଚ୍ଚ ଆଦର୍ଶ, ନିର୍ମଳ ଚରିତ୍ର, ଏକନିଷ୍ଠ ଚିନ୍ତାଧାରା ଓ କାର୍ଯ୍ୟ ସମ୍ପାଦନ ପ୍ରଣାଳୀ ମଧ୍ୟରେ ନିଗୂଢ଼ ସାମଞ୍ଜସ୍ୟ ସେମାନଙ୍କୁ ଏ ପ୍ରକାର ସୌଭାଗ୍ୟ ଓ ଗୌରବ ଆଣିବାରେ ସହାୟକ ହୋଇଥିଲା । ଓଡ଼ିଶାରେ ବ୍ରିଟିଶ ଶାସନ କାଳରେ ଅଧ୍ୟାପକ ପରିଜା ସାହେବ ନାମରେ ପରିଚିତ ଡକ୍ଟର ପ୍ରାଣକୃଷ୍ଣ ପରିଜା ଓ ମୁଖ୍ୟମନ୍ତ୍ରୀ ( ୧ ୯ ୯ ୦ ) ବିଜୁ ପଟ୍ଟନାୟକଙ୍କ ପୂଜ୍ୟପିତା ଲକ୍ଷ୍ମୀନାରାୟଣ ପଟ୍ଟନାୟକ ମଧ୍ୟ ଏହି ପ୍ରକାର ଜନନାୟକ ଓ ଜନସେବୀ । ଡକ୍ଟର ପରିଜା ଓଡ଼ିଶା ପିପୁଲସ ଆସୋସିଏସନ ଓ ଅନ୍ୟାନ୍ୟ ଲୋକହିତକର ଅନୁଷ୍ଠାନ ସହିତ ସଂପୃକ୍ତ ଥାଇ ଇଂରେଜ ସରକାରଙ୍କ ଠାରୁ ଓ.ବି.ଇ.ଉପାଧି ଲାଭ କରିଥିଲେ । ସ୍ୱାଧୀନ ଭାରତରେ ତାଙ୍କର ଏ ଦେଶାତ୍ମବୋଧର ପୁରସ୍କାର ସ୍ୱରୂପ ତାଙ୍କୁ ପଦ୍ମଭୂଷଣ ଉପାଧିରେ ସମ୍ମାନିତ କରାଯାଇଥିଲା । ବିହାର ଓଡିଶା ବିଧାନ ପରିଷଦରେ ୧ ୯ ୨ ୯ ମସିହାରେ ପାଟଣା ବିଶ୍ୱବିଦ୍ୟାଳୟ ବିଲ୍ ଆଲୋଚିତ ହେଉଥିବା ସମୟରେ ଓଡ଼ିଶାର ସ୍ୱାର୍ଥରକ୍ଷା ନିମିତ୍ତ ତାଙ୍କୁ ବିଧାନ ପରିଷଦର ସଭ୍ୟ ରୂପେ ମନୋନୀତ କରାଯାଇଥିଲା । ପୁଣି ଭାରତରେ ପ୍ରଥମ ସାବାଳକ ନିର୍ବାଚନରେ ସେ ୧ ୯ ୫ ୨ ମସିହାରେ ବାଲିକୁଦା ନିର୍ବାଚନ ମଣ୍ଡଳୀରୁ ବିଧାନସଭାକୁ ସ୍ୱାଧୀନ ଭାବରେ ପ୍ରାର୍ଥୀ ହୋଇ କଂଗ୍ରେସର ତତ୍କାଳୀନ କ୍ଷମତାଶାଳୀ ସର୍ବ ପୁରାତନ ନେତା ଭାଗିରଥୀ ମହାପାତ୍ରଙ୍କୁ ବିପୁଳ ବିଭବ ଓ କ୍ଷମତା ପ୍ରୟୋଗ ସତ୍ତ୍ୱେ ପରାସ୍ତ କରିପାରିଥିଲେ । ଦେଶପ୍ରାଣ ଲକ୍ଷ୍ମୀନାରାୟଣ ସେହିପରି ସବଜଜ୍ ଥାଇ ନ୍ୟାୟପରାୟଣତା ନିମିତ୍ତ ଖ୍ୟାତି ଅର୍ଜନ କରି ଏମ.ବି.ଇ ଉପାଧି ପାଇଥିଲେ । ଅବସର ଗ୍ରହଣ ପରେ ସମ୍ମିଳନୀର ଦେଶ ମିଶ୍ରଣ କାର୍ଯ୍ୟରେ ସେ ବିଶେଷ ଅଂଶ ଗ୍ରହଣ କରିଥିଲେ ଓ କଟକରେ ଓଡ଼ିଆ ସାହିତ୍ୟ ପ୍ରଚାର

ସଙ୍ଘ ଗଠନ ଓ ଉତ୍କଳ ସାହିତ୍ୟ ସମାଜର କର୍ମକର୍ତ୍ତା ଥାଇ ଶସ୍ତା ମୂଲ୍ୟରେ ସଦଗ୍ରନ୍ଥ ପସର ଓ ପ୍ରଚାର ଦିଗରେ ଉଦ୍ୟମ କରି ପ୍ରାକୃତିକ ଓଡ଼ିଶାର ବରିଷ୍ଠ ଜନନାୟକ ରୂପେ ପରିଗଣିତ ହୋଇଥିଲେ ।

ପାରଳାଖେମୁଣ୍ଡିର ଆପନ୍ନା ପରିଚ୍ଛା ଏହିପରି ସବୁ ଶ୍ରେଣୀ,ସଂପ୍ରଦାୟ ଓ ସମାଜର ଆଦର ପାଉଥିବା ଜଣେ ଜନସେବୀ ଥିଲେ । ପାରଳାଖେମୁଣ୍ଡି ମହାରାଜାଙ୍କ ପ୍ରିୟପାତ୍ର ଥାଇ ମଧ୍ୟ ସେ ପରିବର୍ତ୍ତିତ ପରିସ୍ଥିତିରେ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଆର୍ଥିକ ଓ ଆଦର୍ଶଗତ ସାହାଯ୍ୟ ଦେବାରେ କୁଣ୍ଠାବୋଧ କରୁ ନଥିଲେ । ଆପନ୍ନାଙ୍କର ଜନ୍ମ ପାରଳାଖେମୁଣ୍ଡିର ବିଖ୍ୟାତ ପରିଚ୍ଛା ପରିବାରରେ ୧୮୭୮ ମସିହା ମଇ ମାସରେ । ସେତେବେଳେ ପାରଳାଖେମୁଣ୍ଡି ରାଜ୍ୟରେ ଧନୀ କହିଲେ ତିନିଗୋଟି ପରିବାର ବା ଅନୁଷ୍ଠାନକୁ ବୁଝାଉଥିଲା । ପ୍ରଥମେ ପାରଳାର ରାଜା, ଜମିଦାରିର ମୋଟ ବାର୍ଷିକ ଆୟ ତିନିଲକ୍ଷ ଟଙ୍କା ଦ୍ୱିତୀୟ ବଡରାଧାକାନ୍ତ ମଠ, ବାର୍ଷିକ ଆୟ ଏକ ଲକ୍ଷ ତିନି ହଜାର ଓ ଶେଷକୁ ପରିଚ୍ଛା ପରିବାର । ଆୟ ଛୟାନବେ ହଜାର । ପରିଚ୍ଛା ବଂଶ ପାରଳାରେ ଦ୍ୱିତୀୟ ଧନୀ ପରିବାର । ପାରଳା ମହାରାଜାଙ୍କ ରାଜପ୍ରସାଦକୁ ବାଦ ଦେଲେ ସେମାନଙ୍କର ସୁବୃହତ ବାସଗୃହ ପାରଳାରେ ଅଦ୍ୱିତୀୟ ଥିଲା । ପରିଚ୍ଛା ମନ୍ଦିରର ପିରଚାଳନା ଓ ସେବାପୂଜା ପାଳନରେ ସେମାନେ ବହୁ ଦୁଃଖୀଦରିଦ୍ରଙ୍କୁ ଅନ୍ନବସ୍ତ୍ର ଦାନ କରି ସେବା କରିପାରୁଥିଲେ ଆର୍ଥିକ ଅସ୍ୱଚ୍ଛଳତାଗ୍ରସ୍ତ ବହୁ ବିଦ୍ୟାର୍ଥୀ ଦୂରଦୂରାନ୍ତରୁ ଆସି ପାରଳାରେ ସ୍କୁଲ ଓ କଲେଜରେ ପଢୁଥିଲେ । କାରଣ ପାରଳା କଲେଜରେ ଓଡ଼ିଆ ଛାତ୍ରମାନଙ୍କୁ ପ୍ରାୟ ବେତନ ସଂପୂର୍ଣ୍ଣ ଛାଡ଼ ଥିଲା ଓ ସେମାନଙ୍କର ବ୍ୟବସ୍ଥା ସ୍ଥାନୀୟ ପରିଚ୍ଛା ମଠ, ରାଧାକାନ୍ତ ମଠ ଓ ଅନ୍ୟାନ୍ୟ ମଠମାନଙ୍କରେ ହୋଇ ପାରୁଥିଲା । "ଦୈନିକ ଆଶା"ର ପ୍ରତିଷ୍ଠାତା ସୋରଡ଼ା ନିବାସୀ ଶଶିଭୂଷଣ ରଥ, ଗୌରହରି ପରିଚ୍ଛାଙ୍କର ବାହାର ଘରେ ରହି ବିଦ୍ୟାଳୟରେ ପାଠପଢୁଥିଲେ । ଓଡ଼ିଶାର ପୂର୍ବତନ ପ୍ରଧାନ ନ୍ୟାୟାଧୀଶ, ବାଚସ୍ପତି ଓ ସ୍ୱରାଷ୍ଟ୍ରମନ୍ତ୍ରୀ ଲିଙ୍ଗରାଜ ପାଣିଗ୍ରାହୀ ମଧ୍ୟ ହାଇସ୍କୁଲ ପଢ଼ିବା ସକାଶେ ବାଳିକା ବିଦ୍ୟାଳୟ ନିକଟ ଚନ୍ଦ୍ରଶେଖର ପଣ୍ଡାଙ୍କ ଘରେ ବସା କରି ରହୁଥିଲେ ଓ ଦାମୋଦର ପଣ୍ଡା ତାଙ୍କର ସ୍ଥାନୀୟ ଅଭିଭାବକ ଥିଲେ । ଆପନ୍ନା ପରିଚ୍ଛା ମାଟ୍ରିକ ପର୍ଯ୍ୟନ୍ତ ପାଠ ପଢ଼ିସାରି ପ୍ରଥମେ ରାଧାକାନ୍ତ ମଠର ପରିଚାଳନା ଦାୟିତ୍ୱ ହାତକୁ ନେଲେ । ମଠ ମନ୍ଦିର ପରିଚ୍ାଳନାରେ ଦକ୍ଷତା ଦେଖାଇ ସେ ଆୟବୃଦ୍ଧିରେ ସଫଳ ହୋଇଥିଲେ । ନିଜ ଭାଇ ନୀଳମଣିଙ୍କ ସହିତ ମିଶି ସେ ପ୍ରଥମେ ଗୋଟିଏ ରଙ୍ଗାଳୟ ପ୍ରତିଷ୍ଠା କଲେ । ଚାରିଗୋଟି ତାଳଗଛ କାଟି ତାକୁ

ଖୁଣ୍ଟିକରି ତା ଉପରେ ଚାଳ ଦେଇ ଛପର କରି ସେଠାରେ ସେ କୃଷ୍ଣଲୀଳା ଓ ପୌରାଣିକ ନାଟକମାନ ପ୍ରଦର୍ଶନ କରିବାରେ ଲାଗିଲେ । ଏହା କର୍ମଯୋଗୀ ପୁଣ୍ୟଶ୍ଲୋକ ପଦ୍ମନାଭ ଗଜପତିଙ୍କ ଦୃଷ୍ଟିକୁ ଆସିବାରୁ ସେ ଏହାର ସ୍ଥାୟୀ ମଞ୍ଚନିର୍ମାଣର ବ୍ୟବସ୍ଥା କଲେ ଓ ଏହା ପରେ ପଦ୍ମନାଭ ରଙ୍ଗାଳୟ ନାମରେ ଖ୍ୟାତ ହେଲା । ପଦ୍ମନାଭ ରଙ୍ଗମଞ୍ଚର ପରିଚାଳନା ମୁଖ୍ୟତଃ ଆପନ୍ନାଙ୍କ ଉପରେ ନ୍ୟସ୍ତ ଥିଲା ଓ ପ୍ରାୟ ଦୀର୍ଘ କୋଡ଼ିଏ ବର୍ଷକାଳ ସେ ଏହି ରଙ୍ଗମଞ୍ଚ ଦାୟିତ୍ୱରେ ଥାଇ ନାଟକମାନ ମଞ୍ଚସ୍ଥ କରି ଦର୍ଶକମାନଙ୍କୁ ଆମୋଦିତ କରି ପାରୁଥିଲେ । ପାରଳା ମହାରାଜାଙ୍କ ସହିତ ମତାନ୍ତର ହେବା ପରେ ସେ ଏଥିରୁ ଅବ୍ୟାହତି ନେଇ ମନ୍ଦିରରେ ଗୋଟିଏ ରାସ ଦଳ ଗଢ଼ିଲେ । ରାଧାକୃଷ୍ଣଙ୍କର ଲୀଳା ପ୍ରଦର୍ଶନ ଏହାର ବିଶେଷତ୍ୱ ଥିଲା । ସେତେବେଳେ ସମଗ୍ର ପ୍ରାକୃତିକ ଓଡ଼ିଶାରେ ତିନିଗୋଟି ରାସ ଦଳ ଖ୍ୟାତି ଅର୍ଜନ କରିଥିଲେ । ଆପନ୍ନାଙ୍କ ରାସଦଳ ସର୍ବପୁରାତନ( ପୁରୀର ମୋହନ ସୁନ୍ଦର ଦେବ ଗୋସ୍ୱାମୀ ରାସଦଳ ଓ ତରଳା ରାଜବଂଶର ନୟାଗଡ଼ ନିବାସୀ ଗୋବିନ୍ଦ ଚନ୍ଦ୍ର ଶୂରଦେଓ ବି.ଏ (ଖ୍ରୀ. ୧୮୮୦-୧୯୩୯ )ଙ୍କର ରାସଦଳ ଅନ୍ୟ ଦୁଇଟି । ବଙ୍ଗ ଭାଷାରେ ତାଙ୍କର ବ୍ୟୁତ୍ପତ୍ତି ଥିଲା । ତେଣୁ ରଙ୍ଗମଞ୍ଚରେ ପଦ୍ମନାଭ ଗଜପତି ଓ ଅନ୍ୟାନ୍ୟ ସ୍ଥାନୀୟ ଲେଖକମାନଙ୍କର ନାଟକ ବ୍ୟତୀତ ବଙ୍ଗଳା ଭାଷାରୁ ଅନୂଦିତ ନାଟକ ମଧ୍ୟ ସେ ମଞ୍ଚସ୍ଥ କରାଇ ପାରୁଥିଲେ । ଅଭିନୟ କଳା ତାଙ୍କୁ ବିଶେଷ ଭାବରେ ଜଣାଥିଲା । ସେ ସାଧାରଣ ଅଭିନେତାମାନଙ୍କୁ ନିଜର ସୁଶିକ୍ଷା ଫଳରେ ଉଚ୍ଚକୋଟିର ଅଭିନେତା ରୂପେ ପ୍ରତିଷ୍ଠିତ କରାଇ ପାରୁଥିଲେ । ପାରଳାଖେମୁଣ୍ଡି ସହର ଗୌଡୀୟ ବୈଷ୍ଣବମାନଙ୍କର ଏକ ପ୍ରଧାନ କେନ୍ଦ୍ର । ତେଣୁ ସେମାନଙ୍କର ମନୋରଞ୍ଜନ ନିମିତ୍ତ ରାଧାକୃଷ୍ଣ ଲୀଳା ପ୍ରଦର୍ଶନ କରିବା ଆପନ୍ନାଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥିଲା । ସେ ନିଜେ ସଙ୍ଗୀତ ରଚନା କରୁଥିଲେ । ଏହା ବ୍ୟତୀତ ଗୋପାଳକୃଷ୍ଣ, ହରିବନ୍ଧୁ, ପଦ୍ମନାଭ ଓ ଗୌରହରିଙ୍କର ଭକ୍ତି ରସାତ୍ମକ ରାଗ-ତାଳ ସମନ୍ୱିତ ସଙ୍ଗୀତମାନ ସୁସ୍ୱରରେ ଗାନ କରାଯାଇ ପରିବେଷଣ କରିବାର ବ୍ୟବସ୍ଥା କରି ସେ ସମସ୍ତଙ୍କୁ ଆମୋଦିତ କରିପାରୁଥିଲେ । ସେ ସମୟର ବାଳକ ଅଧକ୍ଷ ୬ପାନାଦି ଜଗନ୍ନାଥ ସ୍ୱାମୀ କହନ୍ତି ଯେ ରାଧା ଭୂମିକାରେ ଅଭିନୟ କରୁଥିବା ବାଳକଟିର ଅଙ୍ଗସଜ୍ଜା ଓ ଅଭିନୟ ଏପରି ଜୀବନ୍ତ ସୁରୁଚିପୂର୍ଣ୍ଣ ଓ ଚିତ୍ତାକର୍ଷକ ଥିଲା ଯେ ସେଥିପାଇଁ ଅଭିନୟ ଦିନ ଦିନ ଧରି ଚାଲୁଥିଲା ଓ ଦୂର ଦୂରାନ୍ତରରୁ ସବୁ ଶ୍ରେଣୀର ଦର୍ଶକମାନେ ଆକର୍ଷିତ ହୋଇ ଆସି ପାରୁଥିଲେ । ନାଟ୍ୟଦଳର ସମସ୍ତ ବ୍ୟୟ ଆପନ୍ନା ନିଜେ ବହନ କରୁଥିଲେ । ଓଡ଼ିଶାର ବିଭିନ୍ନ ସହରମାନଙ୍କୁ ତାଙ୍କର ରାସଦଳ ଯାଇ ନାଟକ, ବିଶେଷ କରି ରାଧାକୃଷ୍ଣ

ଲୀଳା ପ୍ରସଙ୍ଗ ଅଭିନୟ କରି ଉଚ୍ଚ ପ୍ରଶଂସା ପାଇ ପାରୁଥିଲେ । ଗଞ୍ଜାମର ସମସ୍ତ ରାଜବାଟିରେ ତାଙ୍କର ନାଟ୍ୟଦଳ ଅଭିନୟ ପ୍ରଦର୍ଶନ ନିମିତ୍ତ ନିମନ୍ତ୍ରିତ ହେଉଥିଲେ । ପାରଳାର ଦାୟନିଧି ପଟ୍ଟନାୟକ(ପରେ ଡେପୁଟି କଲେକ୍ଟର) ନିଜେ ପଦ୍ମନାଭ ରଙ୍ଗମଞ୍ଚରେ ଅଭିନୟ କରୁଥିଲେ ଓ ଡାକ୍ତର ସିମାଦ୍ରି ପାତ୍ର, ଭାରତ ସରକାରଙ୍କର ଏକଦା ମହାଲେଖା ନିବନ୍ଧକ Accountant General Central Revenue ପ୍ରକାଶ ଚନ୍ଦ୍ର ପାଢୀ ଏହି ରଙ୍ଗମଞ୍ଚ ଅଭିନୟ ସହିତ ସଂପୃକ୍ତ ଥିଲେ ।

ଦରିଦ୍ର ଛାତ୍ରମାନଙ୍କୁ ବିଦ୍ୟାଶିକ୍ଷାରେ ସାହାଯ୍ୟ କରିବା ଏହି ଅନୁଷ୍ଠାନର ଏକ ଉଦ୍ଦେଶ୍ୟ ଥିବାରୁ ଯେଉଁ ଛାତ୍ରମାନେ ସେମାନଙ୍କର ପରୀକ୍ଷା ଫିସ ଦାଖଲ କରିବାକୁ ଅସମର୍ଥ ହେଉଥିଲେ ସେମାନଙ୍କର ସାହାଯ୍ୟ ନିମିତ୍ତ ଆପନ୍ନା, ରଙ୍ଗମଞ୍ଚରେ ନାଟକ ବିଶେଷ ଉତ୍ସବ ଉପଲକ୍ଷେ ମଞ୍ଚସ୍ଥ କରି, ତହିଁରେ ଲବ୍ଧ ଧନ ଏହି ଛାତ୍ରମାନଙ୍କୁ ପ୍ରଦାନ କରୁଥିଲେ । ଉଚ୍ଚଶିକ୍ଷାରେ ଧନାଭାବ କରୁଥିବା ବହୁ ଛାତ୍ର ଏହି ଅର୍ଥରେ ଉପକୃତ ହେଉଥିଲେ । ଶିକ୍ଷାର୍ଥୀମାନଙ୍କର ଅଧ୍ୟୟନ ସୁବିଧା ନିମିତ୍ତ ସେ ନିଜ ମଠରେ କେତେକ ବିଦ୍ୟାର୍ଥୀ ରଖିଥିଲେ ଓ ପାରଳାଖେମୁଣ୍ଡି ସହରର ସମସ୍ତ ମଠ ମନ୍ଦିରାଧୀଶମାନଙ୍କୁ ପ୍ରଭାବିତ କରି ସେ ସେମାନଙ୍କର ମଠ ମନ୍ଦିରରେ ଆୟ ଅନୁସାରେ ନିର୍ଦ୍ଧାରିତ ସଂଖ୍ୟକ ବିଦ୍ୟାର୍ଥୀମାନଙ୍କର ଗ୍ରାସାଚ୍ଛାଦନର ବ୍ୟବସ୍ଥା କରାଇ ପାରିଥିଲେ ।

୧୯୧୪ ମସିହାରେ ପାରଳାରେ ଅନୁଷ୍ଠିତ ଦଶମ ଉତ୍କଳ ସମ୍ମିଳନୀର ଅଧିବେଶନରେ ସେ ଜଣେ ଉତ୍ସାହୀ କର୍ମୀ ଥିଲେ । ଦେଶ ମିଶ୍ରଣ କାର୍ଯ୍ୟରେ ପାରଳା ମହାରାଜା ଶ୍ରୀକୃଷ୍ଣଚନ୍ଦ୍ର ଗଜପତିଙ୍କର ସେ ଘନିଷ୍ଠ ସହଯୋଗୀ ଥିଲେ ମାତ୍ର ଗଞ୍ଜାମରେ ଯେତେବେଳେ ରୟତ ଆନ୍ଦୋଳନ ତେଜି ଉଠିଲା ଓ ବିଶ୍ୱନାଥ ଦାସଙ୍କ ନେତୃତ୍ୱରେ ରୟତ ସ୍ୱାର୍ଥ ସଂରକ୍ଷଣ ନିମିତ୍ତ ସଙ୍ଗଠନମାନ ଗଢ଼ାଗଲା, ସେତେବେଳେ ଗଞ୍ଜାମର ଭୂମ୍ୟଧିକାରୀ ରାଜାମାନେ ଏହି ଆନ୍ଦୋଳନକୁ ବିଷ ଚକ୍ଷୁରେ ଦେଖିଲେ । ଆପନ୍ନା ରୟତ ସ୍ୱାର୍ଥ ସଂରକ୍ଷଣ ନିମିତ୍ତ କାର୍ଯ୍ୟ କଲେ । ସେହି କାରଣରୁ ସେ ରାଜାଙ୍କର ଅପ୍ରିୟ ହେଲେ । ତେଣୁ ପରବର୍ତ୍ତୀ କାଳରେ ଦେଶ କାରଣରୁ ସେ ରାଜାଙ୍କର ଅପ୍ରିୟ ହେଲେ । ତେଣୁ ପରବର୍ତ୍ତୀ କାଳରେ ଦେଶ ମିଶ୍ରଣ ଆନ୍ଦୋଳନରେ ପାରଳାରେ ତାଙ୍କୁ ପ୍ରାୟ ଏକଘରିଆ କରି ରଖାଯାଇଥିଲା । ତାଙ୍କର କୌଣସି ସହଯୋଗ ରାଜାଙ୍କର ଗ୍ରହଣୀୟ ନ ଥିଲା । ତଥାପି ବିଦ୍ୟାଳୟ ଓ କଲେଜ ଛାତ୍ରମାନଙ୍କ ଉପରେ ଆପନ୍ନାଙ୍କର ଯଥେଷ୍ଟ ପ୍ରଭାବ ଥିଲା । କଲେଜ ଛାତ୍ରମାନଙ୍କୁ ସେ ପ୍ରଗତିଶୀଳ ରାଜନୈତିକ ଚିନ୍ତାଧାରାରେ

ଉଦ୍‌ବୁଦ୍ଧ କରୁଥିଲେ । ଏହି ସମୟରେ ରାଜକୋପଦୃଷ୍ଟି ପ୍ରତିଆଖିରେ ରଖି ସହରର କେହି ସାଧାରଣ ନାଗରିକ ଜାତୀୟତାବାଦୀ ନେତାମାନଙ୍କୁ ନିଜ ଘରେ ଆଶ୍ରୟ ଦେଉ ନଥିଲେ ନିଜର ବନ୍ଧୁ ଆତ୍ମୀୟ ଜାଣି ମଧ୍ୟ କେହି ସେମାନଙ୍କୁ ବାସ ପ୍ରଦାନ କରୁ ନଥିଲେ ମାତ୍ର ଆପନ୍ନାଙ୍କର ବାସଭବନ ରାଜନୈତିକ ନେତା ଓ କର୍ମୀମାନଙ୍କର ନିମିତ୍ତ ସର୍ବଦା ଅବାରିତ ଥିଲା । ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ, ପଣ୍ଡିତ ନୀଳକଣ୍ଠ ତାଙ୍କର ଆତିଥ୍ୟ ଗ୍ରହଣ କରୁଥିଲେ । କଂଗ୍ରେସ ବାର୍ତ୍ତା ପ୍ରଚାର ନିମିତ୍ତ ପାରଳାଖେମୁଣ୍ଡି ଆସିଲେ ସେମାନେ ଓ ଅନ୍ୟ ବିଭିନ୍ନ ମତବାଦୀ ଜାତୀୟତାବାଦୀ ନେତାମାନେ ତାଙ୍କ ମଠ ବା ବାସଗୃହରେ ରହୁଥିଲେ ।

୧୯୧୬ ମସିହାରେ ଭାଦ୍ରବ ମାସ ଜଗନ୍ନାଥ ମହାପ୍ରଭୁଙ୍କର ସାତପୁରୀ ବା ସପ୍ତପୁରୀ ଅମାବାସ୍ୟା ଦିନ ପଣ୍ଡିତ ଗୋପବନ୍ଧୁ ଆପନ୍ନାଙ୍କର ବାସଭବନରେ ଥାନ୍ତି । ଏହି ଅମାବାସ୍ୟା ଦକ୍ଷିଣ ଓଡ଼ିଶା ବିଶେଷ କରି ପାରଳାଖେମୁଣ୍ଡିରେ କୁଣ୍ଡାକୁଣ୍ଡି ଅମାବାସ୍ୟା ନାମରେ ପରିଚିତ । 'ଭାଷାକୋଷ' ବା 'ଭାଷାତତ୍ତ୍ୱ ଅଭିଧାନ'ରେ କୁଣ୍ଡାକୁଣ୍ଡି ବା କୁଣ୍ଡିଆକୁଣ୍ଡି ଉଁଆସକୁ ବନ୍ଧୁମାନଙ୍କର ପରସ୍ପରକୁ ଆଲିଙ୍ଗନ କରିବାର ଦିନ ବୋଲି ବର୍ଣ୍ଣନା କରାଯାଇଛି । ମାତ୍ର ଏହାର ଏକ ସାମାଜିକ ଓ ଐତିହାସିକ ଦିଗ ଅଛି । ପୂର୍ବକାଳରେ ଏହି ଦିନ ଗୟା ଶ୍ରାଦ୍ଧ ବା ଜଗନ୍ନାଥଙ୍କ ଦର୍ଶନ ଉଦ୍ଦେଶ୍ୟରେ ପରିଣତ ବୟସର ଲୋକମାନେ ଗୃହତ୍ୟାଗ କରି ଯାତ୍ରା ଆରମ୍ଭ କରୁଥିଲେ । ଯିବାପୂର୍ବରୁ ସେମାନେ ନିଜର ମୂଲ୍ୟବାନ ଧନରତ୍ନ ଅଳଙ୍କାର ଆଦି ଗ୍ରାମର ବିଶିଷ୍ଟ ଧନୀଙ୍କର ପାଖରେ ଜମା ରଖି ଯାଉଥିଲେ । ଫେରିଲେ ସେମାନେ ତାଙ୍କଠାରୁ ତାହା ଫେରସ୍ତ ନେଉଥିଲେ । ଯଦି ତୀର୍ଥରେ ବା ଯାତ୍ରାପଥରେ ମୃତ୍ୟୁ ହେଉଥିଲା, ଉତ୍ତରାଧିକାରୀମାନେ ତାହା ପାଉଥିଲେ କେହି ନ୍ୟସ୍ତ ଧନ ଦେବାରେ କାଳେ ଆପତ୍ତି କରିପାରେ ଏଥିପାଇଁ ସେଇ ଉଁଆସି ଦିନ ପୂର୍ବାହ୍ନରେ ନିଜର ଅଳଙ୍କାରମାନ ଝିଅବୋହୂମାନଙ୍କୁ ପିନ୍ଧାଇ ସେମାନଙ୍କୁ ସାହିରେ ବୁଲାଇ ଆଣୁଥିଲେ । ଭବିଷ୍ୟତରେ ଅଳଙ୍କାରର ମାଲିକାନା ନେଇ ଦ୍ୱନ୍ଦ୍ୱ ଉପୁଜିଲେ ପଡ଼ୋଶୀମାନେ ସାକ୍ଷ୍ୟ ଦେବେ ଏହି ଉଦ୍ଦେଶ୍ୟ ରଖି ସେ ଦିନ ଏହା କରାଯାଉଥିଲା । ପାରଳାର ପଣ୍ଡିତ ଯୁଗଳ କିଶୋର ପାଣିଗ୍ରାହୀଙ୍କ ମତରେ କୁଣ୍ଡା ଅର୍ଥ ମାଟି କଳସୀ କୁଣ୍ଡୀ ଅର୍ଥ ପନିକୀ । ପୂର୍ବପୁରୁଷର ଯେଉଁମାନେ ତୀର୍ଥ ପର୍ଯ୍ୟଟନ ଉଦ୍ଦେଶ୍ୟରେ ଘର ଛାଡ଼ନ୍ତି ସେମାନେ ସାଙ୍ଗରେ ପାଣି ପାଇଁ କଳସୀ, ପରିବା କାଟିବାକୁ ପନିକୀ ଓ ଅନ୍ୟାନ୍ୟ ଗୃହୋପକରଣ ଓ ଖାଦ୍ୟ ଆଦି ଧରିଥାନ୍ତି । କେତେକ ଫେରନ୍ତି, କେତେକ ଅଣଲେଉଟା ରହିଯାନ୍ତି ।

ସେଇମାନଙ୍କର ସ୍ମୃତିଚାରଣ ଉଦ୍ଦେଶ୍ୟରେ ପରବର୍ତ୍ତୀ କାଳରେ ବଂଶଧରମାନେ କୁଣ୍ଡାକୁଣ୍ଡି ଉଁଆସ ପାଳନ କରନ୍ତି । ସେଦିନ ଛୋଟ ଛୋଟ ଝିଅମାନଙ୍କ ହାତରେ କଣ୍ଢେଇର ମାଟି କଳସୀ, ପନିକୀ, କାତି ଆଦି ଧରାଇ, ଦେଶଜ ଖଜା, ପିଠା, ମୁଗୁଡ଼ି ଖଜା, ଠୁଳକା ଖଜା, ଓଖର ଖଜା,ରାଶି ଖଜା ଓ ଚହ୍ଲା ଆଦି ନେଇ ଗୀତ ବୋଲି ସାହି ପରିକ୍ରମା କରନ୍ତି ଗୀତରେ ଥାଏ "ଓଡ଼ିଶାକୁ ଯିବି ବୋଲି ପିନ୍ଧିଥିଲି ପାଟ, ଓଡ଼ିଶାର ଲୋକମାନେ ନଛାଡିଲେ ବାଟ" ଆସ ଗୋ, ଗଙ୍ଗା ଯିବା, ଗୟା ଯିବା ଇତ୍ୟାଦି ଇତ୍ୟାଦି ।

ଓଡ଼ିଶା କହିଲେ ଏଥିରେ ଶ୍ରୀଜଗନ୍ନାଥ କ୍ଷେତ୍ରକୁ ବୁଝାଇଥାଏ । କଳିଙ୍ଗ ରାଜ୍ୟର ଯାତ୍ରୀ ହୁଏତ ଏହା କହୁଥିବେ । ସେଇଦିନ ପଣ୍ଡିତ ଗୋପବନ୍ଧୁ ଓ ନୀଳକଣ୍ଠଙ୍କ ସହିତ ସାକ୍ଷାତ ଓ କଥୋପକଥନ ସମୟରେ ଜଣେ ବୃଦ୍ଧ ଆସି ଆପନ୍ନାଙ୍କୁ ନମସ୍କାର କରି ଗୋଟିଏ ଗୋଟିଏ ପୁଟୁଳି ଦେଇ ଯାଉଥାନ୍ତି ଓ ଆପନ୍ନା କୋଠରୀ ଭିତରକୁ ଯାଇ ତାକୁ ରଖି ଆସି 'ରହିଲା' ବୋଲି କହି ସେମାନଙ୍କୁ ବିଦାୟ ଦେଇ ଯାଉଥାଆନ୍ତି । ପଣ୍ଡିତ ଗୋପବନ୍ଧୁଙ୍କର ଆଗ୍ରହ ଓ କୌତୂହଳ ଦେଖି ଆପନ୍ନା ଉଁଆସର ତାତ୍ପର୍ଯ୍ୟ ବୁଝାଇ ଦେଲେ ଗୋପବନ୍ଧୁ ଏହା ବୀମା ବା ଇନସିଓରାନ୍‌ସର ଏକ ଆଦିମ ସଂସ୍କରଣ ବୋଲି ସମସ୍ତଙ୍କୁ କହିଥିଲେ । ଗୋପବନ୍ଧୁଙ୍କର ସଂସ୍ପର୍ଶରେ ଆସି ଆପନ୍ନା ନିଜର ପୁତ୍ର ଶଶିଭୂଷଣ (ପୂର୍ବତନ ନଗରପାଳ ଭୁବନେଶ୍ୱର ପରିଚ୍ଛାଙ୍କର ପିତା) ଓ କୃଷ୍ଣଚନ୍ଦ୍ରଙ୍କୁ ଏବଂ ନିଜ ଭାଇ ମଦନମୋହନଙ୍କ ପୁତ୍ର ବୃନ୍ଦାବନ ଓ ବ୍ରଜସୁନ୍ଦରଙ୍କୁ ସତ୍ୟବାଦୀ ବନବିଦ୍ୟାଳୟରେ ଶିକ୍ଷା ନିମିତ୍ତ ପଠାଇଥିଲେ । ସେ ମଧ ଟାଙ୍ଗୁଡ଼ି ଶାସନର ରାମକୃଷ୍ଣ ମିଶ୍ରଙ୍କୁ ପ୍ରବର୍ତ୍ତାଇ ତାଙ୍କର ଭାଇ ରମେଶ ଚନ୍ଦ୍ର ମିଶ୍ର (ପରେ ଜିଲ୍ଲାଜଜ) ଗଣେଶ ଚନ୍ଦ୍ର ମିଶ୍ର (ପରେ ପୁଲିସ ଇନ୍‌ସପେକ୍ଟର) ଓ ରଙ୍ଗନାଥ ମିଶ୍ର; ଜୟକୃଷ୍ଣ ମିଶ୍ରଙ୍କୁ ସେଠାରେ ବିଦ୍ୟାଳାଭ ନିମିତ୍ତ ପଠାଇଥିଲେ । ଶୁଣାଯାଏ, ଏଇମାନଙ୍କୁ ଲକ୍ଷ୍ୟ କରି ଗୋପବନ୍ଧୁ ମନ୍ତବ୍ୟ ଦେଲେ ପାଠ ପଢ଼ିଲେ ଏଇମାନେ ଦିନେ ବ୍ରିଟିଶ କେଶରୀର କେଶରକୁ ନିର୍ଭୟରେ ଟାଣି ତଳେ ପକାଇଦେବେ ।

୧୯୨୪ ମସିହା ଜାନୁଆରୀ ମାସ ୨୭ ତାରିଖ । ଉତ୍କଳ ସମ୍ମିଳନୀର ସ୍ଥାୟୀ ବୈଠକ ବ୍ରହ୍ମପୁର ସ୍ୱରାଜ୍ୟ ଆଶ୍ରମରେ ବସିଥାଏ । କଟକର ଓକିଲ ବିଚିତ୍ରାନନ୍ଦ ଦାସ ଏଥିରେ ସଭାପତିତ୍ୱ କରୁଥାଆନ୍ତି । ଆନ୍ଧ୍ର ଓ ଉତ୍କଳ ସୀମା ନିର୍ଦ୍ଧାରଣ ମୁଖ୍ୟ ବିଚାରସବୁ ଥାଏ । ଆପନ୍ନା ପରିଚ୍ଛା ଏହି ସଭାକୁ ଯାଇ ନଥାନ୍ତି । ମାତ୍ର ଲକ୍ଷ୍ମୀଧର ମହାନ୍ତିଙ୍କର ପ୍ରସ୍ତାବନା ରାମକୃଷ୍ଣ ରଥଙ୍କର ଅନୁମୋଦନ ଓ ଗୋପବନ୍ଧୁ ଚୌଧୁରୀଙ୍କର ସମର୍ଥନ

କ୍ରମେ ତିନି ନମ୍ବର ପ୍ରସ୍ତାବରେ ଗୋଟିଏ କମିଟି ଗଠନ କରାଗଲା । ଏଥିରେ ଶଶିଭୂଷଣ ରଥ, ବିଶ୍ୱନାଥ ଦାସ, ଲିଙ୍ଗରାଜ ପାଣିଗ୍ରାହୀ, ଲାଲମୋହନ ପଟ୍ଟନାୟକ ଓ ଆପଣ୍ଣା ପରିଚ୍ଛା ସଭ୍ୟ ରହିଲେ । ଲାଲମୋହନ ପଟ୍ଟନାୟକ ଏହାର ପରିଚାଳକ ଓ ସମ୍ପାଦକ ରହିଲେ । ଆନ୍ଧ୍ର ଉତ୍କଳର ସୀମା ନିର୍ଦ୍ଦେଶ ସମ୍ବନ୍ଧରେ ରିପୋର୍ଟ ପ୍ରସ୍ତୁତ ଓ ପ୍ରମାଣ ସଂଗ୍ରହ କରିବା ଏବଂ ଏହା କଂଗ୍ରେସର ସୀମା-ନିର୍ଦ୍ଦେଶ-କମିଟି ସମକ୍ଷରେ ଉପସ୍ଥାପିତ କରିବା ନିମନ୍ତେ ଏହି କମିଟି ଗଠିତ ହୋଇଥିଲା । ଆପଣ୍ଣା ଏହି ବୈଠକରେ ଉପସ୍ଥିତ ନ ଥିଲେ ତଥାପି ତାଙ୍କୁ ଏଥିରେ ଅନ୍ତର୍ଭୁକ୍ତ କରାଯାଇ ସୀମା ନିର୍ଦ୍ଦେଶ କାର୍ଯ୍ୟରେ ତାଙ୍କର ସହଯୋଗର ଗୁରୁତ୍ୱ ଦର୍ଶାଇଥିଲେ । (ଉତ୍କଳ ଦୀପିକା-୯.୨.୧୯୨୪)

୧୯୨୭ ମସିହା । ମହାତ୍ମା ଗାନ୍ଧୀ ମାନ୍ଦ୍ରାଜ ପ୍ରଦେଶ ଅନ୍ତର୍ଗତ ଶ୍ରୀକାକୁଳମକୁ ଆସିଥାଆନ୍ତି । ସେଠାରୁ ତାଙ୍କ ପାରଳାଖେମୁଣ୍ଡି ଆଣିବାକୁ ଆପଣ୍ଣା ସର୍ବପ୍ରଥମେ ଉଦ୍ୟମ କଲେ । ଅନ୍ୟମାନେ ଆଗ୍ରହାନ୍ୱିତ ହେଲେ । ସେ ସମୟରେ ଶ୍ରୀକାକୁଳମରେ ସହକାରୀ ଇଂଜିନିୟର ହରିଶ୍ଚନ୍ଦ୍ର (ଆଡ଼ଭୋକେଟ ଗୋପୀନାଥ ପାଢୀଙ୍କର ପିତୃବ୍ୟ) ନିଜର ଚେଭରଲେଟ ଗାଡିରେ ତାଙ୍କୁ ବସାଇ ନିଜେ ଗାଡ଼ି ଚଳାଇ ତାଙ୍କୁ ପାରଳାଖେମୁଣ୍ଡି ଆଣି ଆସିଲେ । ହରିଶ୍ଚନ୍ଦ୍ର ନିଜେ ଜଣେ ରାଜକର୍ମଚାରୀ ଥିଲେ । ତଥାପି ସରକାରୀ କୋପଦୃଷ୍ଟି ପ୍ରତି ଭ୍ରୂକ୍ଷେପ ନକରି ସେ ନିଜର ଜାତୀୟ କର୍ମ ସମ୍ପାଦନ କଲେ । ବର୍ତ୍ତମାନ ସହରରେ ଗୋପାଳକୃଷ୍ଣ ପାଠାଗାର ଓ ପାର୍କ ସେ ସମୟରେ ଏକ ଖାଲି ସ୍ଥାନ ଥିଲା । ମହାତ୍ମା ଗାନ୍ଧୀ ଏହି ସ୍ଥାନରେ ନିଜର ଭାଷଣ ଦେଇଥିଲେ । ତାଙ୍କର ହିନ୍ଦୀ ଭାଷଣକୁ ପୂର୍ବତନ ରାଷ୍ଟ୍ରପତି ବରାହଗିରି ଭେଙ୍କଟଗିରିଙ୍କର ପିତା ବ୍ରହ୍ମପୁର ଓକିଲ ଜୋଗେୟା ପାନ୍ତୁଲୁ ତେଲୁଗୁରେ ଓ କଟକର ପୂର୍ବତନ ମନ୍ତ୍ରୀ ରାଜକୃଷ୍ଣ ବୋଷ ଓଡ଼ିଆରେ ଅନୁବାଦ କରି ଲୋକମାନଙ୍କୁ ଶୁଣାଇ ବୁଝାଇ ଦେଇଥିଲେ । ସେଦିନ କଲେଜରେ ବିଦ୍ୟାର୍ଥୀମାନଙ୍କ ପରୀକ୍ଷା ଫିସ ଦାଖଲ କରିବାର ଦିନ ଥିଲା । ପରେ ଓଡ଼ିଶାର ଶିକ୍ଷା ବିଭାଗର ଡାଇରେକ୍ଟର ଅଧ୍ୟାପକ ସଚ୍ଚିଦାନନ୍ଦ ରାୟ ବି.ଏ.(ଅକ୍‌ସଫୋର୍ଡ) ସେ ସମୟରେ କଲେଜର ଅଧ୍ୟକ୍ଷ ଥିଲେ । ଛାତ୍ରମାନେ ଯେପରି ମହାତ୍ମାଙ୍କୁ ଦେଖିପାରିବେ ଓ ତାଙ୍କର ଭାଷଣ ଶୁଣି ପାରିବେ ଏହି ଉଦ୍ଦେଶ୍ୟରେ ସେ ଫିସ ଦାଖଲ ସେଦିନ ପାଇଁ ସ୍ଥଗିତ ରଖିଥିଲେ । ଆପଣ୍ଣାଙ୍କର ଉଦ୍ୟମ ଓ ଉତ୍ସାହ ଫଳରେ ପାରଳାଖେମୁଣ୍ଡିର ଲୋକମାନେ ମହାତ୍ମାଙ୍କର ଦର୍ଶନ ଲାଭ କରି କୃତ୍ୟକୃତ୍ୟ ହେଲେ ଓ ତାଙ୍କୁ ଅଶେଷ କୃତଜ୍ଞତା ଜ୍ଞାପନ କଲେ ।

୧୯୩୯ ମସିହା ଜୁଲାଇ ମାସ ୨୪ ତାରିଖରେ ନିଜ ବାସଗୃହରେ ପ୍ରାୟ

ଏକଷଠି ବର୍ଷ ବୟସରେ ଆପନ୍ନାଙ୍କର ମୃତ୍ୟୁ ହୁଏ । ରାଜନୈତିକ ଚେତନା, ଶିକ୍ଷା, କଳା ଓ ସଂସ୍କୃତିର ପ୍ରଚାର କ୍ଷେତ୍ରରେ ତାଙ୍କର ଦାନ ଅବିସ୍ମରଣୀୟ ।





ଆପନ୍ନା ପରିଚ୍ଛା

# ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ

ପାରଳାଖେମୁଣ୍ଡି ସହରରେ ମହାରାଜାଙ୍କର ୭୭ତମ ଜନ୍ମ ଦିବସ ପୌର ପରିଷଦ ଆନୁକୂଲ୍ୟରେ ପାଳିତ ହୋଇ ସେହି ଉପଲକ୍ଷେ ଦୈନିକ 'ସମାଜ'ଓ ଅନ୍ୟ କେତେକ ସଂବାଦପତ୍ରରେ ମହାରାଜାଙ୍କର ଏକ ସଂକ୍ଷିପ୍ତ ଜୀବନୀ 'ନବ ଉତ୍କଳ ନିର୍ମାତା ପାରଳାଖେମୁଣ୍ଡି ମହାରାଜା' ଶୀର୍ଷକ ପବନ୍ଧ ରୂପେ ପ୍ରକାଶ ପାଇଥାଏ । ପ୍ରଧାନମନ୍ତ୍ରୀ ଭାବରେ ଇସ୍ତଫା ଦେଇ ଜଣେ ସାଧାରଣ ନାଗରିକ ଭାବରେ ଜୀବନଜାପନ କରୁଥିବା ମହାରାଜାଙ୍କର ଜୀବନୀ ପ୍ରକାଶନ ଓ ତାଙ୍କ ଜନ୍ମଦିବସ ପାଳନ ସ୍ୱାଧୀନତା ପ୍ରାପ୍ତି ପରଠାରୁ କାହା ମନକୁ ଆସୁ ନ ଥାଏ । ପ୍ରବନ୍ଧଟି ପାଠକରି ଅନେକ ବିଦେଶୀ ପାରଳାନିବାସୀ ସେମାନଙ୍କର ଆନନ୍ଦ ପ୍ରକାଶ କଲେ । କଟକ ସହରରେ ଅବସ୍ଥାନ କରୁଥିବା ପ୍ରଖ୍ୟାତ ସାମ୍ବାଦିକ, ସାହିତ୍ୟିକ ଓ ଓଡ଼ିଆ ସାହିତ୍ୟର ଇତିହାସ ଲେଖକ ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ, ଏମ୍.ଏ. ପ୍ରବନ୍ଧ ଲେଖକଙ୍କୁ ଜଣାଇଲେ ଯେ ସେ ପାରଳା ଜମିଦାରୀ ଅନ୍ତର୍ଗତ ସହର ନିକଟବର୍ତ୍ତୀ ଦଶରଥପୁର ବାସିନ୍ଦା । ଅପର୍ ପ୍ରାଇମେରୀ ଠାରୁ ଆରମ୍ଭ କରି ପାରଳାରେ ଆଇ.ଏସ୍.ସି ଓ ବିଜୟନଗରରେ ବି.ଏ. ପଢ଼ିବା ପର୍ଯ୍ୟନ୍ତ ସେ ରାଜାଙ୍କଠାରୁ ଫ୍ରି ସ୍କଲରସିପ୍ ପାଇଛନ୍ତି । ସେ ଓ ତାଙ୍କର ଭାଇମାନେ ସମସ୍ତେ ରାଜାଙ୍କ ପ୍ରଦତ୍ତ ବୃତ୍ତି ବଳରେ ଉଚ୍ଚଶିକ୍ଷା ଲାଭ କରି ଜୀବିକା ଅର୍ଜନ କରୁଅଛନ୍ତି । ମହାରାଜାଙ୍କର ଦେଶପ୍ରୀତି ଅବଦାନ ସ୍ମରଣରେ ସେ ଗର୍ବିତ । ସେ ପର୍ଯ୍ୟନ୍ତ ଆମ୍ଭେମାନେ ତାଙ୍କୁ ପାରଳାଖେମୁଣ୍ଡିର ଅଧିବାସୀ ଭାବେ ଜାଣି ନଥିଲୁ । କଟକ ସହରରେ ୧୯୩୦ ମସିହା ଠାରୁ ସେ ସାମ୍ବାଦିକ ଓ ସାହିତ୍ୟିକ ଭାବେ ସୁପରିଚିତ ଥିଲେ । ପ୍ରଥମ କଂଗ୍ରେସ ମନ୍ତ୍ରୀମଣ୍ଡଳ ସମୟରେ ନାରୀନେତ୍ରୀ ସରଳା ଦେବୀଙ୍କ ସହିତ ମିଶି ହିନ୍ଦୁସ୍ଥାନ ଗ୍ରନ୍ଥମାଳାର ସେ ପ୍ରତିଷ୍ଠାତା ଥାଇ ଅନେକ ଉପାଦେୟ ପୁସ୍ତକ ପ୍ରକାଶ କରିଥାଆନ୍ତେ । ବୋଧହୁଏ ସେହିଦିନୁ ପାରଳା ସହିତ ତାଙ୍କର ସମ୍ପର୍କ କ୍ଷୀଣତର ହୋଇଯାଇଥାଏ । ପରବର୍ତ୍ତୀ ୭୮ ତମ ଜନ୍ମଦିବସ ତା ୧୭.୪.୬୯ ରେ ପାଳିତ ହେବାକୁ ନିଷ୍ପତ ନିଆଯାଇ ତାଙ୍କୁ ଜଣାଇ ଦେବାରୁ ସେ ପ୍ରକାଶିତ ହେବାକୁ ଯାଉଥିବା ଅଭିନନ୍ଦନ ଗ୍ରନ୍ଥ ନିମିତ୍ତ 'ଦେଶପ୍ରାଣ କୃଷ୍ଣଚନ୍ଦ୍ର ଗଜପତି' ପ୍ରବନ୍ଧ ପ୍ରଥମେ ଉକ୍ତ ଉତ୍ସବ କମିଟିର ସମ୍ପାଦକ ପଣ୍ଡିତ ଯୁଗଳକିଶୋର ପାଣିଗ୍ରାହୀଙ୍କୁ ପଠାଇ ଦେଇଥିଲେ । ତାହା ସହିତ ୧୯୩୩ ମସିହା ମେ ଓ ସେପ୍ଟେମ୍ବର ମାସରେ

ଉତ୍କଳଗୌରବ ମିଷ୍ଟର ଦାସଙ୍କୁ ମହାରାଜା ଲେଖିଥିବା ଦୁଇଟି ଦୁର୍ଲଭ ପତ୍ର ମଧ୍ୟ ସେ ପ୍ରକାଶନ ନିମିତ୍ତ ପଠାଇ ଦେଇଥିଲେ । ପ୍ରକାଶନରେ ବିଳମ୍ବ ହେବା ଯୋଗୁଁ ଜଣେ ସାମ୍ବାଦିକଭାବରେ ସେ କ'ଣ ସାହାଯ୍ୟ କରି ପାରନ୍ତି ତାହା ପତ୍ରଯୋଗେ ବୁଝୁଥିଲେ । ପାରଳାଖେମୁଣ୍ଡିରେ ତାଙ୍କ ସହଧ୍ୟାୟୀ ଓ ସହକର୍ମୀମାନେ କ୍ରମେ ନିଃଶେଷ ହୋଇ ଯାଉଥିବାରୁ ତାଙ୍କ ପୂର୍ଣ୍ଣାଙ୍ଗ ଜୀବନୀ ସଂଗ୍ରହ ନ ହୋଇଥିବା ପରିତାପର ବିଷୟ ।

ପଣ୍ଡିତ ସୂର୍ଯ୍ୟନାରାୟଣ ୧୯୦୮ ମସିହା ଜୁଲାଇ ପହିଲା ତାରିଖରେ ଦଶରଥପୁର ଶାସନରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ବାଲୁଙ୍କେଶ୍ୱର ଦାସ, ମାତ, କ୍ଷିତୀ ଦେବୀ । ଭାଷା ବିଜ୍ଞାନୀ ପଣ୍ଡିତ ଗୋପୀନାଥ ନନ୍ଦ ତାଙ୍କ ପିଉସା । ସୂର୍ଯ୍ୟନାରାୟଣ ପ୍ରଥମେ ଗ୍ରାମ ଚାଟଶାଳୀ ଓ ପରେ ରାଜଗୁରୁ ସାହିରେ ପିଉସାଙ୍କ ତତ୍ତ୍ୱାବଧାନରେ ଅପର ହାଇସ୍କୁଲ ଏସ.ଏସ.ଏଲ.ସି (ସେକେଣ୍ଡାରି ସ୍କୁଲ ଲିଭିଂ ସାର୍ଟିଫିକେଟ-ମାଟ୍ରିକୁଲେସନର ଅନ୍ୟନାମ) ୧ମ ଶ୍ରେଣୀରେ ପ୍ରଥମ ହୋଇ ପାସ୍ କରି ପରେ ପାରଳା କଲେଜରେ ଆଇ.ଏସ୍.ସି ପଢିଲେ । ସେତେବେଳେ ପାରଳା କଲେଜରେ ବି.ଏ ନଥିଲା । ତେଣୁ ରାଜବୃତ୍ତି ପାଇ ସେ ବିଜୟନଗର କଲେଜରେ ୧୯୨୫ ଓ ୧୯୨୬ ଦୁଇବର୍ଷ ବି.ଏ ପଢ଼ିଲେ । ବିଜୟନଗର କଲେଜ ସ୍ଥାନୀୟ ମହାରାଜାଙ୍କର ପରିଚାଳିତ ଓ ପ୍ରତିଷ୍ଠିତ । ସେଠାରେ ଗଞ୍ଜାମ ଓ କୋରାପୁଟ (ଜୟପୁର) ର ଅନେକ ଛାତ୍ର ପଢୁଥାନ୍ତି । ସେମାନଙ୍କ ମଧ୍ୟରୁ ଅନେକ ରାଜବୃତ୍ତି ଜମିଦାରିମାନଙ୍କ ଠାରୁ ପାଉଥାଆନ୍ତି । ସୂର୍ଯ୍ୟନାରାୟଣ ସେମାନଙ୍କୁ ସଙ୍ଗଠିତ କଲେ । ବିଜୟନଗର ଓଡ଼ିଆ ଛାତ୍ର ସଂଘର ସେ ସମ୍ପାଦକ ଥିଲେ । ସେତେବେଳୁ ସେ ସମ୍ବାଦପତ୍ରମାନଙ୍କରେ ଲେଖାଲେଖି ଆରମ୍ଭ କରିଥାଆନ୍ତି । ବାଲ୍ୟବିବାହ ବିରୋଧ, ଯୁବତୀ ବିବାହ ପ୍ରବର୍ତ୍ତନ ଓ ଅନ୍ୟାନ୍ୟ ସାମାଜିକ କଳଙ୍କ ଓ କୁସଂସ୍କାର ବିଲୋପ ନିମିତ୍ତ ଜନମତ ସୃଷ୍ଟି ଉଦ୍ଦେଶ୍ୟରେ ପ୍ରବନ୍ଧମାନ ଲେଖା ଯାଉଥାଏ । ବି.ଏ. ପାସ କରି ସେ କଟକକୁ ଚାଲି ଆସିଲେ । ସେଠାରେ ନିଜର କର୍ମ କ୍ଷେତ୍ର ବାଛିନେଲେ । ସେତେବେଳେ ଓଡ଼ିଶା ପ୍ରଦେଶ ପୃଥକ ହୋଇ ନଥାଏ, ତଥାପି କଟକ ଓଡ଼ିଶା ରାଜଧାନୀ । ଜ୍ଞାନ ବିଜ୍ଞାନ ଚର୍ଚ୍ଚାର କେନ୍ଦ୍ର । ଓଡ଼ିଶାର ବିଶିଷ୍ଟ କବି ଲେଖକ ସାହିତ୍ୟସେବୀ ଓ ବୁଦ୍ଧିଜୀବୀମାନଙ୍କର ମିଳନ କ୍ଷେତ୍ର । ଭାରତ ସେବକ ସଂଘ (ବର୍ତ୍ତମାନ ହିନ୍ଦୁ ସେବକ ସଂଘ)ର ସଭ୍ୟ ଲକ୍ଷ୍ମୀ ନାରାୟଣ ସାହୁ ଓ ଅନ୍ୟମାନଙ୍କର ସଂସ୍ପର୍ଶରେ ଆସି ସେ ପ୍ରାକୃତିକ ବିପତ୍ତିରେ ସାହାଯ୍ୟ ନିମିତ୍ତ ଗଠିତ ଓଡ଼ିଶାର ବନ୍ୟା ଓ ଦୁର୍ଭିକ୍ଷ ସାହାଯ୍ୟ କମିଟିର ସଂପାଦକ ହୋଇ ୧୯୩୦ ମସିହାରୁ ୧୯୩୩ ପର୍ଯ୍ୟନ୍ତ କାର୍ଯ୍ୟକଲେ ।

ସାମ୍ବାଦିକଭାବେ ସମାଜ, ଦୈନିକ ଆଶା, ନିଉ ଓଡିଶା ଓ ଅନ୍ୟାନ୍ୟ ସମ୍ବାଦ ପତ୍ରରେ କାର୍ଯ୍ୟ କରି ସୁନାମ ଅର୍ଜନ କଲେ । ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପରେ ସେ ସେଠାରୁ ଓଡ଼ିଆ ଭାଷା ଓ ସାହିତ୍ୟରେ ଏମ.ଏ.ପାସ କଲେ ।

ସାମ୍ବାଦିକମାନଙ୍କୁ ସଂଗଠିତ କରି ସେ ଉତ୍କଳ ସାମ୍ବାଦିକ ସଂଘ ପ୍ରତିଷ୍ଠା କରିଥିଲେ ଓ ୧୯୪୭-୪୮ ରେ ଏହାର ପ୍ରଥମ ସଭାପତି ହୋଇଥିଲେ । ସମ୍ବାପତ୍ର ଓ ସମ୍ବାଦ ଏଜେନ୍‌ସି ଲେଖା, ସାଧାରଣ ସାହିତ୍ୟିକ ପ୍ରବନ୍ଧ ଲେଖାରେ ସେ ବିଶେଷ ଦକ୍ଷତା ଅର୍ଜନ କଲେ ।

ସ୍ୱାଧୀନତା ପ୍ରାପ୍ତିପରେ ଓଡ଼ିଶା ସରକାର ସ୍ୱାଧୀନତା ସଂଗ୍ରାମ ଇତିହାସ ପ୍ରଣୟନ ନିମିତ୍ତ ଡକ୍ଟର ହରେକୃଷ୍ଣ ମହତାବଙ୍କ ନେତୃତ୍ୱରେ ଗଠନ କରିଥିବା କମିଟିର ସେ ସଭ୍ୟ ଥିଲେ । ୧୯୫୪ ମସିହାରେ ଓଡ଼ିଶା ସରକାରୀ ଭାଷା ଆଇନ ପାସ ହେବାପରେ ଅଧାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଅଧକ୍ଷତାରେ ଗଠିତ ଓଡ଼ିଆ ପରିଭାଷା କମିଟିର ସେ ସଦସ୍ୟ ଥିଲେ । ସେହିମାନଙ୍କ ପରିଶ୍ରମ ଫଳରେ ୧୯୫୫ ମସିହାରେ ପ୍ରଥମେ ଓଡ଼ିଶା ପ୍ରାଶାସନିକ ଶବ୍ଦକୋଷ ପ୍ରକାଶ ପାଇଥିଲା ଓ ରାଜଭାଷାରୂପେ କୋର୍ଟ କଚେରୀ ଓ ସରକାରୀ ଦପ୍ତରରେ ଓଡ଼ିଆ ଭାଷା ବ୍ୟବହାରର ମାର୍ଗ ସୁଗମ କରାଯାଇ ପାରିଥିଲା । ପଣ୍ଡିତ ସୂର୍ଯ୍ୟନାରାୟଣ ଓଡ଼ିଶାର ସଂସ୍କୃତି ଓ ଇତିହାସ ଉପରେ ଅନେକ ଉପାଦେୟ ପ୍ରବନ୍ଧ ଲେଖିଅଛନ୍ତି । ଏହା ବ୍ୟତୀତ ଓଡ଼ିଆରେ ସେ ପ୍ରାୟ ଏକ ଶହ ଦଶଖଣ୍ଡ ପୁସ୍ତକ ରଚ଼ନା କରିଅଛନ୍ତି । ମୃତ୍ୟୁ ସମୟ ବେଳକୁ ତାଙ୍କର ୨୫ ଖଣ୍ଡରୁ ଊର୍ଦ୍ଧ୍ୱ ଗ୍ରନ୍ଥ ଅପ୍ରକାଶିତ ଥିଲା । ତାଙ୍କ ପୁସ୍ତକମାନଙ୍କ ମଧ୍ୟରେ ୪ଖଣ୍ଡ ସମଗ୍ର ଓଡ଼ିଆ ସାହିତ୍ୟର ଇତିହାସ, କଥା ଓ କାହାଣୀ ମାଳା (୭ଖଣ୍ଡ), ଶ୍ରୀ ଜଗନ୍ନାଥ ମନ୍ଦିର କଥା, ଊନବିଂଶ ଶତାବ୍ଦୀର ଓଡ଼ିଶା, ଓଡ଼ିଶାରେ ବନ୍ୟା ଓ ଦୁର୍ବିପାକ, ଓଡ଼ିଶାରେ ଶିଳ୍ପ ଓ ବାଣିଜ୍ୟ, ଓଡ଼ିଶାରେ ସିପାହୀ ବିଦ୍ରୋହୀର ଝଲକ, ଉତ୍କଳମଣି ଗୋପବନ୍ଧୁ, ଉତ୍କଳଗୌରବ ମଧୁସୂଦନଙ୍କ ଜୀବନୀ ଦେଶପ୍ରାଣ ମଧୁସୂଦନ ଅତ୍ୟନ୍ତ ଲୋକପ୍ରିୟ । ସାହିତ୍ୟ କ୍ଷେତ୍ରରେ ତାଙ୍କୁ ବହୁ ସମ୍ମାନ ମିଳିଥିଲା ।

କେନ୍ଦ୍ର ଓ ରାଜ୍ୟ ସାହିତ୍ୟ ଏକାଡେମୀ ତାଙ୍କୁ ସମ୍ମାନିତ କରିଥିଲେ । ଏହା ବ୍ୟତୀତ ପ୍ରଜାତନ୍ତ୍ର ପ୍ରଚାର ସମିତି, ଗୌରୀଶଙ୍କର ସ୍ମୃତି ସଂସଦ, ଉତ୍କଳ ପାଠକ ସଂଘ, ପାରଳା ସାରସ୍ୱତ ଉତ୍ସବ, କଳିଙ୍ଗ ସାଂସ୍କୃତିକ ପରିଷଦ ଆଦି ଓଡ଼ିଶାର ଅନେକ ପ୍ରତିଷ୍ଠିତ ଅନୁଷ୍ଠାନ ତାଙ୍କୁ ବିଭିନ୍ନ ସମୟରେ ସମ୍ବର୍ଦ୍ଧନା ଜଣାଇଥିଲେ । ପ୍ରାୟ ୭୪ ବର୍ଷ ବୟସରେ ୧୯୮୨ ମସିହା ଜୁଲାଇ ୧୧ ତାରିଖରେ କଟକ ପୁରୁଣା କଲେଜ ଲେନ୍‌ରେ ଲଣ୍ଡା

ଦେଉଳଠାରେ ପ୍ରାଣତ୍ୟାଗ କଲେ । ଜୀବନର ଅଧିକାଂଶ ସମୟ କଟକ ସହରରେ ନିଷ୍ଠାପର ଭାବରେ ଓଡ଼ିଆ ସାହିତ୍ୟ ଓ ସଂସ୍କୃତି ଚର୍ଚ୍ଚାରେ ସେ ସେମୟରେ କଟାଇଥିଲେ । ପଣ୍ଡିତ ସୂର୍ଯ୍ୟନାରାୟଣ ଅବିବାହିତ ଥିଲେ । ମୃତ୍ୟୁ ବେଳକୁ ଓଡିଶା ସରକାରଙ୍କର ସାହିତ୍ୟିକ ଭତ୍ତା ନିମିତ୍ତ ସେ ମନୋନୀତ ହୋଇଥିଲେ ମଧ ଭତ୍ତା ପାଇ ପାରିନଥିଲେ ।





**ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ**

# ଶତାବ୍ଦୀର ଗବେଷକ ସତ୍ୟନାରାୟଣ ରାଜଗୁରୁ

ଡକ୍ଟର ସତ୍ୟନାରାୟଣ ରାଜଗୁରୁ ୧୯୦୩ ମସିହା ଅଗଷ୍ଟ ୧୯ ତାରିଖରେ ପାରଳାଖେମୁଣ୍ଡିସ୍ଥ ଚିତ୍ରକର ସାହିର ରାଜଗୁରୁ ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତା ପଣ୍ଡିତ ହରିକୃଷ୍ଣ ରାଜଗୁରୁ ଓ ମାତା ସୁନାମଣି ଦେବୀ । ପିତା ମାତା ସତ୍ୟନାରାୟଣ ମହାପ୍ରଭୁଙ୍କର ବ୍ରତ କରି ସନ୍ତାନ ଲାଭ କରିଥିବାରୁ ତାଙ୍କୁ ସତ୍ୟନାରାୟଣ ନାମ ଦେଇଥିଲେ । ଜନ୍ମଲାଭ କରିବାର ସପ୍ତମ ଦିନ ତାଙ୍କର ମାତୃ ବିୟୋଗ ଘଟିଲା । ତେଣୁ, ପରିବାରର ଏକମାତ୍ର ସନ୍ତାନ ରୂପେ ତାଙ୍କୁ ଅତି ଯତ୍ନରେ ଲାଳନ ପାଳନ କରାଗଲା । ପାଞ୍ଚବର୍ଷ ବୟସରେ କର୍ଣ୍ଣବେଧ ବିଧାନ ପରେ ସେ ବର୍ଣ୍ଣବୋଧ ଶିକ୍ଷା ଆରମ୍ଭ କରିଥିଲେ, ନିକଟସ୍ଥ ପ୍ରାଥମିକ ବିଦ୍ୟାଳୟରେ । ଏହାପରେ ସ୍ଥାନୀୟ ହାଇସ୍କୁଲରେ ଶିକ୍ଷାଲାଭ କରି ସେ ଗୃହ ପଣ୍ଡିତଙ୍କ ଠାରୁ ସଂସ୍କୃତ ଓ କର୍ମକାଣ୍ଡ ଶିକ୍ଷା କରିବାକୁ ଲାଗିଲେ । ଯୌବନ ସମୟରେ ସେ ବହୁ ସାଂସ୍କୃତିକ କାର୍ଯ୍ୟକଳାପରେ ଯୋଗ ଦେଇ ଐତିହାସିକ ନାଟକମାନ ଲେଖିବାକୁ ଆରମ୍ଭ କଲେ । ତାଙ୍କର ସର୍ବପ୍ରଥମ ନାଟକ 'ଖାରବେଳ' ଲେଖିଲାବେଳେ ତାଙ୍କୁ ଐତିହାସିକ ବିଷୟବସ୍ତୁ ସଂଗ୍ରହ କରିବାକୁ ପଡ଼ିଲା ।

ସେତେବେଳେ ଓଡ଼ିଶା ଇତିହାସର ବିବରଣୀ ଗ୍ରନ୍ଥ ଆକାରରେ ପ୍ରକାଶ ଜଣା ନଥିଲା । ତେଣୁ ରାଜଗୁରୁ ପାରଳାଖେମୁଣ୍ଡି ମହାରାଜାଙ୍କ ଗୃହ ଲାଇବ୍ରେରୀରୁ ହଣ୍ଟର ସାହେବ ଇଂରାଜୀରେ ଲେଖିଥିବା ଓଡ଼ିଶା ଇତିହାସ ପଢ଼ି ସେଥିରୁ ମାତ୍ର କେତେକ ବିଷୟ ସଂଗ୍ରହ କରି ନାଟକଟି ପୂର୍ଣ୍ଣ କଲେ । କିନ୍ତୁ ଏଥିରେ ସେ ସନ୍ତୁଷ୍ଟ ନଥିଲେ । ଓଡ଼ିଶାର ଐତିହାସିକ ବିଷୟବସ୍ତୁ ସଂଗ୍ରହ କରିବାକୁ ହେଲେ ଅଧିକ ଗ୍ରନ୍ଥ ପାଠ କରିବା ଏବଂ ଇତିହାସ ପ୍ରସିଦ୍ଧ ସ୍ଥାନଗୁଡ଼ିକ ବୁଲି ମୌଳିକ ବିଷୟରେ ଗବେଷଣା କରିବାର ଆବଶ୍ୟକତା ସେ ଉପଲବ୍ଧି କଲେ । ତେଣୁ ସେ ମୁଖଲିଙ୍ଗ (ପ୍ରାଚୀନ କଳିଙ୍ଗ ନଗର) ଶ୍ରୀକୂର୍ମ ଓ ସିଂହାଚଳ ପ୍ରଭୃତି ମନ୍ଦିରରେ ଥିବା ଶିଳାଲେଖାଗୁଡ଼ିକକୁ ପାଠ କରିବାକୁ ସ୍ଥିର କଲେ । ଏଥିପାଇଁ ଲିପିତତ୍ତ୍ୱ ଅନୁଶୀଳନ କରିବା ଆବଶ୍ୟକ । ପାରଳାଖେମୁଣ୍ଡି କେଉଟ ସାହିର ରାଓ ସାହେବ ଗିଡ଼ିଗୁ ଭେଙ୍କଟ ରାମମୂର୍ତ୍ତିଙ୍କ ଠାରୁ ସେ ଘରୋଇଭାବେ ଲିପିତତ୍ତ୍ୱ ଶିକ୍ଷାକଲେ । ଅଖଣ୍ଡ ସାଧନା କରି ଯୁବକ ବୟସରୁ ସେ ଲିପିତତ୍ତ୍ୱରେ କ୍ରମେ ପାରଦର୍ଶିତା

ଲାଭ କଲେ । ତାଙ୍କର ଚବିଶି ବର୍ଷ ବୟସରେ ଅର୍ଥାତ୍ ୧୯୨୭ ମସିହାରେ ସେ କେତୋଟି ଅଜ୍ଞାତ, ଅପଠିତ ତାମ୍ରଲିପି ପାଠକରି "ବିହାର ଓଡ଼ିଶା ଗବେଷଣା ପତ୍ରିକା"ରେ ତାହା ପ୍ରକାଶ କରିଥିଲେ ।

ଖଣ୍ଡିତ ଓଡ଼ିଶାର ମିଶ୍ରଣପାଇଁ ୧୯୨୭ ମସିହାରୁ ଓଡ଼ିଆଙ୍କ ପକ୍ଷରୁ ଆନ୍ଦୋଳନ ତୀବ୍ରତର ହେଲା । ଫିଲିପ୍-ଡ଼ଫ୍ କମିଶନ୍ ପରେ ଯେତେବେଳେ ସାଇମନ୍-କମିଶନ୍ ୧୯୨୭ ମସିହାରେ ଆସିଥିଲେ ସେତେବେଳେ ଶ୍ରୀ ରାଜଗୁରୁଙ୍କ ରାଜନୀତିକ ଚେତନା ବୃଦ୍ଧିଲାଭ କଲା । ୧୯୩୧ ମସିହାର ଜନସୁମାରୀ ବେଳେ ତତ୍କାଳୀନ ମାନ୍ଦ୍ରାଜ୍ ପ୍ରଦେଶର ତେଲୁଗୁମାନେ ଯେଉଁ ଓଡ଼ିଆ ବିରୋଧୀ ଆନ୍ଦୋଳନ ସୃଷ୍ଟି କରିଥିଲେ ତାର ବିରୋଧ କରି ପାରଳାଖେମୁଣ୍ଡିରେ ପ୍ରତିଷ୍ଠିତ 'ଉତ୍କଳ ହତୈଷିଣୀ ସମାଜ' ପକ୍ଷରୁ ଶ୍ରୀ ରାଜଗୁରୁ ବହୁ ପ୍ରବନ୍ଧ ଲେଖି, ଏ ଅଞ୍ଚଳ ବହୁ ପ୍ରାଚୀନ ଯୁଗରୁ କିପରି ଓଡ଼ଆ ରାଜା ଓ ପ୍ରଜାମାନଙ୍କର ଏକ ସାଂସ୍କୃତିକ କେନ୍ଦ୍ରରୂପେ ରହିଆସିଛି ସେଥିରେ ବିବରଣୀ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ କରିଥିଲେ । ଭାଷାଭିତ୍ତିରେ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନପାଇଁ ଚାଲିଥିବା ଜାତୀୟ କାର୍ଯ୍ୟରେ ବରାବର ସାହାଯ୍ୟ କରୁଥିଲେ । 'ଉତ୍କଳ ହିତୈଷିଣୀ' ନାମକ ଏକ ସପ୍ତାହିକ ପ୍ରତିକାର ସମ୍ପାଦକ ରୂପେ ମଧ୍ୟ ସେ କାର୍ଯ୍ୟ କରିଥିଲେ ।

ଇଂରେଜୀ, ଓଡ଼ିଆ, ସଂସ୍କୃତ ଏବଂ ତେଲୁଗୁ ଭାଷାରେ ଲିଖିତ ତାଙ୍କର ବହୁ ମୌଳିକ ଐତିହାସିକ ପ୍ରବନ୍ଧ ଗବେଷଣା ପତ୍ରିକାମାନଙ୍କରେ ପ୍ରକାଶିତ ହୋଇଅଛି । ଏତଦ୍ ବ୍ୟତୀତ ହଲାଣ୍ଡର କେର୍ଣ୍ଣ ଅନ୍‌ଷ୍ଟିଚ୍ୟୁଟ୍ (Kern Institute)ପକ୍ଷରୁ ପ୍ରକାଶିତ ବିବ୍ଲୋଥିକା ଇଣ୍ଡିକା (Biblothica Indica) ନାମକ ଗ୍ରନ୍ଥାବଳୀରେ ଡକ୍ଟର ରାଜଗୁରୁଙ୍କ ମୌଳିକ ପ୍ରବନ୍ଧଗୁଡ଼ିକର ସାରାଂଶ ପ୍ରକାଶ ପାଇଛି ।

ଓଡ଼ିଶା ପ୍ରଦେଶ ଗଠନ ପରେ ଶ୍ରୀ ରାଜଗୁରୁ ମନୋରମା (୧୯୫୮) ନାମକ ଗୋଟିଏ ଐତିହାସିକ କାବ୍ୟ ଲେଖିଥିଲେ । ତାଙ୍କର 'ନାଗ ଇତିହାସ' ଏକ ପ୍ରଧାନ ଐତିହାସିକ ଗ୍ରନ୍ଥ । ଏହି ଦୁଇଟି ବହି ପ୍ରକାଶ ପାଇବାର କେତେବର୍ଷ ଆଗରୁ 'ଜନନୀ ଉତ୍କଳ' ଏବଂ 'ରାଧାଭିଷେକ'(ଗୀତନାଟିକା) ପ୍ରକାଶିତ ହୋଇଥିଲା । ଉତ୍କଳ ସାହିତ୍ୟ, ସହକାର, ନବଭାରତ, ଆସନ୍ତା କାଲି, ନବୀନ, ଦିଗନ୍ତ, ବାରୁଦ, ପଞ୍ଚଜନ୍ୟ, ଶ୍ରୀମନ୍ଦିର, ନିର୍ମାଲ୍ୟ, ଉତ୍କଳପ୍ରସଙ୍ଗ ଓ ବିଭିନ୍ନ ପତ୍ରପତ୍ରିକାରେ ତାଙ୍କର ଉପାଦେୟ ପ୍ରବନ୍ଧମାନ ପ୍ରକାଶ ପାଇଛି । ୧୯୪୭ ମସିହାରେ ଶ୍ରୀ ରାଜଗୁରୁ ଚାକିରୀ କ୍ଷେତ୍ରରେ ପ୍ରବେଶ କରି 'କଳିଙ୍ଗ ଐତିହାସିକ ଗବେଷଣା ସମିତି'ରେ ଯୋଗ ଦେଲେ । ଏହା ପୂର୍ବରୁ ସେ ଆନ୍ଧ୍ର

ବିଶ୍ୱବିଦ୍ୟାଳୟରୁ ଘରୋଇଭାବେ ୫ବର୍ଷିଆ ପାଠ୍ୟକ୍ରମ ସଂପୂର୍ଣ୍ଣ କରି ଉଭୟ ଭାଷା ପ୍ରବୀଣ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ପାରିଥିଲେ । ପ୍ରାୟ ତିନିବର୍ଷ ଭବାନୀପାଟଣାରେ ରହି ସେ ପଶ୍ଚିମ ଓଡ଼ିଶାର ବହୁ ମୂଲ୍ୟବାନ ଐତିହାସିକ ତଥ୍ୟ ଆବିଷ୍କାର କରିଅଛନ୍ତି । ୧୯୫୦ ମସିହାରେ ଭୁବନେଶ୍ୱରଠାରେ ରାଜ୍ୟ ସରକାରଙ୍କ ପକ୍ଷରୁ ସ୍ଥାପିତ 'ଓଡ଼ିଶା ସଂଗ୍ରାହାଳୟ'(Orissa State Museum)ରେ ନିଯୁକ୍ତି ଲାଭ କଲେ ଓ ଅଭିଲେଖ ବିଭାଗର ଭାର ଗ୍ରହଣ କଲେ । ରାଜ୍ୟ ସଂଗ୍ରହାଳୟ ପ୍ରତିଷ୍ଠା କରାଇବାରେ ଡ଼କ୍ଟର ରାଜଗୁରୁଙ୍କ ଭୂମିକା ଉଲ୍ଲେଖନୀୟ ।

ବହୁ ଗ୍ରନ୍ଥ ଅଧ୍ୟୟନ କରି ସେ ପ୍ରଣୟନ କରିଥିବା History of the Gangas (ଦୁଇଭାଗ) ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ଉଦ୍ୟମରେ ଓଡ଼ିଶା ସରକାରଙ୍କ ପକ୍ଷରୁ ପ୍ରକାଶିତ ହୋଇଛି । ଏହାର ପ୍ରଥମ ଭାଗ ପ୍ରକାଶ ପାଇବା ପରେ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଦେବ ଚକ୍ରବର୍ତ୍ତୀ ରାଜଗୋପାଳାଚାରୀଙ୍କୁ ଉପହାର ଦେଇଥିଲେ ଏବଂ ଏହାରି ଉପରେ ଚକ୍ରବର୍ତ୍ତୀ ରାଜଗୋପାଳାଚାରୀ ଏକ ଉଚ୍ଚକୋଟୀର ମନ୍ତବ୍ୟ ଡ଼କ୍ଟର ରାଜଗୁରୁଙ୍କ ନିକଟକୁ ପଠାଇଥିଲେ ।

ଦକ୍ଷିଣ ଓଡ଼ିଶାର ସୀମା ନିର୍ଣ୍ଣୟପାଇଁ States Reorganisation Commission ସମ୍ମୁଖରେ ଉପସ୍ଥାପିତ କରିବାକୁ ସ୍ମାରକ ପତ୍ର ଦାୟିତ୍ୱ ଓଡ଼ିଶା ସରକାର ଶ୍ରୀ ରାଜଗୁରୁଙ୍କୁ ଦେଇଥିଲେ । ଏଥିପାଇଁ ତାଙ୍କର ଅଫିସ ଭୁବନେଶ୍ୱରରୁ ପାରଳାଖେମୁଣ୍ଡିକୁ ଉଠାଇ ଅଣାହେଲା । ବହୁ ଗ୍ରନ୍ଥ ଓ ରିପୋର୍ଟ ଅଧ୍ୟୟନ କରି ସେ ଯେଉଁ ସ୍ମାରକ ପତ୍ର ଇଂରାଜୀରେ ଲେଖିଥିଲେ ତାହା ଓଡ଼ିଶାର ଗଣ୍ୟମାନ୍ୟ ପଣ୍ଡିତମାନଙ୍କ ଦ୍ୱାରା ସମର୍ଥିତ ହୋଇ ପ୍ରକାଶ କରାଗଲା । ଡକ୍ଟର କୁଞ୍ଜୁର ଓ ଡକ୍ଟର ପାନିକରଙ୍କ ପରି ବିଜ୍ଞ ବ୍ୟକ୍ତିଙ୍କ ସମ୍ମୁଖରେ ଡକ୍ଟର ରାଜଗୁରୁ ସାକ୍ଷୀ ଦେଲାବେଳେ ଓଡ଼ିଶାର ବହୁ ବିଶିଷ୍ଟ ରାଜନୀତିକ ନେତା, ଓକିଲ ଏବଂ ଅଧ୍ୟପକଙ୍କର ସମାବେଶ ହୋଇଥିଲା । ଓଡ଼ିଆମାନଙ୍କ ବିପକ୍ଷରେ ବହୁ ବିଶିଷ୍ଟ ତେଲୁଗୁ ପଣ୍ଡିତ ଅଧ୍ୟାପକ ସୀତାପତିଙ୍କ ନେତୃତ୍ୱରେ ମାନ୍ଦ୍ରାଜରୁ ଆସି ଏହି ବିଚାରକ ମଣ୍ଡଳୀ ସମକ୍ଷରେ ପ୍ରତିବାଦମୂଳକ ସାକ୍ଷ୍ୟ ଓ ସ୍ମାରକ ପତ୍ର ଦେଇଥିଲେ । କିନ୍ତୁ ଡକ୍ଟର ରାଜଗୁରୁଙ୍କ ଅକାଟ୍ୟ ଯୁକ୍ତି ବଳରେ ଓଡ଼ିଶାର ଦକ୍ଷିଣ ସୀମା ଅକ୍ଷୁଣ୍ଣ ରହିଲା । ପ୍ରସିଦ୍ଧ ଐତିହାସିକ ପଣ୍ଡିତ ଡକ୍ଟର ପାନିକର ତାଙ୍କର ଯୁକ୍ତି ଗ୍ରହଣ କରିଥିଲେ ।

ଡକ୍ଟର ରାଜଗୁରୁ ୧୯୭୧ ମସିହା ପର୍ଯ୍ୟନ୍ତ ଓଡ଼ିଶା ସରକାରଙ୍କ ଅଧୀନରେ ରାଜ୍ୟ ସଂଗ୍ରହାଳୟର କ୍ୟୁରେଟର ପଦରେ ନିଯୁକ୍ତ ହୋଇ ଓଡ଼ିଶାର ଅଭିଲେଖ (In-

scriptions of Orissa)ନାମକ ଏକ ଗ୍ରନ୍ଥମାଳା (5 Volumes In Eight Parts)ସଙ୍କଳନ କଲେ; ତାହା ରାଜ୍ୟ ସଂସ୍କୃତି ବିଭାଗ ପକ୍ଷରୁ ପ୍ରକାଶିତ ହୋଇଛି । ଏହା ବ୍ୟତୀତ ପ୍ରତ୍ନତତ୍ତ୍ୱ ଭିତ୍ତିକ ବିଭିନ୍ନ ଧର୍ମର ବିକାଶ ଭାରତରେ କିପରି ହୋଇଥିଲା ଅଭିଲେଖ ଅବଲମ୍ବନରେ "Invocative Verses From the Inscriptions" ନାମକ ଗ୍ରନ୍ଥମାଳା ସେ ପ୍ରସ୍ତୁତ କରିଅଛନ୍ତି । ଭାରତ ସରକାରଙ୍କ ଶିକ୍ଷା ବିଭାଗ ପକ୍ଷରୁ ଅନୁମୋଦନ ଓ ଆର୍ଥିକ ସାହାଯ୍ୟ ମିଳିବାରୁ ସେଥିରୁ ଦୁଇଟି ଭାଗ ପ୍ରକାଶିତ ହୋଇଅଛି ଏବଂ ତୃତୀୟ ଭାଗଟି ପ୍ରକାଶ ଅପେକ୍ଷାରେ ରହିଛି । ଆମ ଦେଶର କତିପୟ ଅଭିଲେଖ ତତ୍ତ୍ୱବିତ୍‌ଙ୍କ ମଧ୍ୟରୁ ଡକ୍ଟର ରାଜଗୁରୁ ଅନ୍ୟତମ । ଏ କ୍ଷେତ୍ରରେ ତାଙ୍କର ଅବଦାନ ଅବିସ୍ମରଣୀୟ ହୋଇ ରହିବ ।

ଓଡ଼ିଶା ସାହିତ୍ୟ ଏକାଡ଼େମୀର କାର୍ଯ୍ୟନିର୍ବାହିକା ସମିତିରେ ସେ କେତେକ ବର୍ଷ ସଭ୍ୟ ରୂପେ ରହିଥିଲେ । ତାଙ୍କ ଦ୍ୱାରା ଲିଖିତ ନିମ୍ନୋକ୍ତ ଗ୍ରନ୍ଥଗୁଡ଼ିକ ମଧ୍ୟ ସାହିତ୍ୟ ଏକାଡ଼େମୀ ପକ୍ଷରୁ ପ୍ରକାଶିତ ହୋଇଅଛି ।

୧.କଳିଙ୍ଗର ଆତ୍ମକଥା
୨.ଓଡ଼ିଆ ଲିପିର କ୍ରମ ବିକାଶ
୩.ଓଡ଼ିଆ ଭାଷାର ଉପଭାଷା
୪.ଗୋପବନ୍ଧୁଙ୍କ ଗଦ୍ୟ ସାହିତ୍ୟ
୫.ଓଡିଶାର ସାଂସ୍କୃତିକ ଇତିହାସ ୩ୟ ଓ ୪ର୍ଥ ଖଣ୍ଡ ।
୬.ଶ୍ରୀ ପୁରୁଷୋତ୍ତମ ଓ ଶ୍ରୀମନ୍ଦିର ଇତ୍ୟାଦି ।

ଶ୍ରୀ ରାଜଗୁରୁଙ୍କ ପ୍ରଣୀତ ଓଡ଼ିଆ ଓ ଇଂରାଜୀରେ ଲିଖିତ ନିମ୍ନୋକ୍ତ ପୁସ୍ତକ ଓଡ଼ିଶା ତଥା ଭାରତର ଅମୂଲ୍ୟ ସଂପଦ ।

### ଓଡ଼ିଆ

୧.ଓଡ଼ିଶା ଇତିହାସ
୨.ଓଡ଼ିଶାର ସାଂସ୍କୃତିକ ଇତିହାସ
୩. ନାଗ ଇତିହାସ
୪.ରାଧାଭିଷେକ (ନାଟକ)
୫.ମନୋରମା (କାବ୍ୟ)
୬. ଜନନୀ ଉତ୍କଳ(ଖଣ୍ଡକାବ୍ୟ)
୭. କର୍ଣ୍ଣାଟ କୁମାରୀ(ମଞ୍ଚନାଟକ)
୮. ଅଶୋକ(ମଞ୍ଚନାଟକ)
୯. ଖାରବେଳ (ମଞ୍ଚନାଟକ)
୧୦. ଗଜପତି(ମଞ୍ଚନାଟକ)

୧୧. ଚିତ୍ରା (ମଞ୍ଚନାଟକ)
୧୨. ପ୍ରସ୍ତାବ ଚିନ୍ତାମଣି (ସଂପାଦକ)
୧୩. ଓଡ଼ିଆ ଉପଭାଷା
୧୪. ଓଡ଼ିଆ ଲିପିର କ୍ରମବିକାଶ
୧୫.ଗୋପବନ୍ଧୁ-ଗଦ୍ୟ ସାହିତ୍ୟ (ସଂପାଦକ)
୧୬.କଳିଙ୍ଗର ଆତ୍ମକଥା
୧୭.ଓଡ଼ିଶାର ସଂକ୍ଷିପ୍ତ ଇତିହାସ
୧୮.ମୋ ଜୀବନ ସଂଗ୍ରାମ (ଆତ୍ମଜୀବନୀ)
୧୯.ଭାରତୀୟ ଲିପିତତ୍ତ୍ୱ
୨୦.ଶ୍ରୀ ଜୟଦେବ (ମଞ୍ଚନାଟକ)
୨୧.ଶ୍ରୀ ଜୟଦେବ ଓ ଗୀତଗୋବିନ୍ଦ
୨୨.ଶ୍ରୀ ପୁରୁଷୋତ୍ତମ ଓ ଶ୍ରୀ ମନ୍ଦିର
୨୩. ଜାନୁଆରୀର ଷୋଡ଼ଶ ରାତ୍ରି
୨୪.ପ୍ରାଚୀନ ଉତ୍କଳ ରାଜପ୍ରଶସ୍ତିମାଳା (ସଂସ୍କୃତ)
୨୫.ଶତାବ୍ଦୀର ଗବେଷକ -ସତ୍ୟନାରାୟଣ

**ଇଂରାଜୀ:**

1.History of the Gangas. (2 Vol.).
2.Inscriptions of Orissa. (5Vol.).
3.Invocatory Versions from the inscriptions. ( 2Vol.).
4.Inscriptions of the teemple of puri and origin of Sri purusotam Jagarnath. ( 2Vol)
5.Jaganath sthal britantam.

ସଂସ୍କୃତି ବିଭାଗ ତରଫରୁ ବିଶ୍ୱନାଥ କବିରାଜଙ୍କ "ଚନ୍ଦ୍ରକଳା" ନାଟିକା ସଂଗ୍ରହ କରି ସେ ପ୍ରଫେସର ସର୍ବେଶ୍ୱର ଦାସଙ୍କ ସହିତ ମିଶି ପ୍ରକାଶ କରିବା ଫଳରେ ସାହିତ୍ୟ ଦର୍ପଣକାର ବିଶ୍ୱନାଥ କବିରାଜଙ୍କ ସଠିକ ସମୟ ଜଣାଗଲା । ଏହା ଫଳରେ ସଂସ୍କୃତ ସାହିତ୍ୟରେ ଯେଉଁ ଭୁଲଭ୍ରାନ୍ତି ଥିଲା ତାହା ସଂଶୋଧିତ ହୋଇପାରିଛି ।

ପୂର୍ବରୁ ୧୯୩୧ ମସିହାରେ ପାରଳାଖେମୁଣ୍ଡି ମୁନିସିପାଲିଟି ସଭ୍ୟଭାବରେ ଅନେକ ବର୍ଷ ରହି ସେ ଲୋହିତକର କାର୍ଯ୍ୟମାନ କରିଯାଇଛନ୍ତି । ଡକ୍ଟର ରାଜଗୁରୁ ୧୯୪୪ ଓ ୧୯୪୫ ମସିହାରେ ଗଞ୍ଜାମ ଜିଲ୍ଲା ଶିକ୍ଷା ପରିଷଦର ସଭାପତି ରୂପେ ନିର୍ବାଚିତ ହୋଇ ସରକାରଙ୍କଠାରୁ ସାହାଯ୍ୟପ୍ରାପ୍ତ ପ୍ରାଥମିକ ବିଦ୍ୟାଳୟଗୁଡ଼ିକର ଭାର ଗ୍ରହଣ କରିଥିଲେ । ସେହି ବିଦ୍ୟାଳୟଗୁଡ଼ିକ ପୂରାପୂରି ସରକାରୀ ବିଭାଗରେ ଅନ୍ତର୍ଭୁକ୍ତ କରି ଗରିବ ଶିକ୍ଷକମାନଙ୍କୁ ନିୟମିତ ଭାବେ ଦରମା ବ୍ୟବସ୍ଥା କରିବାକୁ ତତ୍କାଳୀନ ଶିକ୍ଷା ବିଭାଗୀୟ ଅଧିକାରୀ ଡି.ପି.ସାହେବଙ୍କୁ କହିବା ଫଳରେ ପ୍ରାଥମିକ ଶିକ୍ଷାର ବ୍ୟବସ୍ଥା ଗଞ୍ଜାମ ଜିଲ୍ଲାରେ ବଦଳି ଯାଇଥିଲା ।

ଜର୍ମାନ ଗବେଷକମାନଙ୍କ ଦ୍ୱାରା ଓଡ଼ିଶା ରିସର୍ଚ୍ଚ ପ୍ରୋଜେକ୍ଟ ଯାହା କି South Asian Inter Disciplinary Regional Research Programme ହାଇଡଲବର୍ଗ ବିଶ୍ୱବିଦ୍ୟାଳୟ ଅଧୀନରେ ଗବେଷଣା କରୁଥିଲେ । ସେହି ସମୟରେ ପ୍ରଫେସର ହରମାନ୍ କୁଲକେ, ଏ.ଏଚମ୍ୟାନ ଏବଂ ହେଚ୍ ଭନ୍.ଷ୍ଟିଟାନେକ୍ରାନ ପ୍ରଭୃତି ଗବେଷକମାନଙ୍କୁ ଶ୍ରୀ ଜଗନ୍ନାଥଙ୍କ ଗବେଷଣା କାର୍ଯ୍ୟରେ ଡକ୍ଟର ରାଜଗୁରୁ କହିଥିଲେ ଏବଂ ସେମାନେ ତାଙ୍କର ବାସଭବନକୁ ଆସି ସାହାଯ୍ୟ ନେଉଥିଲେ ।

(We also feel a deep sense of gratitude towords the following scholars who have constantly encouraged and actively helped the project members by giving them valuable advices and who sacrficed a great deal of their precious time in discussing with them their research problems: Padmasri Dr.S.N.Rajaguru, D.Litt.(Govt. Epigraphist)........

Preface of cult of Jagannath and the Regional Traditions of Orissa By H.Kulke and others.

୧୯୮୮-୮୯ ମସିହାର କଥା । ପୁରୀର ଶ୍ରୀ ଜଗନ୍ନାଥ ସଂସ୍କୃତ ବିଶ୍ୱବିଦୟାଳୟଠାରୁ ଅନୁରୋଧ ଆସି ପହଞ୍ଚିଥାଏ, ତାର ଠିକ୍ କିଛିଦିନ ପରେ ଡକ୍ଟର ସତ୍ୟନାରାୟଣ ରାଜଗୁରୁ ବାହାରି ପଡ଼ିଲେ ନିଜର କନିଷ୍ଠ ପୁତ୍ରଙ୍କ ସହ ପୁରୀ ଯାଇ ମହାପ୍ରଭୁ ଶ୍ରୀ ପୁରୁଷୋତ୍ତମ ଜଗନ୍ନାଥଙ୍କ କାର୍ଯ୍ୟରେ ନିଜକୁ ନିୟୋଗ କରି ଶେଷ ଦର୍ଶନ ଓ ସେବା କରିବାପାଇଁ । ପାରଳାରୁ ପୁରୀ ଏକ ଦୀର୍ଘ ପଥର ପଥଚାରୀ ରୂପେ ପରିଣତ ବୟସରେ ସେହି ମହାପୁରୁଷ ଆଗେଇ ଆସିଲେ । ଶ୍ରୀ ଜଗନ୍ନାଥ ମନ୍ଦିର ବେଢ଼ା ଭିତରେ ଥିବା ନୃସିଂହ ମନ୍ଦିରରୁ ଚୂନ ଛଡ଼ା ହେବା ପରେ ସେଥିରୁ ବାହାରିଥିବା ପଚାଶରୁ ଊର୍ଦ୍ଧ୍ୱ ଶିଳାଲେଖକୁ ଉଦ୍ଧାର କରି କିପରି ଏ କାର୍ଯ୍ୟ ଠିକ୍ ରୂପେ ସମ୍ପାଦିତ ହୋଇପାରିବ ତାହାରି ଚିନ୍ତାରେ ଜ୍ଞାନ ତପସ୍ୱୀ ରାଜଗୁରୁ ଲାଗିପଡ଼ିଲେ । ଶ୍ରୀ ଜଗନ୍ନାଥଙ୍କ ଅପାର କରୁଣାରୁ ପୁରୀର ଶ୍ରୀ ଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟର କୁଳପତି ମେଜର ବଟକୃଷ୍ଣ ମହାନ୍ତିଙ୍କ ଆଦେଶ ପତ୍ର ପାଇ ଶ୍ରୀ ଜଗନ୍ନାଥ ଗବେଷଣା ପ୍ରକଳ୍ପରେ ଗବେଷଣା କରିବା ଦାୟିତ୍ୱ ଗ୍ରହଣ କଲେ । ଏଥର ଆରମ୍ଭ ହେଲା ତାଙ୍କର ଗବେଷଣା କାର୍ଯ୍ୟ । ପ୍ରଥମେ ଶ୍ରୀ ଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ ତାଙ୍କୁ ରହିବାପାଇଁ ବଗଲା ଧର୍ମଶାଳାରେ ବନ୍ଦୋବସ୍ତ କରିଥିଲେ ଏବଂ ପ୍ରତ୍ୟେକ ଦିନ ସେ ତାଙ୍କ ପୁତ୍ରଙ୍କ ସହ ମନ୍ଦିର ଭିତରକୁ ଯାଇ ଶ୍ରୀ ଜଗନ୍ନାଥଙ୍କୁ ଦର୍ଶନ କରି ନିଜର ଗବେଷଣା କାର୍ଯ୍ୟରେ ନୃସିଂହ ମନ୍ଦିରରେ ଶିଳାଲେଖଗୁଡ଼ିକୁ

ପାଠକରି କିପରି ଶ୍ରୀ ଜଗନ୍ନାଥଙ୍କ ଗବେଷଣା ଆରମ୍ଭ କରାଯିବ ତା'ର ପ୍ରାଥମିକ ପ୍ରସ୍ତୁତି କୁଳପତିଙ୍କ ସହ କରି ମାନ୍ୟବର ମୁଖ୍ୟମନ୍ତ୍ରୀ ମହୋଦୟଙ୍କୁ କହିଲେ ଏବଂ ସଂସ୍କୃତି ପ୍ରିୟ ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ମହୋଦୟ ତତ୍କାଳୀନ ପ୍ରତ୍ନତତ୍ତ୍ୱ ସଂସ୍ଥା ଅଧିକାରୀମାନଙ୍କୁ ପତ୍ର ଲେଖିଲେ । ସେମାନେ ଜଣାଇଦେଲେ ଏହି ଶିଳାଲେଖ ସବୁ Votive Inscriptions, ତେଣୁ ଏହା ଉପାଦେୟ ନୁହେଁ । ତାଙ୍କଠାରୁ ଏଭଳି ମନ୍ତବ୍ୟ ପାଇଲାପରେ ରାଜଗୁରୁ ପୁଣିଥରେ ମୁଖ୍ୟମନ୍ତ୍ରୀଙ୍କୁ ଅନୁରୋଧ ଜଣାଇ ତାହାର Estampage (ପ୍ରତିଛବି) ଆମ୍ଭଙ୍କୁ ଦିଆଗଲେ ଆମେ ତାହାର ପରୀକ୍ଷା କରି ଦେଖିବୁ । ବୋଲି ସୂଚନା ଦେଲେ ଫଳରେ ମୁଖ୍ୟମନ୍ତ୍ରୀ ମାନବସମ୍ବଳ ବିକାଶ ମନ୍ତ୍ରୀ ଶ୍ରୀ ପି.ଭି.ନରସିଂହ ରାଓଙ୍କୁ ଏକ ପତ୍ର ମାଧମର ଅନୁରୋଧ ଜଣାଇଲେ । ଏହାରିପରେ  ବାଞ୍ଛିତ ଆଦେଶ ଆସି ପହଞ୍ଚିଲା । ଗବେଷକ ରାଜଗୁରୁ ଶିଳାଲେଖର ପ୍ରତିଛବି ନିଜ କନିଷ୍ଠପୁତ୍ରଙ୍କ ସାହାଯ୍ୟରେ ପ୍ରାୟ ଷାଠିଏ ଗୋଟି ଶିଳାଲେଖର ଫୋଟ ଆଣି ଗବେଷଣାରେ ଲାଗି ପଡ଼ିଲେ । ଏହି ସବୁକୁ ଭିତ୍ତି କରି "Inscriptions of the temples of puri and Origin of Sri Purusottama Jagannath" ଶୀର୍ଷକ ଦୁଇଟି ଭାଗ ରଚନା କଲେ ଏବଂ ଏହାର ପ୍ରଥମ ଭାଗଟି ୧ ୯ ୯ ୨ ମସିହାରେ ଓଡ଼ିଶାର ପୂର୍ବତନ ରାଜ୍ୟପାଳ ଶ୍ରୀ ଯଜ୍ଞଦତ୍ତ ଶର୍ମା ମହୋଦୟ ରାଜଭବନଠାରେ ଉନ୍ମୋଚନ କରି ଏହାର ଉପାଦେୟତା ସମ୍ପର୍କରେ ଏକ ସାରଗର୍ଭକ ଭାଷଣ ଦେଇଥିଲେ । ଏହାର ଦ୍ୱିତୀୟ ଭାଗଟି ଶୀଘ୍ର ପ୍ରକାଶ କରିବା ନିମନ୍ତେ ବିଶ୍ୱବିଦ୍ୟାଳୟକୁ ସୂଚାଇ ଥିଲେ । ଡକ୍ଟର ରାଜଗୁରୁଙ୍କ ଦେହାନ୍ତର ପ୍ରାୟ ୧୫ ଦିନ ପୂର୍ବରୁ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ (U.G.C)ସଭ୍ୟମାନେ ସଂସ୍କୃତ ବିଶ୍ୱବିଦ୍ୟାଳୟ ଆଗମନ ସମୟରେ ତାଙ୍କର ସରକାରୀ ବାସଭବନରେ ଦେଖା କରିବା ସମୟରେ ସେ ଶେଷ ଇଚ୍ଛା ବ୍ୟକ୍ତ କରି ଉପୋରକ୍ତ ଦ୍ୱିତୀୟ ଭାଗଟିକୁ ବିଶ୍ୱବିଦ୍ୟାଳୟ ତରଫରୁ ଛାପିବାପାଇଁ ଅନୁଦାନ ଯୋଗାଇବା ନିମନ୍ତେ ଅନୁରୋଧ କରିଥିଲେ ଏବଂ ସମସ୍ତ ସଭ୍ୟ ଏକକାଳୀନ ପ୍ରଶ୍ନ କରିଥିଲେ ଏହି ବାବଦରେ କେତେ ଟଙ୍କା ଖର୍ଚ୍ଚ ହେବ । ବିଶ୍ୱବିଦ୍ୟାଳୟର ରେଜିଷ୍ଟ୍ରାର ମହୋଦୟ ପ୍ରାୟ ଦେଢ଼ଲକ୍ଷ ଟଙ୍କା ଖର୍ଚ୍ଚ ହେବା ସୂଚାଇଦେଲେ । ସେମାନେ ଉତ୍ତର ଦେଲେ ଏହି ବାବଦରେ ଆମ୍ଭେ ଦୁଇଲକ୍ଷ ଟଙ୍କା ଯୋଗାଇଦେବୁ । କିନ୍ତୁ ଭାଗ୍ୟର ବିଡ଼ମ୍ବନା ଏହି ଯେ, ତାଙ୍କର ଉତ୍ତର ଆସି ପହଞ୍ଚିଲା ବେଳକୁ ଡକ୍ଟର ରାଜଗୁରୁ ଇହଧାମ ତ୍ୟାଗ କରିଥିଲେ । ଏଠାରେ (U.G.C) ମେମ୍ବରସ୍ ଦେଇଥିବା ମନ୍ତବ୍ୟରୁ କିଛି ଉଦ୍ଧୃତ କରାଗଲା ।

"It was also a valuable and memorable experience for us to meet the great oriya scholar Rajaguru.
He indeed might be looked upon and a living legend and has done pioneer work in the field of orrissan temple empigraphy .
At the very old age of 94, he still devotes himself to find new interpretations and also decipher hidden inscriptions. His honorary appointment in University is commendable and his proposed second volume of orissan inscription deserves all finacial assistance.
1. Publication of Temple Inscription Vol-II by Dr.Satyanarayan Rajaguru including hiring of technical services for preparation of index and reference 1000 copies -2.00 lacs.
2. Report of the U.G.C visiting committee consisting of the undersigned as a convenor and prof. J.P.Sinha of the Univesity of Lucknow, Prof D.N. Sambagh of Karnatak University, Dharwad and Dr.S.M Mukharjee, Joint Secretary, UGC visiting the shri jaganath Sanskrit Viswavidyalaya, Shri Vihar, Puri.

ଡକ୍ଟର ରାଜଗୁରୁ ପୁରୀଠାରେ ରହଣି କାଳରେ ଶ୍ରୀ ପୁରୁଷୋତ୍ତମ ଜଗନ୍ନାଥଙ୍କ ସମ୍ବନ୍ଧରେ ଓଡ଼ିଆରେ ପ୍ରାୟ ୬୦ ଗୋଟି ଗବେଷଣାମୂଳକ ପ୍ରବନ୍ଧ ବିଭିନ୍ନ ପତ୍ରିକାରେ ପ୍ରକାଶ କରିଅଛନ୍ତି । ତାଙ୍କର ଶେଷ ସମୟରେ ଏହି ତତ୍ତ୍ୱ ଓ ତଥ୍ୟକୁ ନେଇ ପଣ୍ଡିତମାନଙ୍କ ମଧ୍ୟରେ ଆଲୋଡ଼ନ ସୃଷ୍ଟି କରି କଥାବାହାରକୁ ଆସିଥିଲା । ମାତ୍ର ଡକ୍ଟର ରଜଗୁରୁ ସତ୍ୟକୁ ଆଧାର କରି ନିଜର ମତ ପ୍ରକାଶ କରିଥିବାରୁ ସେମାନଙ୍କ ଯୁକ୍ତିକୁ ଠିକ୍ ଭାବରେ ଖଣ୍ଡନ କରିପରିଥିଲେ ।

ବାର୍ଦ୍ଧକ୍ୟର ଶେଷ ପର୍ଯ୍ୟାୟରେ ଏପରି ବିଚକ୍ଷଣ ଯୁକ୍ତି, ପାଣ୍ଡିତ୍ୟ ଓ ଗବେଷଣା ସଂପର୍କୀୟ ଉତ୍ତର କ୍ୱଚିତ୍ ଦେଖିବାକୁ ମିଳେ । ପ୍ରାୟ ସବୁଦିନ ସକାଳ ୮ରୁ ୧.୩୦ମିନିଟ୍ ପର୍ଯ୍ୟନ୍ତ ସେ ଲେଖାଲେଖି ଓ ପଢ଼ାପଢ଼ି କରି ବିଭିନ୍ନ ସାଂସ୍କୃତିକ ଅନୁଷ୍ଠାନ ଓ ପତ୍ରପତ୍ରିକାକୁ ପ୍ରବନ୍ଧ ଯୋଗାଇ ଦେଉଥିଲେ । ଏହି ସମୟ ଭିତରେ ତାଙ୍କର ଅନ୍ୟ ଉପାଦେୟ ଗ୍ରନ୍ଥଗୁଡ଼ିକ ଯଥା- ୧. ମୋ ଜୀବନ ସଂଗ୍ରାମ (ଆତ୍ମଜୀବନୀ), ୨.ଶ୍ରୀ ଜୟଦେବ ଓ ଗୀତଗୋବିନ୍ଦ (ନାଟକ), ୩.ମହାକବି ଜୟଦେବ ଓ ଶ୍ରୀ ଗୀତଗୋବିନ୍ଦ (ଗବେଷଣା ଧର୍ମୀ), ୪. ଜାନୁଆରୀର ଷୋଡ଼ଶ ରାତ୍ରୀ, ୫. ଶ୍ରୀ ପୁରୁଷୋତ୍ତମ ଓ ଶ୍ରୀ ମନ୍ଦିର ପ୍ରକାଶ ପାଇଲା । ଏତଦ୍ ବ୍ୟତୀତ "ପ୍ରାଚୀନ ଉତ୍କଳ ରାଜପ୍ରଶସ୍ତିମାଳା" ନାମକ ଏକ ସଂସ୍କୃତ ଗ୍ରନ୍ଥ ଯାହାର ପ୍ରୁଫ୍ ସଂଶୋଧନ କରି ସେ ଇହଧାମକୁ ଚାଲିଯାଇଥିଲେ । ତାଙ୍କର ଅନେକ ଅଛପା ଗ୍ରନ୍ଥ

ପାଣ୍ଡୁଲିପି ଆକାରରେ ବର୍ତ୍ତମାନ ସୁଦ୍ଧା ପଡ଼ିରହିଛି ଏବଂ ତାଙ୍କର କନିଷ୍ଠପୁତ୍ର ଶ୍ରୀ ସୀତାକାନ୍ତ ରାଜଗୁରୁ ଯକିଞ୍ଚିତ୍ ଚେଷ୍ଟା କରି ସେସବୁ ଲୋକଲୋଚନକୁ ଆଣିବାପାଇଁ ଚେଷ୍ଟା ଆବ୍ୟାହତ ରଖିଛନ୍ତି । ତାଙ୍କଦ୍ୱାରା ଲିଖିତ 'ନାଗ ଇତିହାସ' ପ୍ରଥମଭାଗ ପୂର୍ବରୁ ପ୍ରକାଶିତ ଏବଂ ଦ୍ୱିତୀୟ ଭାଗଟି ଅନେକ ଦିନ ପଡ଼ିଯାଇ ନଷ୍ଟ ହେବାକୁ ବସିଥିଲା । ଏହାର ଉପାଦେୟତା ଯଥେଷ୍ଟ ଥିବାରୁ ତାଙ୍କର କନିଷ୍ଠପୁତ୍ର ଠିକ୍‌ଭାବରେ କପିକରି ବର୍ତ୍ତମାନ ଆଶା ପୁସ୍ତକାଳୟ, ବ୍ରହ୍ମପୁରକୁ ଛାପିବା ଦାୟିତ୍ୱ ଦେଇଛନ୍ତି । କିନ୍ତୁ ଦୁର୍ଭାଗ୍ୟକୁ ତାବା ବର୍ତ୍ତମାନ ମିଳୁନାହିଁ ।

ଡକ୍ଟର ରାଜଗୁରୁଙ୍କ ଗବେଷଣା ପ୍ରତିଭାକୁ ସ୍ୱୀକାର କରି ଭାରତ ସରକାର ୧୯୭୪ ମସିହାରେ ତାଙ୍କୁ ପଦ୍ମଶ୍ରୀ ଉପାଧିରେ ଭୂଷିତ କରିଅଛନ୍ତି । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ତାଙ୍କର ଜ୍ଞାନ ଓ ବିଦ୍ୟାକୁ ସମ୍ମାନ ଦେଖାଇ ତାଙ୍କୁ ଡି.ଲିଟ୍ ଉପାଧିରେ ଭୂଷିତ କରିବା ସହ ତାଙ୍କୁ ଆଜୀବନ ସିନେଟ୍ ସଭ୍ୟରୂପେ ଗ୍ରହଣ କରିଥିଲେ । ସେ ବିଶ୍ୱବିଦ୍ୟାଳୟରେ ଅବୈତନିକ ପ୍ରତ୍ନତତ୍ତ୍ୱ ଉପଦେଷ୍ଟା ରୂପେ ମଧ୍ୟ ଦୁଇବର୍ଷ କାର୍ଯ୍ୟ କରିଥିଲେ । ଗଞ୍ଜାମରୁ ଆବିଷ୍କୃତ ଓଡ଼ିଶାର ସର୍ବପ୍ରଥମ ଗଦ୍ୟ ଉପନ୍ୟାସ 'ପ୍ରସ୍ତାବ ଚିନ୍ତାମଣି' ବିଶ୍ୱବିଦ୍ୟାଳୟ ତରଫରୁ ଡକ୍ଟର ରାଜଗୁରୁ ପ୍ରକାଶ କରିଅଛନ୍ତି । ଉତ୍କଳ ବିଶ୍ୱବିଦ୍ୟାଳୟ ଭିଜିଟିଂ ପ୍ରଫେସରଭାବରେ ମଧ୍ୟ ସେ କାର୍ଯ୍ୟ ସମ୍ପାଦନା କରିଅଛନ୍ତି ।

ଏତଦ୍‌ବ୍ୟତୀତ ତାଙ୍କର ଆତ୍ମଜୀବନୀ "ମୋ ଜୀବନ ସଂଗ୍ରାମ "ପୁସ୍ତକପାଇଁ ୧୯୯୬ ମସିହାରେ ଶାରଳା ପୁରସ୍କାର ଓ କେନ୍ଦ୍ର ସାହିତ୍ୟ ଏକାଡେମି ପୁରସ୍କାର ତାଙ୍କୁ ପ୍ରଦାନ କରାଯାଇଛି । ତାଙ୍କର ଆଜୀବନ କୃତିକୁ ବିଚାରକୁ ନେଇ ଉତ୍କଳ ସାହିତ୍ୟ ସମାଜ ତାଙ୍କୁ 'ଉତ୍କଳ ରତ୍ନ' ଉପାଧିରେ ଭୂଷିତ କରିଛନ୍ତି ଏବଂ ସେ ପ୍ରାଣନାଥ ସମ୍ମାନ ମଧ୍ୟ ପାଇଥିଲେ । ଶ୍ରୀ ଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ ତରଫରୁ ସର୍ବୋଚ୍ଚ ସମ୍ମାନ ପୂର୍ବତନ କୁଳାଧିପତି ଓ ରାଜ୍ୟପାଳ ବି.ସତ୍ୟନରାୟଣ ରେଡ୍ଡି ମହୋଦୟ ପ୍ରଦାନ କରିଥିଲେ ।

ଶ୍ରୀ ଜଗନ୍ନାଥଙ୍କ ପ୍ରତି ପ୍ରଗାଢ଼ ଭକ୍ତି, ବିଶ୍ୱାସ ଓ ତାଙ୍କରି ଆଦେଶ ବଳରେ ପରିଣତ ବୟସରେ ମଧ୍ୟ ଠିକ୍‌ଭାବେ ଲେଖନୀ ଚାଳନକରି ଓ ପଢ଼ାପଢ଼ି କରିପାରୁଥିବା ତାଙ୍କର ବିଶ୍ୱାସ ଥିଲା ।

ଓଡ଼ିଶାର ବିଭିନ୍ନ ସାଂସ୍କୃତିକ ଅନୁଷ୍ଠାନ ପକ୍ଷରୁ ସେ ଲାଭ କରିଥିବା ସମ୍ମାନର ତାଲିକା ଭାରୀ ଲମ୍ବା । ତେଣୁ ଏଠାରେ ଦିଆଯାଇନାହିଁ ତେବେ ଓଡ଼ିଶା ଇତିହାସ କଂଗ୍ରେସ ପକ୍ଷରୁ ତାଙ୍କୁ ଯେଉଁ ମାନପତ୍ର ୧୯୮୦ ମସିହାରେ ଦିଆଯାଇଥିଲା ସେଥିରୁ ଅଳ୍ପ କିଛି

ଅଂଶ ଏଠାର ଉଦ୍ଧାର କଲେ ଯଥେଷ୍ଟ ହେବ ।

"We deem it a sacred duty and privilege to falicitate you on the ocasion of the eighth annual session of the Orissa History Congress at this historic city of Bhanjanagar. You have been a beacon light of inspiration to all scholars here. The height you achieved with the strengt of your supreme dedication and determination without any formal researcch or support constitutee an imazing academic feat and remain a source of perennial inspriration and admiration to all."

ଡକ୍ଟର ରାଜଗୁରୁ ତାଙ୍କ ନିଜ ଭାଷାରେ କହନ୍ତି "ପୁରସ୍କାର ପାଇବାପାଇଁ ମୁଁ ଲେଖାଲେଖି କରୁନହିଁ ଏବଂ ଲେଖକମାନେ ପୁରସ୍କାର ପାଇବା ଆଶାରଖି ଲେଖିବା ଅନୁଚିତ ।"

ଓଡ଼ିଶାର ଇତିହାସ, ଧର୍ମ, ସାହିତ୍ୟ ଓ ସଂସ୍କୃତିପ୍ରବକ୍ତା, ଲିପିତତ୍ତ୍ୱବିଦ ଅସାଧାରଣ ପ୍ରଜ୍ଞାର ଅଧିକାରୀ ଡଃ ରାଜଗୁରୁଙ୍କ ଅମ୍ଳାନ ପ୍ରତୀଭାଦୀପ୍ତ ଜୀବର ଅବସାନ ଘଟିଲା ୧୯୯୭, ଜୁନ ମାସ ଏଗାର ତାରିଖରେ ।



# ପାରଳାର ସର୍ବଶେଷ ପ୍ରାଚୀନପନ୍ଥୀ କବି
# ପଣ୍ଡିତ ନୀଳକଣ୍ଠ ବିଦ୍ୟାଭୂଷଣ

ପୁଣ୍ୟତୋୟା ମହେନ୍ଦ୍ରତନୟା ନଦୀର ଦକ୍ଷିଣପାର୍ଶ୍ୱରେ ଖେମୁଣ୍ଡି ସହର ଓ ବାମ ପାର୍ଶ୍ୱରେ ଅବସ୍ଥିତ ଚାଙ୍ଗୁଡି ଶାସନ । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ହେବାରୁ ମହେନ୍ଦ୍ରତନୟା ନଦୀ ରାଜ୍ୟର ସୀମା ହେବା ଫଳରେ ଏହି ଗ୍ରାମଟି ମାନ୍ଦ୍ରାଜ୍ (ପରେ ଗଠିତ ଆନ୍ଧ୍ରପ୍ରଦେଶ)ରେ ରହିଗଲା । ଓଡ଼ିଶାର ଶିକ୍ଷା ଓ ସଂସ୍କୃତିକୁ ଏହି ଶାସନର ଅବଦାନ ସର୍ବଜନଗୃହୀତ । ଊନବିଂଶ ଶତାବ୍ଦୀର ଶେଷ ଓ ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଅନେକ ବିଶିଷ୍ଟ ଶିକ୍ଷାବିଦ୍ ପଣ୍ଡିତ, ବିଚାରକ ଓ ନ୍ୟାୟାଧୀଶ ଏହି ଗ୍ରାମରେ ଜନ୍ମଗ୍ରହଣ କରି ଓଡ଼ିଶାରେ ସୁଖ୍ୟାତି ଅର୍ଜନ କରିଥିଲେ ।

କଥିତ ଅଛି, ସପ୍ତଦଶ ଶତାବ୍ଦୀରେ ପଣ୍ଡିତ ଲୋକନାଥ ମିଶ୍ର ବିଦ୍ୟାଭୂଷଣ ପୁରୀ ଜିଲ୍ଲାର ବୀର ନରସିଂହପୁର ଶାସନରୁ ଆସି ରାଜାନୁଗ୍ରହ ସ୍ୱରୂପ ଏହି ଗ୍ରାମଟି ପାଇ ସେଠାରେ ଅବସ୍ଥାନ କଲେ । ତାଙ୍କ ଉତ୍ତରପୁରୁଷ ସେମାନଙ୍କର ଖ୍ୟାତି ଅକ୍ଷୁଣ୍ଣ ରଖିଥିଲେ । ଶାସନଟି ରାଜଜେମା ଏକ ଚାଙ୍ଗୁଡ଼ିରେ ଏହି ଦାନପତ୍ର ରଖି ଦାନ କରିଥିବାରୁ ଏହାର ଚାଙ୍ଗୁଡ଼ିଶାସନ ନାମ ହୋଇଥିଲା ବୋଲି କଥିତ ଅଛି । ପଣ୍ଡିତ ନୀଳକଣ୍ଠ ଏହି ଗ୍ରାମରେ ୧୮୭୦ ମସିହାରେ ଭୂମିଷ୍ଠ ହୋଇଥିଲେ । ବିଦ୍ୟାଶିକ୍ଷା ସଂପୂର୍ଣ୍ଣ ନ ହେଉଣୁ ସେ ପିତାମାତାଙ୍କ ଅଜ୍ଞାତରେ ନବଦ୍ୱୀପ ଚାଲିଗଲେ । ସେତେବେଳେ ସେଠାରେ ସଂସ୍କୃତ କାବ୍ୟ, ବ୍ୟାକରଣ, ଦର୍ଶନ, ଅଳଙ୍କାର,ନ୍ୟାୟ ଆଦି ଚର୍ଚ୍ଚାରେ ସର୍ବଭାରତୀୟ ସ୍ୱୀକୃତିଲାଭ କରିଥିଲେ । ଯୁବକ ନୀଳକଣ୍ଠ ସେଠାରେ ନଅବରଷ ଅବସ୍ଥାନ କରି ପ୍ରସିଦ୍ଧ ବୈୟାକରଣିକମାନଙ୍କଠାରୁ ବ୍ୟାକରଣରେ ବିଶେଷ ଜ୍ଞାନ ଲାଭ କରି ପାରଳାଖେମୁଣ୍ଡି ପ୍ରତ୍ୟାବର୍ତ୍ତନ କଲେ । ତାଙ୍କର ପାଣ୍ଡିତ୍ୟ ଦେଖି ପାରଳା ଗଜପତି ତାଙ୍କୁ ମହାରାଜା ଉଚ୍ଚ ବିଦ୍ୟାଳୟରେ ସଂସ୍କୃତ ଶିକ୍ଷକଭାବେ ନିଯୁକ୍ତ କଲେ । ରାଜ ଦରବାରରୁ ମଧ୍ୟ ସେ ରାଜକବିଭାବରେ ମର୍ଯ୍ୟାଦା ପାଇଥିଲେ । ଦରବାରରୁ ନିମନ୍ତ୍ରିତ ହୋଇ ସେ ସାମୟିକ ସେଠାରେ କାବ୍ୟଶାସ୍ତ୍ର ଚର୍ଚ୍ଚା କରୁଥିଲେ । ନୀଳକଣ୍ଠ ଦୀର୍ଘକାୟ ନୈଷ୍ଠିକ ବ୍ରାହ୍ମଣ ଥିଲେ । ଗଳାରେ ରୁଦ୍ରାକ୍ଷମାଳ କପାଳରେ ରକ୍ତ ଚନ୍ଦନ, ବକ୍ଷରେ ଭସ୍ମଧାରଣ କରି କାନ୍ଧରେ ଉତ୍ତରୀୟ ସହିତ ସେ ଧୀର ଗମ୍ଭୀର ପଦରେ ରାଜସଭାରେ ପ୍ରବେଶ

କରୁଥିବା ଦେଖି ଥରେ ରାଜା ଶ୍ରୀକୃଷ୍ଣଚନ୍ଦ୍ର ଗଜପତି ତାଙ୍କର ଷ୍ଟେଟିସ୍ ମ୍ୟାନେଜର ମାକଫରସନଙ୍କୁ ଚିହ୍ନାଇ ଦେଲେ Look here comes a true aryaou (ଦେଖ ଜଣେ ପ୍ରକୃତ ଆର୍ଯ୍ୟ ବ୍ରାହ୍ମଣ ସଭାକୁ ଆସୁଛନ୍ତି )। ରାଜସଭାରେ ତାଙ୍କର ଆସନ ଓ ମର୍ଯ୍ୟାଦା ସୁରକ୍ଷିତ ଥିଲା। ପାରଳାର ରାଜକୁମାର ଶ୍ରୀ ରାମଚନ୍ଦ୍ର ଗଜପତି ଓ ଶ୍ରୀ ମାଧବ ସୁନ୍ଦର ଗଜପତି ରାୟପୁର(ତତ୍କାଳୀନ ମଧ୍ୟପ୍ରଦେଶ) ରାଜକୁମାର କଲେଜରେ ଶିକ୍ଷାଲାଭ ନିମିତ୍ତ ପ୍ରେରିତ ହେଲେ, ସେମାନଙ୍କର ଗୃହଶିକ୍ଷକଭାବେ ନୀଳକଣ୍ଠ ରାୟପୁର ଗଲେ। ସେଠାରେ ସେ ରାଜକୁମାର କଲେଜରେ ଶିକ୍ଷକତା ମଧ୍ୟ କରିଥିଲେ। ପାରଳାଖେମୁଣ୍ଡିରେ ଶିକ୍ଷକତା କରିବା ସମୟରେ ସେ ନିମନ୍ତ୍ରିତ ହୋଇ ଖଲିକୋଟ, ଧରାକୋଟ, ମଞ୍ଜୁଷା ଆଦି ରାଜ ଦରବାରରେ ସଂସ୍କୃତ ଚର୍ଚ୍ଚାକରି ପ୍ରଶଂସିତ ହୋଇଥିଲେ। ରାଜଦରବାରରୁ ତାଙ୍କୁ ପ୍ରଚୁର ଉପଢୌକନ ମଧ୍ୟ ପ୍ରଦାନ କରାଯାଉଥିଲା। ନିଜର ଅବସର ସମୟରେ ସେ ସଂସ୍କୃତପ୍ରେମୀମାନଙ୍କ ସହିତ ଶାସ୍ତ୍ର ଆଲୋଚନା କରୁଥିଲେ। ଯୁବକ ଓ କିଶୋରମାନଙ୍କୁ ସେ କ୍ରୀଡ଼ା ମାଧ୍ୟମରେ ବ୍ୟାକରଣ ଶିକ୍ଷା ଦେଇ ଲୋକପ୍ରିୟ ହୋଇଥିଲେ ନୃତ୍ୟଶିକ୍ଷା ଦେବା ଓ ଚର୍ଚ୍ଚା କରିବା ସହିତ ଅବସର ସମୟରେ ଗୀତିକବିତା ରଚନା କରିବା ତାଙ୍କର ଦୈନିକ କାର୍ଯ୍ୟ ଥିଲା। ବୈଦିକ ବ୍ରାହ୍ମଣ ହିସାବରେ ତାଙ୍କର ଅନେକ ପ୍ରଶଂସକ ତାଙ୍କଠାରୁ ମନ୍ତ୍ର ଗ୍ରହଣ କରି ଶିଷ୍ୟ ହୋଇଥିଲେ। ଏ ପର୍ଯ୍ୟନ୍ତ ବିରିକୋଟ, ତୁରକାନିଗୁଡ଼ା, ବୁଦୁରା ଆଦି ଗ୍ରାମରେ ତାଙ୍କର ଶିଷ୍ୟମାନେ ତାଙ୍କର ଗୁଣଗାନ କରୁଛନ୍ତି ୧୯୨୨ ମସିହା ଜୁନ୍‌ମାସରେ ସେ ଦେହତ୍ୟାଗ କଲେ।

ଜମିଦାରୀ ଉଚ୍ଛେଦ ପରେ ରାଜାନୁଗ୍ରହ ଓ ପୃଷ୍ଠପୋଷକତାର ଅନ୍ତ ଘଟିଲା। ତାଙ୍କର ରଚିତ କାବ୍ୟ ଓ କବିତାଗୁଡ଼ିକର ପ୍ରକାଶନ ସମ୍ଭବ ହୋଇ ପାରିଲା ନାହିଁ। ସରକାରୀ ସାହାଯ୍ୟ ପାଇବାକୁ ସେ ନିଜ ରଚିତ କବିତାମାନ ଏକତ୍ର କରି ପ୍ରାୟ ବୁଇଶହ ପୃଷ୍ଠାର 'ଭାବୁକ ବିନୋଦିନୀ' ନାମରେ ଏକ ଗୀତିକାବ୍ୟ ଓଡ଼ିଶା ସାହିତ୍ୟ ଏକାଡ଼େମୀକୁ ପଠାଇଥିଲେ। ମାତ୍ର ରାଜଧାନୀରୁ ସୁଦୂର ପ୍ରତିଭାଧରମାନଙ୍କ ରଚନା ଅବହେଳିତ ହେଲା ପରି ତାହାମଧ୍ୟ ହଜିଗଲା। ଏହାର ଅନ୍ୟ ଏକ ନକଲ ତାଙ୍କର ପୁତ୍ର ଶିକ୍ଷକ କୈଳାଶଚନ୍ଦ୍ର ମିଶ୍ରଙ୍କ ପାଖରେ ଥିଲା। ୧୯୮୦ ମସିହାରେ ବଂଶଧାରା ନଦୀର ପ୍ରଳୟକାରୀ ବନ୍ୟାରେ ଗୁଣପୁର ସହରରେ ତାଙ୍କ ଘରେ ଜଳପ୍ରବେଶ କରି ଛାତ ଓ କାନ୍ଥମାନ ଭୁଷୁଡ଼ି ପଡ଼ିଲା। ପାଣ୍ଡୁଲିପି ପ୍ରାୟ ନଷ୍ଟ ଓ ବିକୃତ ହୋଇଗଲା। ତାହାମଧ୍ୟରୁ ୧୯୮୪ ମସିହାରେ କେତେକ କବିତାର ପ୍ରକାଶ ନିମିତ୍ତ ଉଦ୍ୟମ ହେଲା, ମାତ୍ର ଏହା

ବିଫଳ ହେଲା ।

ଆନନ୍ଦର ବିଷୟ ଦୀର୍ଘ ଅପେକ୍ଷା ପରେ ୨୯ ଗୋଟି ନିର୍ବାଚିତ କବିତା ଏକ ତିରିଶ ପୃଷ୍ଠାର ପୁସ୍ତିକାରୂପେ ତାଙ୍କର ପୌତ୍ର ପାରଳାଖେମୁଣ୍ଡି ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି କଲେଜରେ ଅଧ୍ୟକ୍ଷ ଶ୍ରୀ କୁମାରଚନ୍ଦ୍ର ମିଶ୍ରଙ୍କ ଦ୍ୱାରା ପ୍ରକାଶିତ ହେଲା ।

ଏହି ବିସ୍ମୃତ ପ୍ରତିଭାଧର କବିଙ୍କ ରଚନା ରାଧାକୃଷ୍ଣ ପ୍ରେମ ଓ ରାଜା ପ୍ରଶସ୍ତିରେ ସୀମିତ, ତନ୍ମଧ୍ୟରୁ କବିଙ୍କର ପାଣ୍ଡିତ୍ୟର ନିଦର୍ଶନ ସ୍ୱରୂପ ଆମ୍ଭେମାନେ ନିମ୍ନରେ ତିନିଗୋଟି କବିତା ପ୍ରକାଶକରି ମୂଲ୍ୟାୟନ ପାଠକଙ୍କୁ ଛାଡ଼ି ଦେଉଛୁ । ଉପେନ୍ଦ୍ର ଭଞ୍ଜଙ୍କ ଚିତ୍ରକାବ୍ୟ ବନ୍ଧୋଦୟ ଶୈଳୀରେ ରଚିତ ରଥବନ୍ଧ ଏଥିରେ ଅନ୍ତର୍ଭୁକ୍ତ ।





ପଣ୍ଡିତ ନୀଳକଣ୍ଠ ବିଦ୍ୟାଭୂଷଣ

# କୃପା ସିନ୍ଧୁ ଦୀନ ବନ୍ଧୁ
## (ଶ୍ରୀ ବୃନ୍ଦାବନ କି ଥରେ ଦେଖିବି ନେତ୍ର ପଥରେ ପ୍ରତି)

| | | | |
|---|---|---|---|
| କୃ | ପା | ସିନ୍ଧୁ ଦୀନବନ୍ଧୁ | |
| କ | ର | ତ୍ରାଣ ଭବ ବନ୍ଧୁ ହେ | । ପଦ । |
| ବ | ଳା | ବରଜ ଶ୍ରୀପତି | |
| | ନ | ଜନେତ୍ର ମୋ ଗତି | |
| କ | ରେ | ଧରା ସ୍ଫୁର୍ତ୍ତି | |
| ଇ | ନ୍ଦ୍ର | ନୀଳ ମଣି ମୂର୍ତ୍ତି ହେ | ॥ ୧ ॥ |
| ଘ | ନ | ଶ୍ୟାମ ହୃଷୀକେଶ | |
| ନ | ନ୍ଦ | ସୁନୁ ବ୍ରଜ ଈଶ | |
| ବ | ନ | ମାଳୀ ବଳୀ ଧ୍ୱଂସ | |
| ସୁ | ଶ୍ରୀ | ତନୁ ପୀତବାସ ହେ | ॥ ୨ ॥ |
| ଧ | ରା | ଭାର ବିମର୍ଦ୍ଦନ | |
| କ | ମ | ନୀୟ ଶ୍ରୀଚରଣ | |
| ସ | ଚ | ରାଚର କାରଣ | |
| ଚ | ନ୍ଦ୍ର | କଚୁଳ ଶୋଭନ ହେ | ॥ ୩ ॥ |
| ଖ | ଗ | ଆସନ ଶ୍ରୀଧର | |
| ଗ | ଜ | ପତି ଆର୍ତ୍ତ ହର | |
| ନୀ | ପ | ନିକୁଞ୍ଜ ବିହାର | |
| ପ | ତି | ତଜନ ଉଦ୍ଧାର ହେ | ॥ ୪ ॥ |
| ଶ | ଙ୍କ | ର ଗର୍ବ ଖଣ୍ଡନ (ଏଠାରେ ଶଙ୍କୁବୋଲି ଅର୍ଥ ହେବ ।) | |
| ମୁ | ର | ଳୀ ଧର ମୋହନ | |
| କଂ | ସ | କେଶୀ ନିସୂଦନ | |
| ପୂ | ତ | ନାରି ଜନାର୍ଦ୍ଦନହେ | ॥ ୫ ॥ |

ସ୍ମି ତ ମୁଖ ନିରଞ୍ଜନ
ତ ମ ଚକ୍ର ବିନାଶନ
ର ଙ୍ଗ ରାଟ ପ୍ରେମ ଧାମ
ଜ ଳ ଶାୟୀ ଭଗବାନ ହେ ॥ ୬ ॥
ସୁ ଦା ମା ଦୁଃଖ ସଂହାରି
ଦା ନ କଲ କୋଟି ଶିରୀ
ଭ କ୍ତ ବତ୍ସଳ ହରି
ସୁ ର ବର ଦର୍ପ ହାରୀ ହେ ॥ ୭ ॥
ଦ୍ୱିଜ ନୀଳକଣ୍ଠ ଭକ୍ତି ପୁଷ୍ପାଞ୍ଜଳି ଦେଇ ନିତି
ଦ୍ୱିତୀୟ ଅକ୍ଷର ପଢ଼ ମାଗୁଣି ହେ ଯଦୁପତି ॥ ୮ ॥
ଭାବୁକ ବିନୋଦିନୀ ॥

## ମଞ୍ଜୁଳ କୁଞ୍ଜ ରଞ୍ଜିତ

ମଙ୍ଗଳ

ମ ଞ୍ଜୁଳ କୁଞ୍ଜ ରଞ୍ଜିତ ଶ୍ରୀରାଧା ବଲ୍ଲଭ
ହଂ ସ ବାହନ ସର୍ବଙ୍କୁ ଏ ଅଟେ ଦୁର୍ଲ୍ଲଭ ଯେ ॥ ୧ ॥
(ତ) ଜୟ ପୂତ ମହନ୍ତ ଶ୍ରୀ ରାଧା ଚ଼ରଣ
ଶ୍ରୀ ମତୀ ରାଧା ମାଧବ ସେବାରେ ନିପୁଣ ଯେ ॥ ୨ ॥
ରା ସେଶ୍ୱରୀ ମନୋହାରୀ ଧରାଧର ଧାରୀ
ଧା ମ ତେଜି ବିଜେ କିବା ଏହି ମର୍ତ୍ତ୍ୟ ପୁରୀ ଯେ ॥ ୩ ॥
ଚ଼ ତୁରା ଶେଖର ଧୀର ମହନ୍ତ ସନ୍ତତ
ର ଣ ରଙ୍କା କେଶୀ ବକାଧ୍ୱଂସୀ ଧ୍ୟାନେ ରତ ଯେ ॥ ୪ ॥
ନ ଟବର ରୂପେ ମୁଗ୍ଧ ପ୍ରେମିକ ଦର୍ଶକ
ଦା ନବାରି ଦାନ ବାରି-ବୀର ରଖ ଟେକ ଯେ ॥ ୫ ॥
ସ ଜ ସରୋଜ ନୟନ ଘେନି ହେ ବନ୍ଦନ
ମୋ ଚନ କର ଏ ଭବ ସୁଦୃଢ଼ ବନ୍ଧନ ହେ ॥ ୬ ॥
ରେ ବତୀ ପତି ଅନୁଜ ମଦନ ମୋହନ
ବା ସନା ପୂର୍ଣ୍ଣ କର ହେ ଶ୍ରୀ ନନ୍ଦ ନନ୍ଦନ ହେ ॥ ୭ ॥

ରେ  ବାସୁର ଅରି ସୁତା ଚାରୁ ତଟ ଚାରୀ
କୃ  ଷ୍ଣ ନାମାମୃତ ପାନେ ପାପ ଅପହରି ହେ ॥ ୮ ॥
ପା  ତକ ଯାତନା ମୁକ୍ତ ଭକ୍ତି ଶ୍ରୀ ମହନ୍ତ
କ  ର ଶୋଭୁ ଅଛି ଦାନେ ହୋଇଣ ବ୍ୟକତ ଯୋ। ୯ ॥
ର  ଜନୀ ଦିବସ ଧ୍ୟାନାଶାକ୍ତ ଦୀନ
ଦ୍ୱୀଜ ନୀଳକଣ୍ଠ ବିଦ୍ୟାଭୂଷଣ ଭାଷଣ ଯେ ॥ ୧୦ ॥
ପ୍ରଥମ ଅକ୍ଷର ମାଳା ଭକ୍ତି ଉପହାର
ଅର୍ପିଲି ସାଦରେ ଘେନ ମହନ୍ତ ଶେଖର ହେ ॥ ୧୧ ॥






ନନ୍ଦ ଭବ୍ୟ ଶ୍ରୀ କିଶୋର ଚିନ୍ତାମଣି ଲଭ୍ୟ ରାଧା ବିଶ୍ୱହାର,
ଚୂଡ଼ାଶ୍ରିତ ଏକାଂତସେ ରାସ ପୀଠ ତମହାକୁଂ କେଶର । ୧ ।
ବ୍ରଜ ବାଳାକ୍ଷିପ୍ରତାହିଁ ଜନମିଳା ସରସାପିକ ସ୍ତୁତିରେ
ପ୍ରାଣନାଥ ସଦ୍ ହେବୁ ଦେଖି କୃତାର୍ଥ ହେ ତବ କୃପାରେ । ୨ ।
ନାମବଂଶୀ ସ୍ୱନ ଶୁଣିଲେ ସେ ହଟିଆ ନାଗର କୂଟ
ଅଭିସାର ଶ୍ରୀ ବିହୀନ ବିରାଜିତ ବିନା ନନ୍ଦ ଚାଟ । ୩ ।
ତ୍ରିଭଙ୍ଗୀ ନର୍ତ୍ତନେ ବିଜେ ସଖାଗଣ ସଂଗତେ ନନ୍ଦ ନନ୍ଦନ
ନତାଙ୍ଗ ! ଆଉକି ବରଜିବି ମୁଦେ କଳାପୀ ଚୂଳ ଶୋଭନ । ୪ ।

# ପାରଳାର ଅନାଲୋଚିତ ପ୍ରତିଭା

ପାରଳାଖେମୁଣ୍ଡି ନଗର ପରିଷଦ ସୀମା ମଧ୍ୟରେ ପୂର୍ବ ପ୍ରବେଶ ଦ୍ୱାର ନିକଟରେ ଏକ ସମୟରେ ଗୋଟିଏ ଫଳକ ଦେଖାଯାଉଥିଲା । ସେଥିରେ ଲେଖାଥିଲା 'ବନ୍ଦୀ ଓଡିଆ'ର କବିଙ୍କ ପଂକ୍ତି-

"ପଡ଼ିବ ଅଗ୍ରେ, ଚାରୁ ଶସ୍ୟ ଶ୍ୟାମଳା-
ଧରଣୀ କାବ୍ୟକଳା ପୂର୍ଣ୍ଣ ପାରଳା,
ଉତ୍କଳ ଶାନ୍ତିଦେବୀ ବିହାର ସ୍ଥାନ
ପାରଳା ବନ କୁଞ୍ଜକେଳି ଆରାମ"

ମାନ୍ଦ୍ରାଜ ଏନାମେଲ କମ୍ପାନୀକୁ ଲେଖି ଏ ଫଳକ ଏନାମେଲ କରାଇବାର ଉଦ୍ୟମ ହେଲା ନାହିଁ । ଖରା ବର୍ଷାରେ ଏହା ଭାଙ୍ଗି ଝଡ଼ି ପଡ଼ିଲା । ସେହି ପାରଳାର ପ୍ରସିଦ୍ଧି ପ୍ରାଚୀନବର୍ଣ୍ଣନାରେ 'ଶୈଳ ସ୍ରୋତ ସରେ ସୁରମ୍ୟ', 'ପୁଷ୍ପ ଫଳ ଶସ୍ୟ ଶାଳିନୀ', 'ଅଚ଼ପଳା ଯହିଁ ଚପଳା ଚପଳା', 'କମଳା ଳୀଳା ଭୂମି ଶସ୍ୟ ଶ୍ୟାମଳା' ସୁବର୍ଣ୍ଣ-ପ୍ରସୂ ଶୋଭାଖଣି' 'ବୀର ଅବନୀ', 'ବାଣୀ ଧରଣୀ', ନାମରେ ଅଛି । ସୌଭାଗ୍ୟ ବସତଃ କିଛି ସମୟ ଏହି ବୀରଅବନୀ ବାଣୀ ଧରଣୀରେ କଟାଇବା ଅବସରରେ କୀର୍ତ୍ତି କିରୀଟ ପାରଳା ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର, ତାଙ୍କର ପିତା ରାଜା ଗୌରଚନ୍ଦ୍ରଙ୍କ ବ୍ୟତୀତ କବି କଳହଂସ ଗୋପାଳକୃଷ୍ଣ, ଭାଷାବିଜ୍ଞାନୀ ପଣ୍ଡିତ ଗୋପୀନାଥ ନନ୍ଦଶର୍ମା, ପ୍ରାବନ୍ଧିକ ଶ୍ୟାମସୁନ୍ଦର, ରାଜକବି ପଦ୍ମନାଭ ନାରାୟଣ, କବିଚନ୍ଦ୍ର ରଘୁନାଥ ପରିଚ୍ଛା, ସର୍ବପ୍ରାଚୀନ କବି ହରିକୃଷ୍ଣ ମହାରଣା, କବିଭୂଷଣ ଗୋପୀନାଥ ପାତ୍ର, ଗୀତିକାର ଗୌରହରି ପରିଚ୍ଛା, ସଙ୍ଗୀତ ଶିରୋମଣି ହରିବନ୍ଧୁ ବେବର୍ତ୍ତା, କୃଷ୍ଣପ୍ରେମୀ ଦ୍ୱିଜ ପଦ୍ମନାଭ, ଗାୟକ ଶିରୋମଣି ଆପନ୍ନା ପାଣିଗ୍ରାହୀ, ଦେଶପ୍ରେମୀ ଆପନ୍ନା ପଣ୍ଡା ଓ ଦେଶଭକ୍ତ ଆପନ୍ନା ପରିଚ୍ଛାଙ୍କର ସଂକ୍ଷିପ୍ତ ଜୀବନୀ ସଂଗ୍ରହ କରିପାରିଥିଲି, ପ୍ରବନ୍ଧାକାରରେ ଏହା ପ୍ରକାଶିତ ହେଲା । ପରେ ପୁସ୍ତକାକାରରେ ୧୯୯୧ ମସିହାରେ 'ପାରଳା ପ୍ରତିଭା' ନାମରେ ପ୍ରକାଶିତ ହୋଇଥିଲା । ପୁସ୍ତକ ପାଠ କରି ବିସ୍ମୃତ ପ୍ରାୟ ଏହି କବି, ଲେଖକ ଓ ଜନନାୟକମାନଙ୍କର କୃତିର ଆଲୋଚନା, ଅପ୍ରକାଶିତ ରଚନା ସଂଗ୍ରହ ଓ ପ୍ରକାଶିତ ପୁସ୍ତକମାନଙ୍କର ସମାଲୋଚନା ଓ ଲୋକପ୍ରିୟତା ଦିଗରେ ସଂଘବଦ୍ଧ ଉଦ୍ୟମ ମୋର ଉଦ୍ଦେଶ୍ୟ ଥିଲା । ପୁସ୍ତକଟିର ଗଜପତି ଜିଲ୍ଲାରେ ପ୍ରସାର ଆଶାନୁରୂପ ହୋଇପାରିଲା ନାହିଁ ।

ପାରଳାପ୍ରତିଭାର ୨ୟ ଭାଗରେ ପୁରୁଣା ଯେଉଁ କେତେ ଜଣ ବାଦ୍ ପଡିଥିଲେ

ସେମାନଙ୍କର ଓ ବିଂଶ ଶତାବ୍ଦୀର ନୂତନ ପ୍ରତିଭାର ଆଲୋଚ଼ନା କରିବାର ଉଦ୍ଦେଶ୍ୟ ଥିଲା । ମୋର ଆଶା, ଓଡ଼ିଶାର ୨ୟ ପୁରାତନ କଲେଜରେ ଓଡ଼ିଆରେ ଉପାଧ୍ଯୁତ୍ତର ଶ୍ରେଣୀ ଖୋଲିବା ଫଳରେ ଏହି ପ୍ରତିଭାଧରମାନଙ୍କର ପୂର୍ଣ୍ଣାଙ୍ଗ ଜୀବନୀ ପାଠକମାନଙ୍କ ଦୃଷ୍ଟିକୁ ଆସିବ ।

ଯେଉଁମାନଙ୍କର ନାମ ସେ ସମୟରେ ସଂଗ୍ରହ କରି ସେମାନଙ୍କର କୃତି ଓ ଜୀବନୀ ଲେଖିବାର ପ୍ରୟାସରେଥିଲି ସେମାନଙ୍କର କଥା ଲେଖୁଛି ।

୧୯୩୫ ମସିହାରେ ପ୍ରକାଶିତ 'ଉତ୍କଳ ମିଳନ' କାବ୍ୟରେ କବିଶେଖର ଚିନ୍ତାମଣି ମହାନ୍ତି ଲେଖିଥିଲେ

ବୀରପୁତ୍ର ବୈଜ୍ଞାନିକ ଯୁଗଳ କିଶୋର
ଯୁଝିଛି ସେ ମସୀ ଯୁଦ୍ଧେ ସେନାପତି ରୂପେ,
ପାରଳାର ହିତୈଷିଣୀ ଆଦର୍ଶ ସମାଜ,
କରିଅଛି ମୋ ନିମିତ୍ତେ ବହୁ ଲେଖାଲେଖି
ବିପକ୍ଷର ଯୁକ୍ତି ଅସ୍ତ୍ର ଖଣ୍ଡ ଖଣ୍ଡ କରି,
କାଟି ଅଛି ପ୍ରତି ଅସ୍ତ୍ରେ ଦକ୍ଷରଥୀ ପ୍ରାୟ ।

'ଯୁଗଳ ମାଷ୍ଟ୍ରେ' ନାମରେ ପରିଚିତ ପାରଳା କଲେଜର ପଦାର୍ଥ ବିଜ୍ଞାନ ଅଧ୍ୟାପକ ଏହି ଯୁଗଳ କିଶୋର ପାଣିଗ୍ରାହୀ ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କୁ ସ୍ମାରକପତ୍ର ଆଦି ଦିଠାରେ ସାହାଯ୍ୟ କରୁଥିଲେ ଓ ତାଙ୍କର ଅର୍ଥ-ତହବିଲଦାରଭାବରେ ତାଙ୍କ ସାଙ୍ଗରେ ଗୋଲଟେବୁଲ ବୈଠକ ସମୟକୁ ବିଲାତ ଯାଇଥିଲେ । (ପଣ୍ଡିତ ଯୁଗଳ କିଶୋର ପାଣିଗ୍ରାହୀ ବିଦ୍ୱାନ, ସାମ୍ବାଦିକ ଓ ସ୍ୱାଧୀନତା ସଂଗ୍ରାମୀଙ୍କଠାରୁ ଏ ମହାଶୟ ଭିନ୍ନ ଓ ବୟସ୍କ) । ଗଞ୍ଜାମ ଭ୍ରମଣରେ ସେହି କବିଶେଖର ଲେଖିଥିଲେ-

ଆହେ ଗୌରଚନ୍ଦ୍ର ପାତ୍ର ଉତ୍ସାହୀ ଯୁବକ
ପେଟଲାଗି ତୁମ୍ଭର ତ ନାହିଁ ଚିନ୍ତାଦକ
ସ୍ୱାଧୀନତା ବିକ୍ରିକଲ କିମ୍ବା ଅକାରଣେ
ପାତ୍ର ହୋଇ ଅପାତ୍ର ଯେ ହୋଇଲ ଆପଣେ ।
ଏବେ ସୁଦ୍ଧା ବେଳ ଅଛି ରହ ନାହିଁ ବସି
ଯଥା ଶକ୍ତି କାର୍ଯ୍ୟ କରି ହୁଅ ହେ ଯଶସ୍ୱୀ ।

(ଖ୍ରୀ ୧୯୦୬)

ଏ ଦୁଇ ଜଣଙ୍କର ସମସାମୟିକ କାହାକୁ ମୁଁ ପାଇପାରିଲି ନାହିଁ । ସେମାନଙ୍କର ବଂଶଧରମାନଙ୍କଠାରୁ ତାଙ୍କର ଜୀବନୀ ଓ କୃତି ସଂଗ୍ରହ କରାଯାଇପାରେ । ଅନ୍ୟମାନଙ୍କ ମଧ୍ୟରେ ସମୟାନୁକ୍ରମେ

**୧. କାମାକ୍ଷା ପ୍ରସାଦ ପଣ୍ଡା(୧୮୭୮-୧୯୩୪)**

ଦେବୀ ସାଧକ ଥାଇ କାମାକ୍ଷୀ ସ୍ତୋତ୍ର ରତ୍ନମାଳା, ଭାଗ୍ୟାଷ୍ଟକ, ଅଭୟାଷ୍ଟକ, ଧନାଷ୍ଟକ, ବ୍ରତ ବିଧାନ, ବିବିଧ ଓଷା ଚରିତ, କାମାକ୍ଷା ପୁରାଣ ରଚନା କରିଥିଲେ । ପୁସ୍ତକମାନ ଗଜପତି ପ୍ରେସରେ ଛପା ବୋଲି କୁହାଯାଉଥିଲେ ମଧ୍ୟ ଗୋଟିଏ ବହି ସୁଦ୍ଧା ମିଳି ନ ଥିଲା ।

**୨. ମଦନ ମୋହନ ନନ୍ଦ ଶର୍ମା (୧୮୮୧-୧୯୬୦)**

ସୁଭକ୍ତ କର୍ଣ୍ଣାମୃତ, ଶରଦ ରାସୋତ୍ସବ, ରାଧାମାଧବ ଚଂପୂ, ଭିଷଗ ଚୂଡ଼ାମଣି ଆଦି ଏହାଙ୍କର ରଚନା ।

**୩.ନୀଳମଣି ରଥ ଶର୍ମା (୧୮୮୩-୧୯୨୦)**

**୪.ଅପର୍ଣ୍ଣା ଗଡାୟତ (୧୮୮୫-୧୯୬୫)**

ରଚନା-କର୍ଣ୍ଣ ଦାନ ପରୀକ୍ଷା, ଦଣ୍ଡ ଚଢ଼େଇଆ ସୁଆଙ୍ଗ, ଚୋର ସୁଆଙ୍ଗ, ରତ୍ନାକର ଦସ୍ୟୁ, ବୃନ୍ଦାବତୀ ହରଣ ଲୀଳା, ଗୋସିଂହ ବଧ ନାଟକ, ମହିଷାସୁର ବଧ ନାଟକ ।

**୫.ବିନାୟକ ପାଢ଼ୀ (୧୮୮୭-୧୯୬୨)**

ଅବସର ପ୍ରାପ୍ତ ପୁଲିସ ଇନସ୍‌ପେକ୍ଟର ଓ ସ୍ୱନାମଧନ୍ୟ ଆଇ.ଜି.ରାମକୃଷ୍ଣ ପାଢ଼ୀଙ୍କର ପିତା ଅଭିଧାନକାର । ରାମକୃଷ୍ଣ ଅଭିଧାନ, ଆନନ୍ଦ ଅଭିଧାନ, ଜ୍ୟୋତିର୍ମୟୀ ଅଭିଧାନ (ଇଂରେଜି-ଓଡିଆ), 'କୁନି ଶବ୍ଦମାଳା', 'ବିଦ୍ୱାନ ରାମକୃଷ୍ଣ' ଏହାଙ୍କର ରଚନା ।

**୬.ସୀମାଦ୍ରୀ ପଟ୍ଟନାୟକ(୧୮୮୫-୧୯୬୨)**

ରଚନା-ପୃଥ୍ୱୀରାଜ, ବୀରଶ୍ରୀ ଅନଙ୍ଗଭୀମଦେବ ନାଟକ, ଚୂଡଗଙ୍ଗଦେବ, ଖାରବେଳ ଐର, ବୀରଶ୍ରୀ କପିଳେନ୍ଦ୍ରଦେବ, ଯଯାତିକେଶରୀ, ଉତ୍କଳ ଚନ୍ଦ୍ରୋଦୟ ନାଟକ ।

**୭.ଚକ୍ରପାଣି ବେବର୍ତ୍ତା (୧୮୯୨-୧୮୭୦)**

ରଚନା-ଇପ୍‌ସିତ ଛାୟା କବିତା ।

**୮.ନାରାୟଣ ଦାସ ବାବାଜୀ(୧୮୯୪-୧୯୭୯)**

ରଚନା-ଭବତରଣୋପାୟ (କବିତା)

**୯.ଭାଗୀରଥୀ ପଣ୍ଡା-**

ଘର ଅମରାଶାସନ, ତାଳସାର ଶାସ୍ତ୍ର ପ୍ରଣେତା, ମୃଦଙ୍ଗ ବାଦକ । ସହରର ବାସିନ୍ଦା ଆପନ୍ନା ପାଢ଼ୀଙ୍କ ସହିତ ମିଶି ସେ ମୃଦଙ୍ଗ ବାଦ୍ୟ କୀର୍ତ୍ତନ ଗ୍ରାମେ ଗ୍ରାମେ ଲୋକପ୍ରିୟ କରାଇ ପାରିଥିଲେ ।

**୧୦.ପଣ୍ଡିତ ଗୋବିନ୍ଦ ଦାସ ବିଦ୍ୱାନ (୧୯୦୧-୧୯୭୪)**

ଇଣ୍ଟର ପାରଳା କଲେଜରେ ସଂସ୍କୃତ ଓ ଓଡିଆ ଅଧ୍ୟାପକ ଓ ପରେ ହାଇସ୍କୁଲ ଶିକ୍ଷକ । ଉତ୍କଳ ମହାରଥୀ, ବିଦୁର ତାଙ୍କର ଲୋକପ୍ରିୟ ରଚନା । 'ମୁଁ କିଏ' (ଅନୁବାଦ) ମଧ୍ୟ ତାଙ୍କ ଲେଖା ।

**୧୧.ଗୋପୀନାଥ ରଥ (୧୯୦୭)**

ହାଇସ୍କୁଲ ଶିକ୍ଷକ । ଓଡ଼ିଆ ବ୍ୟାକରଣର ତୁଳନାତ୍ମକ ଅଧ୍ୟୟନ ଓ ବ୍ୟାକରଣ ଦର୍ପଣ ତାଙ୍କର କୃତି ।

**୧୨.ପାର୍ବତୀ ବେବର୍ତ୍ତା (୧୯୦୭-୧୯୬୦)**

ରଚନା-ଲୋତକ ଧାରା

**୧୩. ରାଧାକୃଷ୍ଣ ପାଠୀ (୧୮୯୮-୧୯୫୭)**

ରଚନା-ଶ୍ରୀଭକ୍ତି ସାରୋଦ୍ଧାର

**୧୪.ମୁକୁନ୍ଦ ପାଢ଼ୀ**

ଅବସରପ୍ରାପ୍ତ ଶିକ୍ଷ ନିର୍ଦ୍ଦେଶକ ସଦାନନ୍ଦ ପାଢ଼ୀଙ୍କର ପିତା । ରାଧାକୃଷ୍ଣ ଲୀଳାମୃତ( ?) ତାଙ୍କର ରଚନା । ବୈଷ୍ଣବ ଜଗତରେ ଏ ଗ୍ରନ୍ଥର ବହୁତ ଆଦର ଥିଲା ।

**୧୫.ତାଙ୍କର ସୁଯୋଗ୍ୟ ସନ୍ତାନ ଇଂ.ସଦାନନ୍ଦ ପାଢ଼ୀ (୧୯୦୮-୧୯୫୭)**

ବୃତିରେ ଇଞ୍ଜିନିୟର ଥାଇ ଅବସର ସମୟରେ ଜ୍ୟୋତିଷ ଚର୍ଚ୍ଚା କରୁଥିଲେ । 'ଦଣ୍ଡବତ ଦଣ୍ଡବତ ପବିତ୍ର ପାରଳା, ପ୍ରାଚୀନ ଜ୍ୟୋତିର୍ବିଦ୍ୟାରେ ଥିଲୁ ତୁ କୁଶଳା' ଏହି ଉକ୍ତି ତାଙ୍କଠାରେ ସଫଳ ହୋଇଥିଲା । ସାରଳା ସାହିତ୍ୟରେ ଜ୍ୟୋତିଃଶାସ୍ତ୍ର ଲିଖିତ ବେଳଘଡ଼ିର ଉପଯୋଗିତା ଓ ପ୍ରକୃତି ନିର୍ଣ୍ଣୟର ଗବେଷଣା କରି ଜ୍ଞାନକୁ 'ଶ୍ରୀକୃଷ୍ଣଙ୍କ ଜାତକ' ଓ ଅନ୍ୟାନ୍ୟ ପ୍ରବନ୍ଧରେ ପ୍ରକାଶ କରୁଥିବା ସମୟରେ ସେ ପରଲୋକ ଗମନ କଲେ । ଆଡ଼ଭୋକେଟ ଗୋପୀନାଥ ପାଢ଼ୀ ତାଙ୍କର ଜାମାତା ।

**୧୬.ସୀମାଦ୍ରୀ ପାତ୍ର (୧୯୦୨-୧୯୮୨)**

ଏ ଦୁଇ ଜଣଙ୍କର ସମସାମୟିକ କାହାକୁ ମୁଁ ପାଇପାରିଲି ନାହିଁ । ସେମାନଙ୍କର ବଂଶଧରମାନଙ୍କଠାରୁ ତାଙ୍କର ଜୀବନୀ ଓ କୃତି ସଂଗ୍ରହ କରାଯାଇପାରେ । ଅନ୍ୟମାନଙ୍କ ମଧ୍ୟରେ ସମୟାନୁକ୍ରମେ

**୧. କାମାକ୍ଷା ପ୍ରସାଦ ପଣ୍ଡା(୧୮୭୮-୧୯୩୪)**

ଦେବୀ ସାଧକ ଥାଇ କାମାକ୍ଷୀ ସ୍ତୋତ୍ର ରତ୍ନମାଳା, ଭାଗ୍ୟାଷ୍ଟକ, ଅଭୟାଷ୍ଟକ, ଧନାଷ୍ଟକ, ବ୍ରତ ବିଧାନ, ବିବିଧ ଓଷା ଚରିତ, କାମାକ୍ଷା ପୁରାଣ ରଚନା କରିଥିଲେ । ପୁସ୍ତକମାନ ଗଜପତି ପ୍ରେସରେ ଛପା ବୋଲି କୁହାଯାଉଥିଲେ ମଧ୍ୟ ଗୋଟିଏ ବହି ସୁଦ୍ଧା ମିଳି ନ ଥିଲା ।

**୨. ମଦନ ମୋହନ ନନ୍ଦ ଶର୍ମା (୧୮୮୧-୧୯୬୦)**

ସୁଭକ୍ତ କର୍ଣ୍ଣାମୃତ, ଶରଦ ରାସୋତ୍ସବ, ରାଧାମାଧବ ଚଂପୂ, ଭିଷଗ ଚୂଡାମଣି ଆଦି ଏହାଙ୍କର ରଚନା ।

**୩.ନୀଳମଣି ରଥ ଶର୍ମା (୧୮୮୩-୧୯୨୦)**

**୪.ଅପର୍ଣ୍ଣା ଗନ୍ତାୟତ (୧୮୮୫-୧୯୬୫)**

ରଚନା-କର୍ଣ୍ଣ ଦାନ ପରୀକ୍ଷା, ଦଣ୍ଡ ଚଢ଼େଇଆ ସୁଆଙ୍ଗ, ଚୋର ସୁଆଙ୍ଗ, ରତ୍ନାକର ଦସ୍ୟୁ, ବୃନ୍ଦାବତୀ ହରଣ ଲୀଳା, ଗୋସିଂହ ବଧ ନାଟକ, ମହିଷାସୁର ବଧ ନାଟକ ।

**୫.ବିନାୟକ ପାଢ଼ୀ (୧୮୮୭-୧୯୬୨)**

ଅବସର ପ୍ରାପ୍ତ ପୁଲିସ ଇନସ୍‌ପେକ୍ଟର ଓ ସ୍ୱନାମଧନ୍ୟ ଆଇ.ଜି.ରାମକୃଷ୍ଣ ପାଢ଼ୀଙ୍କର ପିତା ଅଭିଧାନକାର । ରାମକୃଷ୍ଣ ଅଭିଧାନ, ଆନନ୍ଦ ଅଭିଧାନ, ଜ୍ୟୋତିର୍ମୟୀ ଅଭିଧାନ (ଇଂରେଜି-ଓଡିଆ), 'କୁନି ଶବ୍ଦମାଳା', 'ବିଦ୍ୱାନ ରାମକୃଷ୍ଣ' ଏହାଙ୍କର ରଚନା ।

**୬.ସୀମାଦ୍ରୀ ପଟ୍ଟନାୟକ(୧୮୮୫-୧୯୬୨)**

ରଚନା-ପୃଥ୍ୱୀରାଜ, ବୀରଶ୍ରୀ ଅନଙ୍ଗଭୀମଦେବ ନାଟକ, ଚୂଡଗଙ୍ଗଦେବ, ଖାରବେଳ ଐର, ବୀରଶ୍ରୀ କପିଳେନ୍ଦ୍ରଦେବ, ଯଯାତିକେଶରୀ, ଉତ୍କଳ ଚନ୍ଦ୍ରୋଦୟ ନାଟକ ।

**୭.ଚକ୍ରପାଣି ବେବର୍ତ୍ତା (୧୮୯୨-୧୮୭୦)**

ରଚନା-ଇପ୍‌ସିତ ଛାୟା କବିତା ।

**୮.ନାରାୟଣ ଦାସ ବାବାଜୀ(୧୮୯୪-୧୯୭୯)**

ରଚନା-ଭବତରଣୋପାୟ (କବିତା)

**୯.ଭାଗୀରଥୀ ପଣ୍ଡା-**

ଘର ଅମରାଶାସନ, ତାଳସାର ଶାସ୍ତ୍ର ପ୍ରଣେତା, ମୃଦଙ୍ଗ ବାଦକ । ସହରର ବାସିନ୍ଦା ଆପନ୍ନା ପାଢ଼ୀଙ୍କ ସହିତ ମିଶି ସେ ମୃଦଙ୍ଗ ବାଦ୍ୟ କୀର୍ତ୍ତନ ଗ୍ରାମେ ଗ୍ରାମେ ଲୋକପ୍ରିୟ କରାଇ ପାରିଥିଲେ ।

**୧୦.ପଣ୍ଡିତ ଗୋବିନ୍ଦ ଦାସ ବିଦ୍ୱାନ (୧୯୦୧-୧୯୭୪)**

ଇଣ୍ଟର ପାରଳା କଲେଜରେ ସଂସ୍କୃତ ଓ ଓଡିଆ ଅଧ୍ୟାପକ ଓ ପରେ ହାଇସ୍କୁଲ ଶିକ୍ଷକ । ଉତ୍କଳ ମହାରଥୀ, ବିଦୁର ତାଙ୍କର ଲୋକପ୍ରିୟ ରଚନା । 'ମୁଁ କିଏ' (ଅନୁବାଦ) ମଧ୍ୟ ତାଙ୍କ ଲେଖା ।

**୧୧.ଗୋପୀନାଥ ରଥ (୧୯୦୭)**

ହାଇସ୍କୁଲ ଶିକ୍ଷକ । ଓଡ଼ିଆ ବ୍ୟାକରଣର ତୁଳନାତ୍ମକ ଅଧ୍ୟୟନ ଓ ବ୍ୟାକରଣ ଦର୍ପଣ ତାଙ୍କର କୃତି ।

**୧୨.ପାର୍ବତୀ ବେବର୍ତ୍ତା (୧୯୦୭-୧୯୬୦)**

ରଚନା-ଲୋତକ ଧାରା

**୧୩. ରାଧାକୃଷ୍ଣ ପାଠୀ (୧୮୯୮-୧୯୫୭)**

ରଚନା-ଶ୍ରୀଭକ୍ତି ସାରୋଦ୍ଧାର

**୧୪.ମୁକୁନ୍ଦ ପାଢ଼ୀ**

ଅବସରପ୍ରାପ୍ତ ଶିକ୍ଷ ନିର୍ଦ୍ଦେଶକ ସଦାନନ୍ଦ ପାଢ଼ୀଙ୍କର ପିତା । ରାଧାକୃଷ୍ଣ ଲୀଳାମୃତ( ?) ତାଙ୍କର ରଚନା । ବୈଷ୍ଣବ ଜଗତରେ ଏ ଗ୍ରନ୍ଥର ବହୁତ ଆଦର ଥିଲା ।

**୧୫.ତାଙ୍କର ସୁଯୋଗ୍ୟ ସନ୍ତାନ ଇଂ.ସଦାନନ୍ଦ ପାଢ଼ୀ (୧୯୦୮-୧୯୫୭)**

ବୃତ୍ତିରେ ଇଞ୍ଜିନିୟର ଥାଇ ଅବସର ସମୟରେ ଜ୍ୟୋତିଷ ଚର୍ଚ୍ଚା କରୁଥିଲେ । 'ଦଣ୍ଡବତ ଦଣ୍ଡବତ ପବିତ୍ର ପାରଳା, ପ୍ରାଚୀନ ଜ୍ୟୋତିର୍ବିଦ୍ୟାରେ ଥିଲୁ ତୁ କୁଶଳା' ଏହି ଉକ୍ତି ତାଙ୍କଠାରେ ସଫଳ ହୋଇଥିଲା । ସାରଳା ସାହିତ୍ୟରେ ଜ୍ୟୋତିଃଶାସ୍ତ୍ର ଲିଖିତ ବେଳଘଡ଼ିର ଉପଯୋଗିତା ଓ ପ୍ରକୃତି ନିର୍ଣ୍ଣୟର ଗବେଷଣା କରି ଜ୍ଞାନକୁ 'ଶ୍ରୀକୃଷ୍ଣଙ୍କ ଜାତକ' ଓ ଅନ୍ୟାନ୍ୟ ପ୍ରବନ୍ଧରେ ପ୍ରକାଶ କରୁଥିବା ସମୟରେ ସେ ପରଲୋକ ଗମନ କଲେ । ଆଡ଼ଭୋକେଟ ଗୋପୀନାଥ ପାଢ଼ୀ ତାଙ୍କର ଜାମାତା ।

**୧୬.ସୀମାଦ୍ରୀ ପାତ୍ର (୧୯୦୨-୧୯୮୨)**

ରଚନା-ସତ୍ୟବାଦୀ ହରିଶ୍ଚନ୍ଦ୍ର, ଭକ୍ତ ସୁଦାମା, ହରିଦାସ ଠାକୁର, ଭୀଷ୍ମାର୍ଜୁନ, କୁଟିଳକୁଟିଳା ନାଟକ ।

**୧୭.ସିଂହାଦ୍ରି ପରିଚ୍ଛା-ପ୍ରାବନ୍ଧିକ ଓ ଗବେଷକ**

ଉତ୍କଳ ସାହିତ୍ୟ ୧୩୩୫(ଖ୍ରୀ୧୯୨୮) ଉତ୍କଳ ତତ୍ତ୍ୱାନୁସନ୍ଧାନ ସମିତି (ଉତ୍କଳ ରିସର୍ଚ୍ଚ ସୋସାଇଟି)ରେ ଯୌବରାଜ୍ୟାଭିଷେକ, ଅନନ୍ତ ବର୍ମାଚୋଡ଼ଗଙ୍ଗ ଦେବଙ୍କ ଅଭିଷେକ ଆଦି ପ୍ରକାଶିତ ପ୍ରବନ୍ଧ ତାଙ୍କୁ ସମ୍ମାନିତ କରିଥିଲା । ପରବର୍ତ୍ତୀ କାଳରେ ଓଡ଼ିଆ ସାହିତ୍ୟ ଓ ସଂସ୍କୃତିରୁ ଡକ୍ଟର ସତ୍ୟନାରାୟଣ ରାଜଗୁରୁ (ଜନ୍ମ ୧୯୦୩) ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ (ଜନ୍ମ ୧୯୦୭) ଓ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ସମ୍ମାନିତ ବୁଡ଼ାରସିଂହର ନାରୀ କବି ବନଜାକ୍ଷୀ ପଣ୍ଡାଙ୍କ ଦାନ ମଧ ମହତ । ପ୍ରଥମ ଦୁଇ ଜଣଙ୍କ ବିଷୟରେ ଆଲୋଚନା କରାଯାଇଅଛି । ସେହିପରି ସଙ୍ଗୀତ ଜଗତରେ ସ୍ୱର୍ଗତ ଭୁବନେଶ୍ୱର ମିଶ୍ର(କଣ୍ଠ ସଙ୍ଗୀତ) ଅନନ୍ତଚରଣ ପାତ୍ର(ବୀଣା) କବିରାଜ ଭକ୍ତବତ୍ସଳ ପାତ୍ର(ବୀଣା)ଙ୍କର ଦାନ ଓଡ଼ିଶାର ସର୍ବତ୍ର ସୁବିଦିତ ।

ମୋର ଆଶା ଓ ବିଶ୍ୱାସ, ନୂତନ ପିଢ଼ିର ଯୁବ ଗବେଷକ ଓ ଛାତ୍ରମାନେ ଏହି ବିଦ୍ୱାନମାନଙ୍କର କୃତିତ୍ୱର କାହାଣୀ ଲୋକପ୍ରିୟ କରାଇ ପାରିବେ ।

(ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି କଲେଜ ପାରଳାଖେମୁଣ୍ଡିର
ବିଶେଷ ସଂଖ୍ୟା ୨୦୦୦ ସ୍ମରଣୀକାରେ ପ୍ରକାଶିତ)





ଓଡ଼ିଶାର ପ୍ରଧାନମନ୍ତ୍ରୀ ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି( ୧୯୩୬)



## ଲେଖକ ପରିଚୟ

ଲେଖକ ଶ୍ରୀ ବିଷ୍ଣୁ ଚରଣ ମହାନ୍ତିଙ୍କର ଜନ୍ମ ୧୯୨୨ ମସିହା ନଭେମ୍ବର ୨୫ ତାରିଖରେ । ସେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଅର୍ଥନୀତିରେ ଅନର୍ସ ସହିତ ଡ଼ିଗ୍ରୀ ହାସଲ କରି ୧୯୪୬ ମସିହାରେ ଓଡ଼ିଶା ସରକାର ଅଧୀନରେ ସବଡ଼େପୁଟି ଭାବରେ ଯୋଗଦାନ କରନ୍ତି । ୧୯୫୬ ମସିହାରେ ସେ ବିହାର ବିଶ୍ୱବିଦ୍ୟାଳୟରୁ ବି.ଏଲ୍.ପାସ୍ କରିଥିଲେ । କାର୍ଯ୍ୟକାଳ ଶେଷରେ ସେ ୧୯୮୦ ମସିହାରେ ଗୋପବନ୍ଧୁ ପ୍ରଶାସନିକ ଏକାଡ଼େମୀର ଉପ-ନିର୍ଦ୍ଦେଶକ ଭାବେ ଅବସର ନେଲେ ।

ତାଙ୍କର ବହୁ ସନ୍ଦର୍ଭ ଓ ପ୍ରବନ୍ଧ ଅନେକ ପ୍ରଖ୍ୟାତ ପତ୍ରପତ୍ରିକାରେ ପ୍ରକାଶିତ ହୋଇଛି । ୧୯୮୯ ଅକ୍ଟୋବର ମାସରେ ପ୍ରକାଶିତ ତାଙ୍କର ପୁସ୍ତକ "ରୋମନ୍ଥନ ଏକ ବ୍ୟର୍ଥ ଅତୀତର" "ଆକାଶବାଣୀ" "ସମ୍ବାଦ" "ସମାଜ" ଓ ଅନ୍ୟ ପତ୍ର ପତ୍ରିକାରେ ସମୀକ୍ଷା କରାଯାଇ ପ୍ରଶଂସିତ ହୋଇଛି ।

ତାଙ୍କର ଅବସର ବିନୋଦନ ହେଲା ଧର୍ମ ଓ ସାହିତ୍ୟ ଚର୍ଚ୍ଚା । ବର୍ତ୍ତମାନ ସେ ବିନା ପାରିଶ୍ରମିକରେ ଜଣେ ଆଡ଼ଭୋକେଟ୍ ଭାବରେ ଲୋକମାନଙ୍କୁ ଆଇନ ସହାୟତା ଦେଉଛନ୍ତି ।